# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**November 2013**

୭୦ ଭାଗ ୪ର୍ଥ ସଂଖ୍ୟା କାର୍ତ୍ତିକ-ମାର୍ଗଶିର ନଭେମ୍ବର -୨୦୧୩



**ପ୍ରତିଖଣ୍ଡ : ଟ. ୫.୦୦**

---



ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧
ଇ-ମେଲ୍ : iprsec@rediffmail.com, iprsec.or@nic.in, ୱେବ୍‌ସାଇଟ୍ : www.orissagov.nic.in
ଫୋନ୍ : ୦୬୭୪-୨୫୩୦୨୧୧

# ସୂଚୀ

ନଭେମ୍ବର –୨୦୧୩





# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି


ଲକ୍ଷ୍ମଣ ନାଏକ


ବିର୍ସା ମୁଣ୍ଡା


ଜୟୀ ରାଜଗୁରୁ

# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି



ପଣ୍ଡିତ ଜବାହରଲାଲ ନେହେରୁ



ହରେକୃଷ୍ଣ ମହତାବ



ନବକୃଷ୍ଣ ଚୌଧୁରୀ

ସମ୍ପାଦକୀୟ

# ନବ ଉତ୍କଳର ଦୁଇ ନିର୍ମାତା:

# ଡକ୍ଟର ହରେକୃଷ୍ଣ ମହତାବ ଓ ନବକୃଷ୍ଣ ଚୌଧୁରୀ

ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତର ଅହିଂସ ସ୍ୱାଧୀନତା ସଂଗ୍ରାମ ସମୟରେ ଗାନ୍ଧୀବାଦର ଗଙ୍ଗାକୁ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଭଗୀରଥ ସମ ସ୍ୱୀୟ ତପସ୍ୟା ମାଧ୍ୟମରେ ଉତ୍କଳ ଭୂମିରେ ପଦାର୍ପଣ କରାଇଥିଲେ । ଉତ୍କଳମଣିଙ୍କ ତିରୋଧାନ ପରେ କେତେଜଣ ଯୁବ ବିପ୍ଳବୀ ଗାନ୍ଧିଜୀଙ୍କ ଅହିଂସ ଆନ୍ଦୋଳନକୁ ଓଡ଼ିଶାରେ ଆହୁରି ପ୍ରଲମ୍ବିତ ଓ ପ୍ରଖର କରାଇଥିଲେ । ସେମାନଙ୍କ ମଧ୍ୟରେ ଡକ୍ଟର ହରେକୃଷ୍ଣ ମହତାବ ଓ ନବକୃଷ୍ଣ ଚୌଧୁରୀ ଅନ୍ୟତମ ଶ୍ରେଷ୍ଠ ସଂଗ୍ରାମୀ ଥିଲେ । ଡକ୍ଟର ହରେକୃଷ୍ଣ ମହତାବ କେବଳ ସ୍ୱାଧୀନତା ସଂଗ୍ରାମୀ ନଥିଲେ, ସେ ମଧ୍ୟ ଥିଲେ ପ୍ରଖ୍ୟାତ ସାହିତ୍ୟିକ, ସାମ୍ବାଦିକ, ସ୍ତମ୍ଭକାର, ସମ୍ପାଦକ, ଐତିହାସିକ ଏବଂ ସର୍ବୋପରି ଜଣେ ଦେଶ ଭକ୍ତ ପୂର୍ଣ୍ଣାଙ୍ଗ ମଣିଷ ।

ସ୍ୱାଧୀନତା ସମୟରେ ଗଠିତ ଓଡ଼ିଶାର ମଧ୍ୟବର୍ତ୍ତୀକାଳୀନ ସରକାରରେ ଡକ୍ଟର ମହତାବ ପ୍ରଧାନମନ୍ତ୍ରୀ (ଏବର ମୁଖ୍ୟମନ୍ତ୍ରୀ) ହୋଇଥିଲେ । ଠିକ୍ ସ୍ୱାଧୀନତା ପରେ ପରେ ସେ ତତ୍କାଳୀନ କେନ୍ଦ୍ର ଗୃହମନ୍ତ୍ରୀ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କୁ କଟକକୁ (ତତ୍କାଳୀନ ଓଡ଼ିଶାର ରାଜଧାନୀ ) ନିମନ୍ତ୍ରିତ କରି ୨୬ଟି ଓଡ଼ିଆ ଭାଷାଭାଷୀ ଦେଶୀୟ ରାଜ୍ୟର ରାଜାମାନଙ୍କୁ ମଧ୍ୟ ଓଡ଼ିଶା ପ୍ରଦେଶ ସହିତ ଉକ୍ତ ଗଡଜାତଗୁଡ଼ିକର ମିଶ୍ରଣ କରାଇ ପାରିଥିଲେ, ଯେପରି ଭାଷା ଭିତ୍ତିରେ ଓଡ଼ିଶା ସର୍ବପ୍ରଥମ ପ୍ରଦେଶ ରୂପେ ଜନ୍ମଗ୍ରହଣ କରିଥିଲା । ଅନୁରୂପ ଭାବେ ଭାରତବର୍ଷରେ ସର୍ବପ୍ରଥମେ ଓଡ଼ିଶାରେ ହିଁ ଦେଶୀୟ ରାଜ୍ୟ ବା ଗଡଜାତ ସମୂହର ମିଶ୍ରଣ ହୋଇଥିଲା । ଅବଶ୍ୟ ଏଥିପାଇଁ ନୀଳଗିରିର (ଅଧୁନା ବାଲେଶ୍ୱର ଜିଲ୍ଲାର ଏକ ଉପଖଣ୍ଡ) ରାଜାଙ୍କ ବିରୋଧରେ ହୋଇଥିବା ପ୍ରଜା ବିଦ୍ରୋହ ଏଥିପାଇଁ ମାର୍ଗ ପ୍ରଶସ୍ତ କରିଥିଲା । ତେଣୁ ଡକ୍ଟର ମହତାବ ହିଁ ବୃହତ୍ ଓଡ଼ିଶା ପ୍ରଦେଶ ଗଠନର ଆଦ୍ୟସୂରୀ ଅଟନ୍ତି । ସେଇଥିପାଇଁ ଲୋକେ ତାଙ୍କୁ ଶ୍ରଦ୍ଧାରେ 'ଉତ୍କଳ କେଶରୀ' ରୂପେ ସମ୍ବୋଧିତ କରିଥାନ୍ତି ।

ସମ୍ବାଦପତ୍ର 'ପ୍ରଜାତନ୍ତ୍ର' ତଥା ଓଡ଼ିଶାର ସର୍ବାଧିକ ଲୋକପ୍ରିୟ ଓ ପ୍ରତିଷ୍ଠିତ ସାହିତ୍ୟ ପତ୍ରିକା 'ଝଙ୍କାର'ର ମଧ୍ୟ ଡକ୍ଟର ମହତାବ ପ୍ରତିଷ୍ଠାତା ସମ୍ପାଦକ । ପ୍ରଜାତନ୍ତ୍ରରେ ଧାରାବାହିକ ଭାବେ ପ୍ରକାଶିତ ତାଙ୍କର ସ୍ତମ୍ଭ 'ଗାଁ ମଜଲିସ୍' ଓଡ଼ିଆ ସାହିତ୍ୟର ଏକ ଅମୂଲ୍ୟ ରତ୍ନ ସଦୃଶ । ଏହି ସ୍ତମ୍ଭମାନ ୮ଟି ଖଣ୍ଡରେ ସଂକଳିତ ହୋଇଛି ଓ ଏହି ଅମୂଲ୍ୟ ସାହିତ୍ୟିକ କୃତୀକୁ କେନ୍ଦ୍ର ସାହିତ୍ୟ ଏକାଡେମୀ ତରଫରୁ ମର୍ଯ୍ୟାଦାଜନକ ପୁରସ୍କାର ପ୍ରଦାନ କରାଯାଇଛି ।

ଡକ୍ଟର ମହତାବ ଯେପରି ବିଚକ୍ଷଣ ରାଷ୍ଟ୍ରନୀତିଜ୍ଞ ଥିଲେ, ସେହିପରି ରାଷ୍ଟ୍ରନିର୍ମାତା ମଧ୍ୟ ଥିଲେ । ହୀରାକୁଦ ବନ୍ଧ ଯୋଜନା ତାଙ୍କର ମାନସ ସନ୍ତାନ ଅଟେ । ଦୂରଦର୍ଶୀ ରାଷ୍ଟ୍ରନୀତିଜ୍ଞ ମହତାବଜୀ କଟକରୁ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରକୁ ସ୍ଥାନାନ୍ତରଣ କରି ଆଜିର ଏହି ଭବ୍ୟନଗରୀର ପ୍ରାଣପ୍ରତିଷ୍ଠାତା ରୂପେ ସବୁଦିନ ପାଇଁ ଓଡ଼ିଆ ଜାତିର ସ୍ମରଣୀୟ ବ୍ୟକ୍ତିତ୍ୱ ହୋଇ ରହିଥିବେ ।

'ଗାଁ ମଜଲିସ୍' ପରି ପ୍ରଜାତନ୍ତ୍ରରେ ତାଙ୍କର 'ପ୍ରଳାପ' ଓ 'ପରିହାସ' ଶୀର୍ଷକ ଦୁଇଟି ସ୍ତମ୍ଭ ବେଶ୍ ଲୋକପ୍ରିୟ ହୋଇପାରିଥିଲା । ଫାସୀଚାନ୍ଦ ଛଦ୍ମ ନାମରେ ସେ ଏହି ସ୍ତମ୍ଭ ରଚନା କରୁଥିଲେ । ୧୯୭୫ ସାଲ୍‌ରେ ପ୍ରବର୍ତ୍ତିତ ହୋଇଥିବା

ଜରୁରୀ ପରିସ୍ଥିତିରେ ସେ ଦୀର୍ଘ ୧୯ମାସ ଧରି କାରାଗାରରେ ବନ୍ଦୀ ଜୀବନ ବ୍ୟତୀତ କରିଥିଲେ । ସେତିକି ବେଳେ ଲିଖିତ ଗଳ୍ପଗୁଡ଼ିକ ପରେ ସଂକଳିତ ହୋଇ 'ସ୍ୱର୍ଗରେ ଇମର୍ଜେନ୍ସି' ନାମରେ ପ୍ରକାଶିତ ହୋଇଥିଲା । ସେ ମଧ୍ୟ ନାଟ୍ୟକାର ତଥା କବି ଥିଲେ । ତାଙ୍କଦ୍ୱାରା ରଚିତ ନାଟକ 'ଯୁଗ ସଂକେତ' ଏବଂ କବିତା ସଂକଳନ 'ଆନନ୍ଦ ସଂଧାନେ' ଖୁବ୍ ଜନପ୍ରିୟ ସାରସ୍ୱତ କୃତି । ସ୍ୱାଧୀନତା ସଂଗ୍ରାମ ବେଳେ ନିଜ ଜୀବନୀକୁ ଆଧାର କରି ସେ ରଚନା କରିଥିଲେ କାଳଜୟୀ ଉପନ୍ୟାସ 'ପ୍ରତିଭା' । ତାଙ୍କଦ୍ୱାରା ରଚିତ 'ଟାଉଟର', ୩ୟ ପର୍ବ ଓ '୧୯୭୫' ମଧ୍ୟ ବେଶ୍ ଲୋକପ୍ରିୟ ଉପନ୍ୟାସ । ତାଙ୍କର ଆତ୍ମଜୀବନୀ 'ସାଧନାର ପଥେ' ତଥା 'ଆରବ ସାଗରରୁ ଚିଲିକା' ଦ୍ୱୟ ମଧ୍ୟ ଓଡ଼ିଆ ଆତ୍ମଜୀବନୀ ସାହିତ୍ୟର ଶ୍ରେଷ୍ଠ ସନ୍ତକ ।

ଏହି ରାଷ୍ଟ୍ରନୀତିଜ୍ଞ, ଦେଶ ନିର୍ମାତା, ପ୍ରଖ୍ୟାତ ସାରସ୍ୱତ ସ୍ରଷ୍ଟା, ସାମ୍ବାଦିକ ଓ ସମ୍ପାଦକ ଡକ୍ଟର ହରେକୃଷ୍ଣ ମହତାବ ୧୮୯୯ ନଭେମ୍ବର ୨୧ ତାରିଖରେ ଜନ୍ମ ଗ୍ରହଣ କରି ଫେବୃଆରୀ ୧୯୮୭ରେ ଇହଧାମ ତ୍ୟାଗ କରିଥିଲେ । ଡକ୍ଟର ମହତାବ ଏ ଜାତିର ଚିର ନମସ୍ୟ ।

ଡକ୍ଟର ମହତାବଙ୍କ ସମସାମୟିକ ଆଉ ଜଣେ ଆଦର୍ଶ ଗାନ୍ଧିବାଦୀ–ସମାଜବାଦୀ–କ୍ରାନ୍ତିକାରୀ ଜନନେତା ହେଉଛନ୍ତି ଶ୍ରୀ ନବକୃଷ୍ଣ ଚୌଧୁରୀ । ଏକ ସମ୍ଭ୍ରାନ୍ତ ଜମିଦାର ପରିବାରରେ ଜନ୍ମ ଗ୍ରହଣ କରି ମଧ୍ୟ ନବବାବୁ ଓ ତାଙ୍କ ପରିବାର ଭାରତର ସ୍ୱାଧୀନତା ଆନ୍ଦୋଳନରେ ସର୍ବସ୍ୱ ତ୍ୟାଗ କରିଥିଲେ । ସେ ତାଙ୍କ ଜ୍ୟେଷ୍ଠଭ୍ରାତା ବିଶିଷ୍ଟ ଗାନ୍ଧିବାଦୀ ଗୋପବନ୍ଧୁ ଚୌଧୁରୀ, ତାଙ୍କ ଭାଉଜ ପୂଜ୍ୟା ରମାଦେବୀ, ତାଙ୍କ ପତ୍ନୀ ମହିୟସୀ ମହିଳା ମାଳତୀ ଚୌଧୁରୀ ଓ ସର୍ବୋପରି ତାଙ୍କ ପରିବାରର ମନମୋହନ ଚୌଧୁରୀ, ଅନ୍ନପୂର୍ଣ୍ଣା ମହାରଣା ଇତ୍ୟାଦି ସମସ୍ତେ ଏ ଜାତିର ଆଦର୍ଶ ସଦା ସ୍ମରଣୀୟ ।

ନବବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟର ସବୁଠାରୁ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଐତିହାସିକ ଘଟଣା ହେଉଛି ୧୯୫୪ର 'ମଧ୍ୟ ସତ୍ତ୍ୱାଧିକାର ଉଚ୍ଛେଦ ଆଇନ' ତଥା ସରକାରୀ କାର୍ଯ୍ୟରେ ଓଡ଼ିଆ ଭାଷା ପ୍ରଚଳନ ପାଇଁ 'ଅଫିସିଆଲ୍ ଭାଷା ଆଇନ୍' । ମଧ୍ୟ ସତ୍ତ୍ୱାଧିକାର ଉଚ୍ଛେଦ ଆଇନ ଗୃହୀତ ହେବା ପରେ ଓଡ଼ିଶାରେ ଇଷ୍ଟ ଇଣ୍ଡିଆ କମ୍ପାନୀ ସମୟରୁ ପ୍ରଚଳିତ ସର୍ବାଧିକ ଘୃଣ୍ୟ ଓ ଜନବିରୋଧୀ ଜମିଦାରୀ ପ୍ରଥାର ଉଚ୍ଛେଦ ସାଧନ ସମ୍ଭବପର ହୋଇଥିଲା । କୋଟି କୋଟି ନିର୍ଯାତିତ ପ୍ରଜାକୁଳ, ଜମିଦାର, ମକଦ୍ଦମ ଓ ଗୋନ୍ତିଆମାନଙ୍କ ଶୋଷଣ ଜାଲରୁ ମୁକ୍ତ ହୋଇ ନିଜ ଜମି ଉପରେ ନିଜର ଅଧିକାର ସାବ୍ୟସ୍ତ କରିବାରେ ସମର୍ଥ ହୋଇଥିଲେ ।

ସେହିପରି 'ଅଫିସିଆଲ୍ ଭାଷା ବିଲ୍' ଓଡ଼ିଆ ଭାଷାକୁ ଓଡ଼ିଶାର ରାଜକାର୍ଯ୍ୟର ପ୍ରମୁଖ ଭାଷା ଓ ଆମ ଶାସନ ବ୍ୟବସ୍ଥାର ଆଧାର ଭାଷା ରୂପେ ସ୍ୱୀକୃତି ଦେଇଥିଲା । ଦୁଃଖର କଥା, ଅର୍ଦ୍ଧଶତାବ୍ଦୀରୁ ଅଧିକ କାଳ ବିତିଯାଇଥିଲେ ବି ଆମର ଅପାରଗତାରୁ ଆମେ ନିଜ ଭାଷାକୁ ସରକାରୀ କାର୍ଯ୍ୟର ଭାଷାରୂପେ ସୁପ୍ରତିଷ୍ଠିତ କରାଇବାରେ ବିଫଳ ହୋଇଛୁ । ସ୍ୱର୍ଗରେ ଥାଇ ନବବାବୁ ଏଥିପାଇଁ ଅନେକ ଦୁଃଖୀତ ହେଉଥିବେ ନିଶ୍ଚୟ ।

ରାଜନୀତିରେ ସାଧୁତା ଓ ସଚ୍ଚୋଟତାର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ ନବବାବୁ । ନଭେମ୍ବର ୨୩ ତାଙ୍କର ପବିତ୍ର ଜୟନ୍ତୀ ଦିବସ । ଏହି ମହାମନିଷୀଙ୍କ ସ୍ମୃତି ପ୍ରତି 'ଉତ୍କଳ ପ୍ରସଙ୍ଗ' ପ୍ରଣାମ ଜଣାଉଅଛି ।

ନଭେମ୍ବରରେ ମହାନ୍ ସ୍ୱାଧୀନତା ସଂଗ୍ରାମୀ ବିର୍ସା ମୁଣ୍ଡା ଏବଂ ଓଡ଼ିଶାର ଗର୍ବ ଓ ଗୌରବ ଶହୀଦ ଲକ୍ଷ୍ମଣ ନାଏକ ଏହି ଧରାରେ ଅବତୀର୍ଣ୍ଣ ହୋଇଥିଲେ । ସେମାନଙ୍କ ମହାନ୍ ବଳିଦାନକୁ ସ୍ମରଣ କରି ଏ ଜାତି ସହିତ 'ଉତ୍କଳ ପ୍ରସଙ୍ଗ' ମଧ୍ୟ ସେମାନଙ୍କ ଅମର ଆତ୍ମାକୁ ପ୍ରଣିପାତ କରୁଅଛି ।

## ମୌଲାନା ଅବୁଲ୍ କଲାମ୍ ଆଜାଦ୍

୧୧ ନଭେମ୍ବର, ୧୮୮୮ ସାଲ୍‌ରେ ଆରବର ମକ୍କା ନଗରୀରେ ଜନ୍ମଗ୍ରହଣ କରିଥିବା ମୌଲାନା ଆଜାଦ୍ ତାଙ୍କ ପିତା ବଙ୍ଗ ଦେଶର ମୂଳ ବାସିନ୍ଦା ଥିଲେ । ମାତ୍ର ୧୮୫୭ ସାଲ୍‌ର ପ୍ରଥମ ଭାରତୀୟ ମୁକ୍ତିସଂଗ୍ରାମ (ତଥାକଥିତ ସିପାହୀ ବିଦ୍ରୋହ)

ସମୟରେ ନିଜର ତୀବ୍ର ଇଂରେଜ ବିରୋଧୀ କାର୍ଯ୍ୟକଳାପ ପାଇଁ ତତ୍କାଳୀନ ଇଂରେଜ ସରକାରଙ୍କ ବିଷ ଦୃଷ୍ଟିରେ ପଡି ଭାରତ ଛାଡିବାକୁ ବାଧ୍ୟ ହୋଇଥିଲେ । ଏହି ଆତ୍ମନିର୍ବାସନ ସମୟରେ ମୌଲାନା ଆଜାଦ୍ ଜନ୍ମଗ୍ରହଣ କରିଥିଲେ ।

ଅସାଧାରଣ ପଣ୍ଡିତ ମୌଲାନା ଆଜାଦ୍‌ଙ୍କୁ ମହାତ୍ମା ଗାନ୍ଧୀ ଭାରତର ପ୍ଲାଟୋ– ଆରିଷ୍ଟଟଲ୍ ଓ ପିଥା ଗୋରସ୍‌ଙ୍କ ପରି ବିଶ୍ୱବିଖ୍ୟାତ ଦାର୍ଶନିକମାନଙ୍କ ସମକକ୍ଷ ବୋଲି ଉଲ୍ଲେଖ କରିଥିଲେ । ସ୍ୱାଧୀନତା ଆନ୍ଦୋଳନ ସମୟରେ ସେ ଭାରତର ହିନ୍ଦୁ–ମୁସଲିମ୍ ଏକତାର ପ୍ରତୀକ ଥିଲେ । ପାକିସ୍ଥାନର ସ୍ରଷ୍ଟା ମହମ୍ମଦ ଅଲ୍ଲୀ ଜିନ୍ନାଙ୍କର 'ଦୁଇ ଜାତି ତତ୍ତ୍ୱ'କୁ (ଅର୍ଥାତ୍ ମୁସଲମାନ ଏକ ଜାତି ଓ ହିନ୍ଦୁମାନେ ଆଉ ଏକ ଭିନ୍ନଜାତି) ସେ ଦୃଢତାର ସହ ବିରୋଧ କରୁଥିଲେ । ଭାରତ ବିଭାଜନକୁ ଶେଷ ପର୍ଯ୍ୟନ୍ତ ମହାତ୍ମା ଗାନ୍ଧୀ ଓ ମୌଲାନା ଆଜାଦ୍ ବିରୋଧ କରିଥିଲେ ।

ସ୍ୱାଧୀନ ଭାରତର ସେ ପ୍ରଥମ ଶିକ୍ଷାମନ୍ତ୍ରୀ ହୋଇଥିଲେ । ତତ୍କାଳୀନ କଂଗ୍ରେସର ସମାଜବାଦୀ ଚିନ୍ତନ ସହିତ ସେ ଓତଃପ୍ରୋତଃ ଭାବେ ଜଡିତ ଥିଲେ ଏବଂ ଜବାହରଲାଲ ନେହେରୁଙ୍କ ପରି ସେ ଗଣତାନ୍ତ୍ରିକ ସମାଜବାଦକୁ ସମର୍ଥନ କରୁଥିଲେ । ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ, ସର୍ଦ୍ଦାର ପଟେଲ, ରାଜେନ୍ଦ୍ର ପ୍ରସାଦ, ରାଜର୍ଷି ଟଣ୍ଡନ ପ୍ରମୁଖ ବହୁ ପୁରୁଣା ଚିନ୍ତାର କଂଗ୍ରେସ ନେତା 'ଗଣତାନ୍ତ୍ରିକ ସମାଜବାଦ' ଚିନ୍ତନକୁ ସମର୍ଥନ କରୁନଥିଲେ ।

ଆମ ଦେଶର ସ୍ୱାଧୀନତା ସଂଗ୍ରାମରେ ଗାନ୍ଧିଜୀଙ୍କ ପରେ ଯେଉଁ ପ୍ରମୁଖ ତ୍ରିଦେବଙ୍କର ଆବିର୍ଭାବ ଘଟିଥିଲା, ସେମାନେ ଥିଲେ ପଣ୍ଡିତ ଜବାହରଲାଲ୍ ନେହେରୁ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଓ ମୌଲାନା ଅବୁଲ୍ କଲାମ୍ ଆଜାଦ୍ । ମୌଲାନା ଆଜାଦ୍ ସ୍ୱାଧୀନ ଭାରତର ବିଜ୍ଞାନ ଶିକ୍ଷା ଓ ଗବେଷଣାର ଭିତ୍ତି ସ୍ଥାପନ କରିଥିଲେ ।

୧୯୫୮ ଫେବୃଆରୀରେ ତାଙ୍କର ଅମର ଆତ୍ମା ପୃଥିବୀରୁ ବିଦାୟ ନେଇଥିଲା । ଆଜି ଭାରତ ଯେଉଁ ଚନ୍ଦ୍ରଯାନ, ମଙ୍ଗଳଯାନ ଇତ୍ୟାଦି ପ୍ରେରଣ କରୁଛି, ତା'ର ଭିତ୍ତି ସ୍ଥାପନ କରିଥିଲେ ମୌଲାନା ଆଜାଦ୍ । ଏ ଦେଶର ଶ୍ରେଷ୍ଠ ଶିକ୍ଷାବିତ୍, ଦାର୍ଶନିକ, ରାଷ୍ଟ୍ରନୀତିଜ୍ଞ ଏବଂ ସର୍ବୋପରି ଧାର୍ମିକ ସଂହତିର ଉଜ୍ଜ୍ୱଳ ତାରକା ଭାରତରତ୍ନ ମୌଲାନା ଅବୁଲ୍ କଲାମ୍ ଆଜାଦ୍‌ଙ୍କୁ ତାଙ୍କର ପୂତ ଜୟନ୍ତୀ ତିଥିରେ ଏକ କୃତଜ୍ଞ ଜାତି ସହିତ 'ଉତ୍କଳ ପ୍ରସଙ୍ଗ' ପ୍ରଣାମ ଜଣାଉଅଛି ।

### ଆଲୋକର ପର୍ବ ଦୀପାବଳିର ଅଭିନନ୍ଦନ

ଆଲୋକର ପର୍ବ ପବିତ୍ର ଦୀପାବଳି ଓ ଅସତ୍ ଉପରେ ସତ୍‌ର ବିଜୟ କାଳୀପୂଜା । ଏହି ଉତ୍ସବ ଉପଲକ୍ଷେ ଓଡ଼ିଶାର ଜନସାଧାରଣଙ୍କୁ 'ଉତ୍କଳ ପ୍ରସଙ୍ଗ' ଅଭିନନ୍ଦନ ଜଣାଉଅଛି ।

### ଆମର ଐତିହ୍ୟ–ସଂସ୍କୃତି–ଗୌରବର ପ୍ରତୀକ: କାର୍ତ୍ତିକ ପୂର୍ଣ୍ଣମୀ

ହଜାର ହଜାର ବର୍ଷର ପରମ୍ପରା, ଐତିହ୍ୟ, ସଂସ୍କୃତି ଓ ଗୌରବାବହ ପ୍ରାଚୀନ ଓଡ଼ିଆ ଜାତିର ନୌବାଣିଜ୍ୟର ପ୍ରତୀକ ହେଉଛି କାର୍ତ୍ତିକ ପୂର୍ଣ୍ଣମୀ ତଥା ଏହି ଅବସରରେ କରାଯାଉଥିବା ବୋଇତ ବନ୍ଦାଣ ଉତ୍ସବ । ଯାହାର ଝଲକ କଟକର 'ବାଲିଯାତ୍ରା' ଓ ପାରାଦ୍ୱୀପର 'କଳିଙ୍ଗ ବାଲିଯାତ୍ରା' ରୂପରେ ଦେଖିବାକୁ ମିଳେ ।

ଏହି ଐତିହାସିକ ଘଟଣାର ରୋମନ୍ଥନ କରି ଆମେ ଓଡ଼ିଶାବାସୀଙ୍କ ସୁଖ–ସମୃଦ୍ଧି କାମନା କରୁଅଛୁଁ ଏବଂ ଆଗାମୀ ଦିନରେ ଆମ ରାଜ୍ୟ ପୁଣି ଧନ–ଧାନ୍ୟ ଭରା ନୌବାଣିଜ୍ୟ ସଂସ୍କୃତିର କେନ୍ଦ୍ରରୂପେ ଜଗତରେ ଆତ୍ମପ୍ରକାଶ କରିବ, ଏହାହିଁ କାମନା କରୁଅଛୁଁ ।

'ବନ୍ଦେ ଉତ୍କଳ ଜନନୀ'

# କଳିଙ୍ଗ ନୌବାଣିଜ୍ୟ ଅନ୍ତୁଡ଼ିଶାଳ, ମନ୍ନଦ ବନ୍ଦର ଓ ବୃହତ୍ ବନ୍ଦର ପାରାଦ୍ୱୀପ

ପ୍ରଭାତ କୁମାର ନନ୍ଦ

କଳିଙ୍ଗର ନୌବାଣିଜ୍ୟିକ ପ୍ରସିଦ୍ଧି ବିଶ୍ୱ ଇତିହାସରେ ପ୍ରତିଷ୍ଠିତ । ସମଗ୍ର ବିଶ୍ୱରେ ବିଭିନ୍ନ ଅଗ୍ରଗଣ୍ୟ ଦେଶଗୁଡ଼ିକ ମଧ୍ୟରେ ନିଜେ ପୋତ ନିର୍ମାଣ କରି ସାଗର ବକ୍ଷରେ ଯାତ୍ରାପୂର୍ବକ ନୂତନ ଦେଶକୁ ଆବିଷ୍କାର କରିବା କ୍ଷେତ୍ରରେ କଳିଙ୍ଗ ସାଧବମାନଙ୍କର ପ୍ରୟାସ ଉଲ୍ଲେଖନୀୟ । ଖ୍ରୀଷ୍ଟପୂର୍ବ ସମୟରୁ କଳିଙ୍ଗ ଅଧିବାସୀମାନଙ୍କର ବାଣିଜ୍ୟ ନିମିତ୍ତ ବିଦେଶ ଯାତ୍ରା ବହୁ ପୁରାତନ ଗ୍ରନ୍ଥରେ ଲିପିବଦ୍ଧ ହୋଇଛି । ଖ୍ରୀଷ୍ଟପୂର୍ବ ୫୧୪ରେ ଗୌତମ ବୁଦ୍ଧଙ୍କର ଶିଷ୍ୟତ୍ୱ କଳିଙ୍ଗର ବଣିକ ତପୁସୁ ଏବଂ ଭଲ୍ଲୁକ ଗ୍ରହଣ କରିଥିଲେ । ବୁଦ୍ଧଦେବଙ୍କର ସାଧନା ସମାପ୍ତି ବୌଦ୍ଧତ୍ୱ ଲାଭର ସପ୍ତମ ସପ୍ତାହରେ ଏହି ବଣିକ ଦ୍ୱୟ ବୁଦ୍ଧ ଦେବଙ୍କୁ ଉତ୍କଳର ଖାଦୀ ପ୍ରଦାନ କରିଥିଲେ । ଗୌତମ ବୁଦ୍ଧ ତାଙ୍କୁ ମସ୍ତକର କିଛି କେଶ ଉପହାର ଦେଇଥିଲେ । ବଣିକ ଦ୍ୱୟ ନୌଯାତ୍ରା କରି ବୁଦ୍ଧ ଗୟାକୁ ଯାଇଥିଲେ । ଏଥିରୁ ପ୍ରମାଣିତ ହୁଏ ଯେ କଳିଙ୍ଗ ଓ ଉତ୍କଳର ସାଧବ ପରମ୍ପରା ଖ୍ରୀଷ୍ଟପୂର୍ବ ୫୫୦ ପୂର୍ବ ବର୍ଷରୁ ରହିଛି ।

ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ମଗଧର ସମ୍ରାଟ ଅଶୋକ କଳିଙ୍ଗ ଆକ୍ରମଣ କରିଥିଲେ । ସେହି ଆକ୍ରମଣର ବହୁ କାରଣ ମଧ୍ୟରୁ କଳିଙ୍ଗର ଦୁର୍ଦ୍ଧର୍ଷ ନୌସେନାକୁ ନିଜର ଅକ୍ତିଆରକୁ ଆଣିବା ମୁଖ୍ୟ କାରଣ ଥିଲା । ଜଳକ୍ଷେତ୍ରରେ ଆଧିପତ୍ୟ ବିସ୍ତାର କରି ଦକ୍ଷିଣ ପୂର୍ବ ଏସୀୟ ଦ୍ୱୀପପୁଞ୍ଜକୁ ଜୟ କରିବା ସମ୍ରାଟ ଅଶୋକଙ୍କର ଇଚ୍ଛା ଥିଲା । କଳିଙ୍ଗର ଭୟାବହ ଯୁଦ୍ଧ ପରେ ବୌଦ୍ଧ ଭିକ୍ଷୁ ଉପଗୁପ୍ତଙ୍କ ପରାମର୍ଶକ୍ରମେ ହିଂସାକୁ ପରିହାର କରି ଅହିଂସା ବ୍ରତରେ ସେ ଦୀକ୍ଷିତ ହୋଇଥିଲେ । ମାତ୍ର ନୌବାହିନୀର ସଦ୍‌ଉପଯୋଗକୁ ହାତଛଡ଼ା ନ କରି ନିଜର କନ୍ୟା ସଂଘମିତ୍ରାଙ୍କୁ ସିଂହଳ ଦ୍ୱୀପ ନୌଯାନରେ ବୌଦ୍ଧଧର୍ମର ପ୍ରଚାର ନିମିତ୍ତ ପଠାଇ ଥିଲେ । କଳିଙ୍ଗ ଯୁଦ୍ଧର ଇତିହାସ ତତ୍‌କାଳୀନ ସମୃଦ୍ଧ ନୌସେନା ବିଷୟରେ ସୂଚନା ଦେଉଛି । କଳିଙ୍ଗର ନୌବାଣିଜ୍ୟ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ କ୍ରିୟାଶୀଳ ଥିଲା । ମୋଗଲ, ପର୍ତ୍ତୁଗୀଜ ଓ ଇଂରେଜମାନଙ୍କର ଶାସନ କାଳରେ କଳିଙ୍ଗର ନୌବାଣିଜ୍ୟ ସୀମିତ ହେବାକୁ ଲାଗିଲା । ଅଷ୍ଟାଦଶ ଶତାବ୍ଦୀର କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ 'ଲାବଣ୍ୟବତୀ' କାବ୍ୟରେ କଳିଙ୍ଗର ସମୃଦ୍ଧ ନୌବାଣିଜ୍ୟ ବିଷୟରେ ବର୍ଣ୍ଣନା କରିଛନ୍ତି ।




୩ ଜାନୁଆରୀ ୧୯୬୨ (ପୌଷ ଦି୨୦ନ ୧୩୬୯ ସାଲ୍) ଦିନ ପାରାଦ୍ୱୀପ ବନ୍ଦରର ଭିତ୍ତିପ୍ରସ୍ତର ସ୍ଥାପନରେ ଖୋଦିତ ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କର ଜାତିପ୍ରତି ଆହ୍ୱାନ ।

ବୋଇତ ଲାଗିଲା ଯାଇ ସିଂହଳ
ଦ୍ୱୀପରେ
ସାଧବ ଯୁବତୀମାନେ ଅତି
ଆନନ୍ଦରେ
ଗଲେ ବୋଇତ ବନ୍ଦାଇ
ଅର୍ଘ୍ୟଥାଳି ମାନଙ୍କରେ ହୁଳହୁଳି
ଦେଇ

କଳିଙ୍ଗ ସାଧବ ପରମ୍ପରା କେବଳ କଳିଙ୍ଗରେ ନୁହେଁ, ଦୂର ଦେଶ ସିଂହଳରେ ମଧ୍ୟ ଥିଲା । ସିଂହଳରେ ସାଧବ ଯୁବତୀମାନେ ବୋଇତକୁ ବନ୍ଦାପନା କରୁଥିଲେ । ସିଂହଳରେ କଳିଙ୍ଗ ସାଧବମାନଙ୍କର ଆଧିପତ୍ୟ ରହିଥିବା ଉପରୋକ୍ତ ପଦରୁ ସ୍ପଷ୍ଟ ପ୍ରମାଣିତ । ବିଂଶ ଶତାବ୍ଦୀରେ ଭାରତ ସ୍ୱାଧୀନ ହେବା ପରେ ନୌବାଣିଜ୍ୟ ପୁନଶ୍ଚ ନବଜୀବନ ପାଇଲା । ଭାରତୀୟମାନେ ଜାହାଜର ମାଲିକ ହୋଇ ଆନ୍ତର୍ଜାତୀୟ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କଲେ । ହେଲେ ନବ କଳିଙ୍ଗ ଓଡ଼ିଶାର କୌଣସି ବ୍ୟକ୍ତି ଜାହାଜର ମାଲିକ ହେବା ନିମିତ୍ତ ସୁଯୋଗ ପାଇଲେ ନାହିଁ । ଓଡ଼ିଆମାନଙ୍କର ଏଭଳି ଦୁର୍ଦ୍ଦିନ ଆସିଲା ଯେ, ସପ୍ତଦଶ ଶତାବ୍ଦୀର କଳିଙ୍ଗ ସାଗର ସମସ୍ତଙ୍କ ଗୋଚରରେ

ବଙ୍ଗୋପ ସାଗରରେ ପରିବର୍ତ୍ତିତ ହେଲା । କଳିଙ୍ଗର ରାଜା ନିମିତ୍ତ ମାତ୍ର ଥିଲେ । କଳିଙ୍ଗ ସାଧବମାନଙ୍କର ଦୁଃସାହସିକ ନୌଯାତ୍ରା ଯୋଗୁଁ ତାଙ୍କ ନାମରେ ନାମିତ ହୋଇଥିବା ସାଗରର ନାମ ପରିବର୍ତ୍ତନ ସମୟରେ ପ୍ରତିରୋଧ ବା ପ୍ରତିବାଦ କରିବା ପାଇଁ କେହି ସାହସ ସଞ୍ଚୟ କରିପାରି ନଥିଲେ ।

ଇଂରେଜମାନେ ଅଷ୍ଟାଦଶ ଶତାବ୍ଦୀରେ ଓଡ଼ିଶାର ବାଲେଶ୍ୱରଠାରେ ନିଜର ବନ୍ଦର ପ୍ରତିଷ୍ଠା କରି ନୌବାଣିଜ୍ୟିକ କାର୍ଯ୍ୟ କରିବା ପାଇଁ ଚେଷ୍ଟିତ ଥିଲେ । ମାତ୍ର ତତ୍କାଳୀନ ମୋଗଲ ଶାସକମାନଙ୍କ ଚକ୍ରାନ୍ତ ଓ ଓଡ଼ିଆ ଲୋକଙ୍କର ଉଦାସୀନତା ହେତୁ, ସେମାନେ ପଶ୍ଚିମବଙ୍ଗର କଲିକତାଠାରେ ବାଣିଜ୍ୟିକ କାରବାର ଆରମ୍ଭ କଲେ । ଫଳରେ କଲିକତା ଇଂରେଜମାନଙ୍କର ମୁଖ୍ୟ ପ୍ରଶାସନିକ ଓ ବାଣିଜ୍ୟିକ କେନ୍ଦ୍ର ଭାବେ ପ୍ରତିଷ୍ଠା ଲାଭ କରି ଉନ୍ନତ ହେଲା । ଓଡ଼ିଶାର ପ୍ରଗତି ବହୁ ଭାବରେ ବ୍ୟାହତ ହେଲା । ଭାରତର ସ୍ୱାଧୀନତା ପରେ ବଙ୍ଗଭୂମି ଦ୍ୱିଖଣ୍ଡିତ ହୋଇ ପୂର୍ବବଙ୍ଗ ରୂପେ ପାକିସ୍ଥାନର ଏକ ଅଂଶ ହୋଇ ରହିଲା । ସେହି ଭୂଖଣ୍ଡର ଢ଼ାକା ଓ ଚିଟାଗଙ୍ଗ ବନ୍ଦର ଭାରତଠାରୁ ବିଚ୍ଛିନ୍ନ ହୋଇଗଲା । ତେଣୁ ସେହି କ୍ଷତିକୁ ପୂରଣ କରିବା ପାଇଁ ଭାରତର ପୂର୍ବ ଉପକୂଳରେ ଏକ ନୂତନ ବନ୍ଦର ନିର୍ମାଣ ନିମିତ୍ତ ସ୍ଥାନ ଖୋଜା ଚାଲିଲା । ନୌବିଦ୍‌ମାନଙ୍କର ନିର୍ଣ୍ଣୟ ଅନୁସାରେ ଓଡ଼ିଶାର ପାରଦ୍ୱୀପଠାରେ ବନ୍ଦର ନିର୍ମାଣ ନିମିତ୍ତ ପ୍ରଚେଷ୍ଟା ଆରମ୍ଭ ହେଲା ।

କଳିଙ୍ଗବୀର ତଥା ଓଡ଼ିଶାର ପ୍ରବାଦପୁରୁଷ ବିଜୟାନନ୍ଦ ପଟ୍ଟନାୟକ କେନ୍ଦ୍ର ସରକାରଙ୍କଠାରୁ ଅନୁମତି ଆଣି ଓଡ଼ିଶା ସରକାରଙ୍କ ଅର୍ଥରେ ପାରାଦ୍ୱୀପ ବନ୍ଦର ନିର୍ମାଣ କାର୍ଯ୍ୟ ଆରମ୍ଭ କଲେ । ୧୯୬୨ ମସିହା ଜାନୁଆରୀ ୩ ତାରିଖରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ପାରାଦ୍ୱୀପ ବନ୍ଦରର ଶିଳାନ୍ୟାସ କରି ଜାତି ଉଦ୍ଦେଶ୍ୟରେ ଅର୍ପଣ କରିଥିଲେ ଓ ମହାଜାତିର ଆହ୍ୱାନ ଭାବେ ଘୋଷଣା କରିଥିଲେ । ବନ୍ଦର ନିର୍ମାଣ କାର୍ଯ୍ୟ ୧୯୬୨ ମସିହା ନଭେମ୍ବର ୧୯ ତାରିଖରେ ଆରମ୍ଭ ହେଲା । ମାତ୍ର ବନ୍ଦରର ନିର୍ମାଣ କାର୍ଯ୍ୟ ରାଜ୍ୟ ସରକାରଙ୍କ ଦ୍ୱାରା ସମ୍ଭବପର ନହେବାରୁ ୧୯୬୫ ମସିହା ଜୁନ୍ ୧ ତାରିଖରୁ କେନ୍ଦ୍ର ସରକାର ବନ୍ଦରର ଭାର ରାଜ୍ୟ ସରକାରଙ୍କଠାରୁ ଗ୍ରହଣ କଲେ । ୧୯୬୬ ମସିହା ଅପ୍ରେଲ ୧୮ ତାରିଖରେ ପାରାଦ୍ୱୀପ ବୃହତ୍ ବନ୍ଦର ହେଲା ।

ସମଗ୍ର ଭାରତବର୍ଷର ନୌବାଣିଜ୍ୟିକ ସମ୍ଭାବନାକୁ ବିଶ୍ଳେଷଣ କଲେ ଜଣାଯାଏ ଯେ, ଦେଶରେ ୭ ହଜାର ୫ ଶହ ୧୭ କିଲୋମିଟର ଉପକୂଳ ରହିଛି । ତନ୍ମଧ୍ୟରେ ଓଡ଼ିଶାର ଉପକୂଳ ୪ ଶହ ଅଶି କିଲୋମିଟର ବା ସମଗ୍ର ଦେଶ ଉପକୂଳର ୬.୩୮% ଭାଗ । ବର୍ତ୍ତମାନ ଭାରତରେ ୧୨ଟି ବୃହତ୍ ବନ୍ଦର ରହିଛି । ୨୦୧୨–୧୩ ଆର୍ଥିକ ବର୍ଷରେ ଭାରତର ବୃହତ୍ ବନ୍ଦରଗୁଡ଼ିକ ୫୪୫.୭୯ ନିୟୁତ ଟନ ପଣ୍ୟ ଦ୍ରବ୍ୟ କାରବାର କରିଛନ୍ତି । ଏହି ପରିମାଣ ପୂର୍ବ ଆର୍ଥିକ ବର୍ଷ ୨୦୧୧–୧୨ଠାରୁ ଶତକଡ଼ା ୨.୫୮ ଭାଗ କମ୍ ।

ପାରାଦ୍ୱୀପ ବନ୍ଦର ୨୦୧୨–୧୩ ଆର୍ଥିକ ବର୍ଷରେ ୫୬.୫୫ ନିୟୁତ ଟନ ପଣ୍ୟଦ୍ରବ୍ୟ କାରବାର କରି ପୂର୍ବ ଆର୍ଥିକ ବର୍ଷ ଅପେକ୍ଷା ଶତକଡ଼ା ୪.୨୪ ଭାଗ ଅଧିକ କାରବାର କରିବାକୁ ସମର୍ଥ ହୋଇପାରିଛି । ଏହା ସାରା ଭାରତରେ କାରବାର ହେଉଥିବା ପଣ୍ୟଦ୍ରବ୍ୟ ପରିମାଣର ଶତକଡ଼ା ୧୦.୧୭ଭାଗ । ସର୍ବ ଭାରତୀୟ ବୃହତ୍ ବନ୍ଦରଗୁଡ଼ିକରେ ସମୁଦାୟ ପଣ୍ୟଦ୍ରବ୍ୟ ପରିମାଣ ପୂର୍ବ ଆର୍ଥିକ ବର୍ଷ ଅପେକ୍ଷା ହ୍ରାସ ପାଇଥିବା ବେଳେ, ଆମ ରାଜ୍ୟର ପାରାଦ୍ୱୀପ ବନ୍ଦରରେ ତାହା ବୃଦ୍ଧି ପାଇଥିବା ଆନନ୍ଦର ବିଷୟ ଓ ସର୍ବ ଭାରତୀୟ ବନ୍ଦର ଶିଳ୍ପରେ ପାରାଦ୍ୱୀପ ବନ୍ଦରର ସଫଳତା ପ୍ରତିପାଦନ କରିଛି । ପାରାଦ୍ୱୀପ ବନ୍ଦର ବହୁ ଘାତ ପ୍ରତିଘାତ ମଧ୍ୟରେ ନିଜର ସ୍ଥିତିକୁ ସୁଦୃଢ଼ ରଖି ପାରିଛି । ପ୍ରାକୃତିକ ଗଭୀରତା, ବନ୍ଦର ନିକଟରେ ପର୍ଯ୍ୟାପ୍ତ ଖାଲି ଜମି ଓ ବନ୍ଦରର ପ୍ରଶାସନିକ ଦକ୍ଷତା ଯୋଗୁଁ ଏହି ସଫଳତା ସମ୍ଭବପର ହୋଇପାରିଛି ।ପାରାଦ୍ୱୀପ ବନ୍ଦର ବିଶ୍ୱ ନୌବାଣିଜ୍ୟ ମାନଚିତ୍ରରେ ଏକ ନୂତନ ବନ୍ଦର ଭାବେ ସ୍ଥାନ ପାଇଛି । ଊନବିଂଶ ଶତାବ୍ଦୀର ନୌ ମାନଚିତ୍ରରେ ଇଂରେଜମାନେ ଏହି ବନ୍ଦରକୁ ପାରାଦ୍ୱୀପ ବା (PARADWEEP) ଭାବରେ ଗ୍ରହଣ କରିଛନ୍ତି । ପରେ ପାରାଦ୍ୱୀପ ବନ୍ଦର ପ୍ରଶାସନ ବନ୍ଦର ନାମକୁ ପାରାଦିପ (PARADIP) ରୂପେ ଗ୍ରହଣ କରିଥିବା ବେଳେ ରାଜ୍ୟ ସରକାର (PARADEEP) ବା ପାରାଦୀପ ଭାବେ ଲେଖୁଛନ୍ତି । ଏହି ପ୍ରାବନ୍ଧିକ ଦୃଷ୍ଟିରେ ସ୍ଥଳର ନାମ 'ପାରାଦ୍ୱୀପ', (PARADWEEP) ହେବା ଉଚିତ । ପାରାଦ୍ୱୀପ ପ୍ରକୃତରେ ଏକ ଦ୍ୱୀପ । ବଙ୍ଗୋପସାଗର, ମହାନଦୀ, ଅଠରବାଙ୍କୀ ନଦୀ ଦ୍ୱାରା ଏହି ସ୍ଥଳ ପରିବେଷ୍ଟିତ । ତେଣୁ କେନ୍ଦ୍ର ସରକାର, ରାଜ୍ୟ ସରକାର, ବନ୍ଦର କର୍ତ୍ତୃପକ୍ଷ ଓ ଆନ୍ତର୍ଜାତିକ ନୌଯାତ୍ରା ମାନଚିତ୍ରରେ ଗୋଟିଏ ନାମ ପାରାଦ୍ୱୀପ (PARADWEEP) ଗ୍ରହଣ କରିବା ଉଚିତ ।

ପ୍ରସିଦ୍ଧ ପରିବ୍ରାଜକ ହୁଏନସାଂ ତାଙ୍କର ଭ୍ରମଣ ରଚନାରେ ଲେଖିଛନ୍ତି ଯେ, ଚୀନ୍ ଦେଶର ରାଜକନ୍ୟା କଳିଙ୍ଗ ସାଗରରେ ପ୍ରବେଶ କରି ଏକ ବୃହତ୍ ନଦୀର ମୁହାଣରେ ଥିବା ପ୍ରସିଦ୍ଧ ବନ୍ଦର ଦେଇ ଚେଲିତାଳ ବନ୍ଦରକୁ ନୌଯାନରେ ଯାଇଥିଲେ । ସେଠାରୁ ହାତୀ ଓ ପାଲିଙ୍କିରେ ବୌଦ୍ଧ ତାନ୍ତ୍ରିକ ମହା ବିଦ୍ୟାଳୟରେ ଶିକ୍ଷାଲାଭ କରି ନୌଯାନରେ ଫେରି ଯାଇଥିଲେ । ସମଗ୍ର ଭାରତରେ ଓଡ଼ିଶାର ରତ୍ନଗିରି ପାହାଡ଼ରେ ଥିବା ପୁଷ୍ପଗିରି ବୌଦ୍ଧ

ବିଶ୍ୱବିଦ୍ୟାଳୟର ସୁନାମ ଥିଲା। ବର୍ତ୍ତମାନ ସୁଦ୍ଧା ସେହି ବୌଦ୍ଧ ତନ୍ତ୍ର ବିଶ୍ୱବିଦ୍ୟାଳୟର ଧ୍ୱଂସାବଶେଷ ରତ୍ନଗିରି ପାହାଡ଼ର ବିଭିନ୍ନ ଅଂଶରେ ରହିଛି । ବର୍ତ୍ତମାନ ତିର୍ତ୍ତୋଲଠାରେ ପୁରାତନ ଚେଲିତୋଳ ବନ୍ଦର ଥିଲା ବୋଲି ବିଶ୍ୱାସ କରାଯାଉଛି ।

ପୃଥିବୀ ଇତିହାସରେ ବହୁ ନଦୀଶଯ୍ୟାର ଅବସ୍ଥିତି ପରିବର୍ତ୍ତନ ହୋଇଛି । ମହାନଦୀ ତାହାର ଶାଖାନଦୀର ପ୍ରବାହ ଚେଲିତୋଳ ଓ କୁଞ୍ଜଗୁଆ ଅଞ୍ଚଳରେ ହୋଇଥିଲା । ବର୍ତ୍ତମାନର କୁଜଙ୍ଗ ହିଁ ପୁରାତନ କୁଞ୍ଜଗୁଆରେ ବନ୍ଦର । ଚୀନ୍ ରାଜକନ୍ୟା ମନ୍ଦଦ (ବର୍ତ୍ତମାନର ମହାନଦୀ ମୁହାଣ) ବନ୍ଦରକୁ କଳିଙ୍ଗସାଗର (ବର୍ତ୍ତମାନର ବଙ୍ଗୋପସାଗର)ରୁ ଆସି ସେଠାରୁ ନଦୀର ଜଳବେଣୀରେ କୁଞ୍ଜଗୁଆରେ ବନ୍ଦର ଦେଇ ଚେଲିତୋଳ ବନ୍ଦରକୁ ନୌଯାନରେ ଯାତ୍ରା କରିଥିଲେ । ଚେଲିତୋଳ ବନ୍ଦରରୁ ପାଲିଙ୍କି ଏବଂ ହାତୀ ଯୋଗେ ସେ ରତ୍ନଗିରି ପାହାଡ଼କୁ ଯାତ୍ରା କରିଥିଲେ । ବଜ୍ରଯାନ ତନ୍ତ୍ର ଶିକ୍ଷା ପରେ ଚୀନ୍‌ର ରାଜକୁମାରୀ ଆସିଥିବା ପଥରେ ପ୍ରତ୍ୟାବର୍ତ୍ତନ କରି ଚୀନ୍‌କୁ ନୌଯାନରେ ଯାତ୍ରା କରିଥିଲେ । ଇତିହାସର ଏହି ଉଲ୍ଲେଖଯୋଗ୍ୟ ବିଷୟରେ ଅଧିକ ଗବେଷଣାର ଆବଶ୍ୟକତା ରହିଛି ।

ଅତୀତରେ ଖ୍ରୀଷ୍ଟପୂର୍ବ ସମୟରୁ ବିଶିଷ୍ଟ ଭୌଗଳିକ ଟଲେମିଙ୍କ ଦ୍ୱାରା ଆବିଷ୍କୃତ ମନ୍ଦଦ ବନ୍ଦର ମହାନଦୀ ମୁହାଣରେ ଥିଲା । ବର୍ତ୍ତମାନ ସେହି ଅଞ୍ଚଳ ଆଧୁନିକ ପାରାଦ୍ୱୀପ ବନ୍ଦରାଞ୍ଚଳର ଏକ ଅଂଶ । ଏହାକୁ ସେକ୍ଟର– ୨୧ ବା ନେହେରୁ ବଙ୍ଗଳା ଭାବରେ ନାମିତ କରାଯାଇଛି । ସେହି ସ୍ଥଳରେ ପାରାଦ୍ୱୀପ ବନ୍ଦର କର୍ତ୍ତୃପକ୍ଷ 'ମନ୍ଦଦ ଉଦ୍ୟାନ' ଭାବରେ ପର୍ଯ୍ୟଟକଙ୍କର ସୁବିଧା ନିମିତ୍ତ ଭୋଜନାଳୟ, ପାନୀୟ ଜଳ ଯୋଗାଣ ଓ ବଣଭୋଜି ସ୍ଥଳ ବ୍ୟବସ୍ଥା କରିଛନ୍ତି । ବର୍ଷର ସବୁ ସମୟରେ ଓଡ଼ିଶା ଓ ଓଡ଼ିଶା ବାହାର ପ୍ରଦେଶଗୁଡ଼ିକରୁ ପର୍ଯ୍ୟଟକମାନେ ବଣଭୋଜି ନିମିତ୍ତ ମନ୍ଦଦ ଉଦ୍ୟାନ ସ୍ଥଳକୁ ଆସିଥାଆନ୍ତି । ମନ୍ଦଦ ବନ୍ଦର ନିକଟରେ ଓଡ଼ିଶାର ସୁଖ୍ୟାତ ଜବାହର ଅତିଥି ଭବନ ରହିଛି। ମନ୍ଦଦ ଉଦ୍ୟାନରୁ ପ୍ରାତଃକାଳରେ ସୂର୍ଯ୍ୟୋଦୟର ଦୃଶ୍ୟ ଅତି ମନୋରମ । ସଂଧ୍ୟା କାଳରେ ମନ୍ଦଦ ଉଦ୍ୟାନରୁ ଓଡ଼ିଶାର ପ୍ରଥମ ବତୀଘର (ଫଲସ୍ ପଏଣ୍ଟ ଲାଇଟ୍ ହାଉସ୍)ର ଆଲୋକମାଳାର ଦୃଶ୍ୟ ଅଭୂତପୂର୍ବ । ବିଶେଷତଃ ମନ୍ଦଦ ଉଦ୍ୟାନରେ ସାଗର ବକ୍ଷରେ ଅପେକ୍ଷାରତ ବୃହତ୍‌କାୟ ଜାହାଜଗୁଡ଼ିକର ଆଲୋକମାଳା ଓ ସମୁଦ୍ର ଜଳବେଣୀରେ ତାହାର ଦୋଳାୟିତ ପ୍ରତିଫଳନ ପର୍ଯ୍ୟଟକମାନଙ୍କର ମନ କିଣିନିଏ। ମନ୍ଦଦ ଉଦ୍ୟାନ ନିକଟରେ ଅଧିକ ପର୍ଯ୍ୟଟନ ଶିଳ୍ପର ବିକାଶ ତଥା ପର୍ଯ୍ୟଟକମାନଙ୍କର ସୁବିଧା ନିମିତ୍ତ ବିଭିନ୍ନ ସାଧନର ଅଭିବୃଦ୍ଧି ଘଟିଲେ, ତାହା ସମଗ୍ର ଭାରତର ଅନ୍ୟତମ ବିଖ୍ୟାତ ପର୍ଯ୍ୟଟନସ୍ଥଳୀ ହୋଇପାରିବ।

ମନ୍ଦଦ ବନ୍ଦର କଳିଙ୍ଗ ନୌବାଣିଜ୍ୟର ଅନ୍ତୁଡ଼ିଶାଳ । ପ୍ରଥମେ ମହାନଦୀର ଉତ୍ପତ୍ତି ସ୍ଥଳରୁ ଉଭୟ କୂଳରେ ଥିବା ବନ୍ଦରଗୁଡ଼ିକରୁ ରପ୍ତାନୀଯୋଗ୍ୟ ଦ୍ରବ୍ୟ ସଂଗ୍ରହ କରି ସାଧବମାନେ ମହାନଦୀ ସହ ସାଗରର ସଙ୍ଗମସ୍ଥଳ ତଥା ମନ୍ଦଦ ବନ୍ଦରରେ ପହଞ୍ଚୁ ଥିଲେ । ବୋଇତଗୁଡ଼ିକୁ ବନ୍ଦରାଞ୍ଚଳର ବୋଇତରୁହା କୁଦରେ ରଖୁଥିଲେ । ପଣ୍ୟଦ୍ରବ୍ୟକୁ ମୃଷାଡ଼ିଆ ଭଣ୍ଡାରରେ ରଖି ଯୋଗୀଧନ କନ୍ଦା ଦ୍ୱୀପରେ ରହି ଦକ୍ଷିଣ ପୂର୍ବ ଦ୍ୱୀପପୁଞ୍ଜକୁ ଯିବା ପାଇଁ ଅନୁକୂଳ ବାୟୁ ପ୍ରବାହକୁ ଅପେକ୍ଷା କରୁଥିଲେ । ବୋଇତ ଚଳାଉଥିବା କୈବର୍ତ୍ତମାନେ କାଉଡ଼ିଆ ଦ୍ୱୀପରେ ବିଶ୍ରାମ ନେଉଥିଲେ । ଅନୁକୂଳ ବାୟୁପ୍ରବାହ ଆରମ୍ଭ ହେବା ପରେ ସାଧବମାନେ ପଣ୍ୟଦ୍ରବ୍ୟକୁ ବୋଇତରେ ରଖି କୈବର୍ତ୍ତମାନଙ୍କ ସହାୟତାରେ ନୌଯାତ୍ରା ଆରମ୍ଭ କରୁଥିଲେ । ମନ୍ଦଦ ବନ୍ଦରାଞ୍ଚଳର ସାରଳୀକୁଦରେ ଥିବା ସାରଳା ମାତାଙ୍କୁ ପୂଜାର୍ଚ୍ଚନା କରି କଳିଙ୍ଗର ସାଧବମାନେ ସିଂହଳ, ଜାଭା, ସୁମାତ୍ରା, ବାଲି ପ୍ରଭୃତି ଦ୍ୱୀପପୁଞ୍ଜକୁ ନୌଯାତ୍ରା କରୁଥିଲେ ।

ଓଡ଼ିଆମାନଙ୍କର ନିଜ ବିଷୟରେ ବିସ୍ତୃତ ଭାବେ ବିବରଣୀ ସଂଗ୍ରହ କରି ରଖିବା ଅଭ୍ୟାସ ନଥିଲା । ସେମାନେ କର୍ମଠ ଥିଲେ ଓ କୃତିତ୍ୱ ଅର୍ଜନ କରୁଥିଲେ । ଇତିହାସରେ ସେମାନେ ସାହସିକ ବା ଧୂରୀଣ ଥିଲେ ବୋଲି ଅଣ ଓଡ଼ିଆ ଐତିହାସିକମାନେ ପ୍ରଥମେ ସୂଚନା ଦେଇଛନ୍ତି। ଭୌଗଳିକବିତ୍ ଟଲେମି, ଟି.ଇ. ଜେରିନି ଓ ପରିବ୍ରାଜକ ହୁଏନ୍‌ସାଂ ଯଦି କଳିଙ୍ଗର ନୌବାଣିଜ୍ୟିକ ପ୍ରସିଦ୍ଧିର ଅବତାରଣା କରିନଥାନ୍ତେ, ତେବେ ଆମେ ତାହା ଜାଣିବାର ସୁଯୋଗ ରହି ନଥାନ୍ତା । ଯାହା ବର୍ତ୍ତମାନ ସୁଦ୍ଧା ପ୍ରମାଣିତ ହୋଇଛି, ତାହାଠାରୁ ବହୁ ତଥ୍ୟ ଅନାଲୋଚିତ ହୋଇରହିଛି । ବର୍ତ୍ତମାନ ଓଡ଼ିଶାର ଐତିହାସିକ, ପତ୍ନତତ୍ତ୍ୱ ବିତ୍, ଭୌଗଳିକବିତ ଓ ପର୍ଯ୍ୟଟନବିତ୍‌ମାନେ ନିଜ ଭିତରେ ସମନ୍ୱୟ ରଖି ଅଧିକ ଗବେଷଣା କଲେ କଳିଙ୍ଗ ନୌବାଣିଜ୍ୟର ବହୁ ରୁଦ୍ଧିମନ୍ତ ତଥ୍ୟ ପ୍ରକାଶ ପାଇ ପାରନ୍ତା ଓ ସମଗ୍ର ବିଶ୍ୱରେ କଳିଙ୍ଗର ସାଧବମାନେ ଯେ ପ୍ରଥମେ ନୌଯାନ ନିର୍ମାଣ କରି ବିଭିନ୍ନ ଦେଶକୁ ନୌପଥ ଆବିଷ୍କାର କରିଥିଲେ, ତାହାର ପ୍ରମାଣ ମିଳିପାରନ୍ତା । କଳିଙ୍ଗର ନୌବାଣିଜ୍ୟ ଇତିହାସ, ପୁରାତନ ମନ୍ଦଦ ବନ୍ଦରରୁ ଅତ୍ୟାଧୁନିକ ବୃହତ୍ ବନ୍ଦର ପାରାଦ୍ୱୀପର ବିକାଶ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏମ୍.ଆଇ.ଜି–୧, ୨୨୭, ସତ୍ୟସାଇ ଏନ୍‌କ୍ଲେଭ,
ଲେନ୍–୨୨, କୋଲଥିଆ, ଖଣ୍ଡଗିରି,
ଭୁବନେଶ୍ୱର–୭୫୧୦୩୦

◆◆◆

# ଡକ୍ଟର ହରେକୃଷ୍ଣ ମହତାବ ବ୍ୟକ୍ତି ନା ଅନୁଷ୍ଠାନ !

ଡକ୍ଟର ବିରଞ୍ଚି ସାହୁ

ଏଭଳି ଏକ ଶୀର୍ଷକ ନିଶ୍ଚିତ ମନରେ ବିଭିନ୍ନ ପ୍ରଶ୍ନବାଚୀ ସୃଷ୍ଟି କରିଥିବ । କାରଣ ଓଡ଼ିଶାରେ ଉତ୍କଳକେଶରୀ କହିଲେ ଡକ୍ଟର ମହତାବଙ୍କୁ ବୁଝାଏ । ଆଉ ଡକ୍ଟର ମହତାବ କେବଳ ଜଣେ ବ୍ୟକ୍ତିର ପରିଚୟ ତ ନିଶ୍ଚିତ କିନ୍ତୁ ଗୋଟିଏ ନାଁ ଭିତରେ ସେ ଆବଦ୍ଧ ହୋଇ ରହିନାହାନ୍ତି । ସମଗ୍ର ଓଡ଼ିଶାରେ କାହିଁକି ଭାରତବର୍ଷରେ ତାଙ୍କର ସ୍ୱତନ୍ତ୍ର ପରିଚୟଟିଏ ଅଛି ନିଶ୍ଚୟ । ନାଁ ସହିତ ସେ ଏକ ଅନୁଷ୍ଠାନରେ ପରିଣତ ହୋଇ ଯାଇଛନ୍ତି । ତାଙ୍କର ଅବର୍ତ୍ତମାନରେ ଓଡ଼ିଶା ବାସ୍ତବିକ ଜଣେ କେଶରୀଙ୍କୁ ହରାଇ ଦେଇଛି । ସେ ଶୂନ୍ୟସ୍ଥାନ ଆଜିଯାଏ ହୁଏତ ଆଉ କେହି ପୂରଣ କରିବାକୁ ସମର୍ଥ ହୋଇନାହାନ୍ତି । ଜଣେ ବ୍ୟକ୍ତି ଏକାବେଳକେ କିପରି ଏତେଗୁଡିଏ କାମକୁ ସଠିକ୍ ଭାବରେ କରିପାରେ ? ଏହିପରି ପ୍ରଶ୍ନ ଅନେକ ସମୟରେ ହୁଏତ ଉଠିପାରେ । କାରଣ, ମହତାବଙ୍କୁ ବିଶ୍ଳେଷଣ କରିବାକୁ ମଗଜଥିବା ଦରକାର ବୋଲି ମୋର ବିନମ୍ର ମତ । ମହତାବଙ୍କ ବ୍ୟକ୍ତିତ୍ୱକୁ ଦୁଇଭାଗରେ ବିଭକ୍ତ କଲେ ପ୍ରଥମତଃ ସେ ରାଜନୀତିକ ବ୍ୟକ୍ତିଭାବେ ଦୃଷ୍ଟିକୁ ଆସନ୍ତି ଏବଂ ଦ୍ୱିତୀୟତଃ ସାହିତ୍ୟିକଭାବେ ତାଙ୍କର ସ୍ୱତନ୍ତ୍ର ପରିଚୟ ଅଛି । ଏହି ଦୁଇଟି ଦିଗକୁ ସେ କିପରି ଭାବେ ସଫଳ କରାଇ ପାରିଥିଲେ ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ ।



**ପ୍ରଥମତଃ ରାଜନୀତିକ ବ୍ୟକ୍ତିଭାବେ:** ମହତାବଙ୍କ ଏହିଗୁଣ ପିଲାଟି ଦିନରୁ ଜଣାପଡି ଥିଲା । କାରଣ, ସେ ଥିଲେ ଆଗରପଡାର ଜମିଦାର ପରିବାରର । ତେଣୁ ସୁଖ–ସ୍ୱାଚ୍ଛନ୍ଦ୍ୟରେ ବଢିବା ସହିତ ନେତୃତ୍ୱ ନେବାର ଗୁଣ ତାଙ୍କର ଥିଲା । ସଭା ସମିତିମାନ ଆୟୋଜନ କରିବା ଓ ତାକୁ ନେତୃତ୍ୱ ନେଇ ସଫଳ କରିବା ତାଙ୍କ ବ୍ୟକ୍ତିତ୍ୱର ଉନ୍ମେଷ ପର୍ବରେ ଏହାହିଁ ଘଟିଥିଲା । ପରବର୍ତ୍ତୀ ସମୟରେ ରାଜନୀତି ସହିତ ଜଡିତ ହୋଇଯିବା ପରେ ତାଙ୍କର ଜୀବନ ସମ୍ପୂର୍ଣ୍ଣ ବ୍ୟସ୍ତ ବହୁଳ ହୋଇଯାଇଥିଲା । ରାଜନୀତିରେ ରହି ସେ ନିର୍ବାଚନ ଲଢିବା ସହିତ ବିଭିନ୍ନ ସମୟରେ ପଦପଦବୀ ମଣ୍ଡନ କରିଥିଲେ । ମୁଖ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ ଏପରିକି ରାଜ୍ୟପାଳ ଭଳି ଉଚ୍ଚ ପଦବୀ ଓ ସମ୍ମାନଜନକ ପଦବୀରେ ରହିବା ଛୋଟିଆ କଥା ନୁହେଁ ।

ଓଡ଼ିଶାର ଅନେକ କାର୍ଯ୍ୟରେ ସେ ଥିଲେ ସର୍ବାଗ୍ରେ । ଏମିତିକି ସେ ପ୍ରଥମ କୃତିତ୍ୱର ଅଧିକାରୀ ଥିଲେ । ଏ ସମ୍ପର୍କରେ ଆଲୋଚକ ଡକ୍ଟର ରମାକାନ୍ତ ବେହେରା ତାଙ୍କ ଗବେଷଣା ପୁସ୍ତକ 'ସାହିତ୍ୟ ସାଧକ ମହତାବ'ରେ ଲେଖିଛନ୍ତି– 'ସର୍ବ ଭାରତୀୟ କଂଗ୍ରେସ କାର୍ଯ୍ୟକାରୀ କମିଟିରେ ମହତାବ ହିଁ ପ୍ରଥମ ଓଡ଼ିଆ ସଭ୍ୟ, ସ୍ୱାଧୀନୋତ୍ତର ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ, ଓଡ଼ିଶାର ପ୍ରଥମ ପୂର୍ଣ୍ଣାଂଗ ଇତିହାସ ପ୍ରଣେତା, ଓଡ଼ିଶାରେ ପ୍ରଥମ ଇଂରାଜୀ ଦୈନିକ ସମ୍ବାଦପତ୍ରର ପ୍ରତିଷ୍ଠାତା, ଦିଲ୍ଲୀ ମନ୍ତ୍ରିମଣ୍ଡଳରେ ପ୍ରଥମ କ୍ୟାବିନେଟ୍ ମନ୍ତ୍ରୀ, ପ୍ରଥମ ଓଡ଼ିଆ ରାଜ୍ୟପାଳ ତଥା ରାଜନୀତିକ ସଂଗ୍ରାମରେ ଓଡ଼ିଶାର ଏକମାତ୍ର ଅପରାଜିତ ନେତା ହିସାବରେ ସର୍ବବନ୍ଦ୍ୟ । ଇତିହାସର ଏକ କଳଙ୍କିତ ପରମ୍ପରା ଭଙ୍ଗ କରି ପ୍ରଥମ ଥର ପାଇଁ ହରିଜନମାନଙ୍କୁ ସେ ହିଁ ଶ୍ରୀମନ୍ଦିରରେ ପ୍ରବେଶ କରାଇ ପାରିଥିଲେ ।' ଏଥିରୁ ସ୍ପଷ୍ଟ ପ୍ରମାଣ ମିଳୁଛି ଯେ ଡକ୍ଟର ମହତାବଙ୍କ କାର୍ଯ୍ୟ ସର୍ବବାଦୀ ଗ୍ରହଣୀୟ ଥିଲା । ମହତାବଙ୍କ ଜୀବନ ଥିଲା ବୈଚିତ୍ର୍ୟ ମଣ୍ଡିତ । ଏମିତି କୌଣସି କାର୍ଯ୍ୟ ନାହିଁ ଯେଉଁଥିରେ ମହତାବଙ୍କ ସ୍ୱର୍ଣ୍ଣାକ୍ଷର ନାହିଁ ।

ଡକ୍ଟର ମହତାବ ଓଡ଼ିଶାରେ ବିଂଶ ଶତାବ୍ଦୀର ତୁଙ୍ଗ ବ୍ୟକ୍ତିତ୍ୱ । ବିଂଶ ଶତାବ୍ଦୀରେ ଯଦି କେହି ଓଡ଼ିଶା ପାଇଁ ଗର୍ବ କରିବାକୁ ସାମର୍ଥ୍ୟ ଯୋଗାଇ ଦେଇଛି, ତାହାହେଲେ ତାହାରି ପଛଭୂମିରେ ମହତାବଙ୍କ ନାଁ ନିଶ୍ଚିତଭାବେ ଆସିବ । ରାଜନୀତି, ଇତିହାସ, କଳା, ସାହିତ୍ୟ, ସଂସ୍କୃତି, ସାମାଜିକ ବିବର୍ତ୍ତନ ଧାରାରେ ତାଙ୍କ ମୁଦ୍ରାଙ୍କ ସ୍ପଷ୍ଟ ବାରି ହୋଇପଡେ । ମୋଟ ଉପରେ ଗତ ଶତାବ୍ଦୀର ଘଟଣା ବହୁଳ ଓଡ଼ିଶାର କେନ୍ଦ୍ରବିନ୍ଦୁ ଥିଲେ ଡକ୍ଟର ମହତାବ । ଏପରିକି କେହି କେହି ତାଙ୍କୁ ନବ ଉତ୍କଳର ନିର୍ମାତା ଭାବେ ଚିହ୍ନୁଥିଲେ । ଯେତେଗୁଡିଏ ଗଠନମୂଳକ କାର୍ଯ୍ୟ ଓଡ଼ିଶାରେ ସମ୍ଭବ ହୋଇଛି, ତାରି ମୂଳରେ ଅଛନ୍ତି ଡକ୍ଟର ମହତାବ । ହୀରାକୁଦ ନଦୀବନ୍ଧ ଯୋଜନା, ଭୁବନେଶ୍ୱରକୁ ନୂଆ ରାଜଧାନୀ କରିବା, କଟକର ବେତାରକେନ୍ଦ୍ର ପ୍ରତିଷ୍ଠା, କଳାବିକାଶ କେନ୍ଦ୍ର ପ୍ରତିଷ୍ଠା, ରାଜ୍ୟ ଲଳିତକଳା ଏକାଡେମୀ ପ୍ରତିଷ୍ଠା, ରବୀନ୍ଦ୍ରମଣ୍ଡପ, ରାଜ୍ୟ ପାଠାଗାର, ପାରାଦ୍ୱୀପ ବନ୍ଦର ପ୍ରତିଷ୍ଠା ପାଇଁ ତାଙ୍କ ଉଦ୍ୟମ, ରାଜଗାଙ୍ଗପୁର ସିମେଣ୍ଟ କାରଖାନା ତିଆରି ଏସବୁ ମହତାବଙ୍କର ଓଡ଼ିଶାକୁ ଅନନ୍ୟ ଅବଦାନ । ତାଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ଅନେକ ଯୋଜନାର ସଫଳ ରୂପାୟନ କରି ପ୍ରକୃତରେ ଉତ୍କଳ କେଶରୀର ନାମକୁ ସେ ସାର୍ଥକ କରିଥିଲେ । ଭୁବନେଶ୍ୱରରେ ନୂଆ ରାଜଧାନୀ ପ୍ରତିଷ୍ଠା କରିବା ବିଶ୍ୱ ଇତିହାସରେ ଏକ ଅଭିନବ ଘଟଣା । ଗୋଟିଏ ପ୍ରାଚୀନ ନଗର ଉପରେ ନୂଆ ରାଜଧାନୀ ପ୍ରତିଷ୍ଠା କରିବା ହରେକୃଷ୍ଣ ମହତାବଙ୍କର ଏକ ଯୁଗାନ୍ତକାରୀ ରାଷ୍ଟ୍ର ମଙ୍ଗଳଯୋଜନା ବୋଲି ସେଦିନ ପ୍ରତିଷ୍ଠା ଦିବସରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଡକ୍ଟର ମହତାବଙ୍କ ଭୂୟସୀ ପ୍ରଶଂସା କରିଥିଲେ ।

**ସାହିତ୍ୟିକ ଦିଗ:** ସାହିତ୍ୟ ସ୍ରଷ୍ଟାଭାବେ ତାଙ୍କର ପୁଣି ସ୍ୱତନ୍ତ୍ର ପରିଚୟ ଓଡ଼ିଆ ସାହିତ୍ୟରେ ରହିଛି । ଡକ୍ଟର ମହତାବ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ଜଣେ ସୃଜନଶୀଳ ପ୍ରତିଭାଭାବେ ଓଡ଼ିଆ ସାହିତ୍ୟରେ ନିଜର ମୁଦ୍ରାଙ୍କ ଛାଡିଯାଇଛନ୍ତି । ଏକାଧାରରେ ଡକ୍ଟର ମହତାବ ଥିଲେ ପ୍ରାବନ୍ଧିକ, ଗାଳ୍ପିକ, କବି, ଔପନ୍ୟାସିକ, ଶିଶୁସାହିତ୍ୟିକ, ଫିଚର ଲେଖକ, ଆତ୍ମଜୀବନୀକାର, ଜୀବନୀ ରଚୟିତା, ନାଟ୍ୟକାର, ସାମ୍ବାଦିକ ଓ ସମ୍ପାଦକ ତାଙ୍କ ଲେଖାରେ ନୂତନତାର ଆବାହନ କରିଥିଲେ ସେ । ମହତାବଙ୍କ କାବ୍ୟମାନସ ଏତେ ପରିବ୍ୟାପ୍ତ ନଥିଲେ ହେଁ କବିତା ଚାତୁରୀରେ ସେ ମନ ମୋହିବାର କଳାକୁ ଫୁଟାଇ ପାରିଥିଲେ । ଶେଷ ଅଶ୍ରୁ, ଆତ୍ମଦାନ, ଚାରିଚକ୍ଷୁ, ଜୀବନ ସମସ୍ୟା, ପଳାସୀ ଅଭିଯାନେ ଓ ଛାୟା ପଥର ଯାତ୍ରୀ ଆଦି କାବ୍ୟ-କବିତା ତାଙ୍କ ଲେଖନୀରୁ ସୃଷ୍ଟି ହୋଇଛନ୍ତି । କଥା ସାହିତ୍ୟରେ ନିଜର ମୁଦ୍ରାଙ୍କ ମଧ୍ୟ ଛାଡି ଯାଇଛନ୍ତି ଡକ୍ଟର ମହତାବ । ଗଳ୍ପ ସାହିତ୍ୟକୁ ତାଙ୍କର ଅବଦାନ ଯଥେଷ୍ଟ । ଷଡଯନ୍ତ୍ର, ନୂଆଚଳଣ, ସ୍ୱର୍ଗରେ ଇମର୍‌ଜେନ୍‌ସୀ, ଦଶବର୍ଷ ପରେ, ପ୍ରେମର ପରିଣାମ, ରିକ୍‌ସାବାଲା, ଡୋରି ଲାଗି ଛାଡି ପଥର, ଭିକାରୀର ଜବାବ ଆଦି ଗଳ୍ପ ସଂକଳନ ତାଙ୍କୁ କଥାକାରର ପରିଚୟ ପ୍ରଦାନ କରିଛି । ରାଜନୀତିକ, ସାମାଜିକ, ପାରିବାରିକ, ଆଦି ବିବିଧ ପ୍ରକାର ଗଳ୍ପ ରଚନା କରି ସେ ଗଳ୍ପକୁ ସମୃଦ୍ଧ କରିଛନ୍ତି । ରାଜନୀତି ସହିତ ସଂଶ୍ଳିଷ୍ଟ ଥିବାରୁ ସେ ଲୋକମାନଙ୍କ ସହିତ ଅତି ନିକଟରୁ ମିଶିବାର ସୁଯୋଗ ପାଇଥିଲେ । ଫଳରେ ଦେଶର ସ୍ୱାଧୀନତା ଆନ୍ଦୋଳନ, କାରାବରଣ, ରାଜନୀତି ରଦା ଓ ପେଞ୍ଚରେ ସାଧାରଣ ମଣିଷଙ୍କ ଅବସ୍ଥାକୁ ସେ ଅତି ସଫଳତାର ସହିତ ତାଙ୍କ ଗଳ୍ପରେ ଦର୍ଶାଇଛନ୍ତି । ତାଙ୍କ ଗଳ୍ପର ଚରିତ୍ର ମାନେ ସମସାମୟିକ ସମାଜର । ସହର, ଗାଁର ଶିକ୍ଷିତ ଅଶିକ୍ଷିତ, ସ୍ୱଚ୍ଛଳ, ସାଧାରଣ ନାଗରିକ ଏମାନେ ହିଁ ତାଙ୍କ ଗଳ୍ପର ଆଧାରକଳା । ଏତଦ୍‌ଭିନ୍ନ ଟାଉଟର, ପ୍ରତିଭା, ଉଣେଇଶ ଶହ ପଚସ୍ତରୀ, ଅବ୍ୟାପାର, ତୃତୀୟପର୍ବ ଆଦି ଉପନ୍ୟାସ ତାଙ୍କ ଦ୍ୱାରା ରଚିତ ହୋଇ ଓଡ଼ିଆ ଉପନ୍ୟାସ ସାହିତ୍ୟକୁ ସମୃଦ୍ଧ କରିଛି ।

ଡକ୍ଟର ମହତାବ ଏକାଙ୍କିକା ରଚନାରେ ମଧ୍ୟ ନିଜର ସ୍ୱାକ୍ଷର ଛାଡିଯାଇଛନ୍ତି । ମୁକ୍ତି ଓ ମୁକ୍ତ ଯୁଗ ସଂକେତ, ମମତାର ଅନୁତାପ, ଅନ୍ଧଯୁଗ, ଶମ୍ବୁକର ତପସ୍ୟା, ଶେଷକଳା ଆଦି ଏକାଙ୍କିକା ଗୁଡିକରେ ସମସାମୟିକ ସାମାଜିକ ସମସ୍ୟା ଓ ରାଜନୀତିକ ଘଟଣା ଆଦିର ଚିତ୍ର ଦେବାରେ ସେ କୁଣ୍ଠିତ ହୋଇନାହାନ୍ତି । ଯୁଗ ସଂକେତରେ ସ୍ୱାଧୀନତା ପ୍ରାପ୍ତି ପରେ ମଣିଷର ସ୍ୱପ୍ନ ଭଙ୍ଗ ହିଁ ମୁଖ୍ୟ କଥାବସ୍ତୁ । ଶୋଷକ, ଶୋଷିତର କଥା ତାଙ୍କ ନାଟକରେ ବେଶ୍ ରସାଣିତ । ସାହିତ୍ୟର ମୁଖ୍ୟ ବିଭାଗ ପ୍ରବନ୍ଧରେ ମଧ୍ୟ ତାଙ୍କ କୃତିତ୍ୱ ଲକ୍ଷ୍ୟ କରିହୁଏ । ସାମାଜିକ, ସମସ୍ୟାମୂଳକ, ଜୀବନୀମୂଳକ, ରାଜନୀତିକ, ସାଂସ୍କୃତିକ ପ୍ରବନ୍ଧରେ ତାଙ୍କର ଅନ୍ତର୍ଦୃଷ୍ଟିର ପରିଚୟ ମିଳେ ।

**ଆତ୍ମଜୀବନୀ–** ସାଧନାର ପଥେ, ଫିଚର ପୁସ୍ତକ– ଗାଁ ମଜଲିସ୍ ଯାହା ତାଙ୍କର ଶ୍ରେଷ୍ଠ ରଚନାଭାବେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ । ଗାଁ ମଉଲିସ୍‌ରେ ସେ ଗାଁର କଥାକୁ ଉପସ୍ଥାପନ କରି ନିଜର ଲେଖାକୁ ସାର୍ଥକ କରିଯାଇଛନ୍ତି । ଗାଁର ଚଳଣି, ଜୀବନଯାତ୍ରା ଆଦିର ବିଭିନ୍ନ ପ୍ରସଙ୍ଗକୁ ନିଆରା ଶୈଳୀରେ ଉପସ୍ଥାପନ କରି ପାଠକଙ୍କ ହୃଦୟରେ ଚିରକାଳ ପାଇଁ ଆସନଟିଏ ପାତି ଯାଇଛନ୍ତି । ଏସବୁ ବାଦ୍ ତାଙ୍କର ସବୁଠୁ ଉତ୍କର୍ଷ କାର୍ଯ୍ୟ ଥିଲା ସାହିତ୍ୟ କ୍ଷେତ୍ରରେ ପତ୍ରିକା ସମ୍ପାଦନା । ସେଦିନର ଝଙ୍କାର ଆଜି ଓଡ଼ିଶାର ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖିଛି । ଝଙ୍କାର ପତ୍ରିକା ମାଧ୍ୟମରେ ଓଡ଼ିଶାରେ ଅଗଣନ ସାହିତ୍ୟିକ ସୃଷ୍ଟି ହେବାର ପରମ୍ପରା ଲାଗିରହିଛି । ସାମ୍ପ୍ରତିକ ସମୟରେ ଝଙ୍କାର ଏକମାତ୍ର ମାସିକ ପତ୍ରିକା ଯାହା ବିଗତ ୬୫ବର୍ଷ ଧରି ନିରବଚ୍ଛିନ୍ନଭାବେ ପ୍ରକାଶିତ ହୋଇ ଆସୁଛି । ଏହାବ୍ୟତୀତ ପ୍ରଜାତନ୍ତ୍ର ସମ୍ବାଦପତ୍ର ପ୍ରକାଶନ, ପ୍ରଜାତନ୍ତ୍ର ପ୍ରଚାର ସମିତି ଗଠନ, ମୀନାବଜାର, ବିଷୁବମିଳନର ସ୍ରଷ୍ଟା ଏସବୁ ତାଙ୍କ ସାହିତ୍ୟିକ ଓ ସାମାଜିକ ଦିଗକୁ ଉନ୍ମୋଚନ କରିଥାଏ । 'ଓଡ଼ିଶା ଇତିହାସ' ରଚନା ପୃଷ୍ଠଭୂମିରେ ତାଙ୍କର ଐତିହାସିକ ଭୂମିକାକୁ ଅସ୍ୱୀକାର କରି ହୁଏନା । ଅନ୍ୟ ଐତିହାସିକଙ୍କ ପରି ନୁହେଁ ବରଂ ସତ୍ୟତା ଭିତରେ ତାଙ୍କ ଇତିହାସ ପର୍ଯ୍ୟବସିତ ।

ସାହିତ୍ୟଠାରୁ ଇତିହାସ ଯାଏଁ, ରାଜନୀତିଠାରୁ ସମାଜ ସଂସ୍କାର ଯାଏଁ ସବୁଥିରେ ଡକ୍ଟର ମହତାବଙ୍କ ସ୍ୱାକ୍ଷର ବେଶ୍ ଅନୁରଣିତ । ନବ ଓଡ଼ିଶାର ନିର୍ମାତାଭାବେ ମହତାବଙ୍କୁ ସ୍ୱୀକାର କରିବାକୁ ବୋଧେ କେହି କୁଣ୍ଠାବୋଧ କରିବେ ନାହିଁ । ସେ ଏଭଳି ଜଣେ ଯୋଗଜନ୍ମା ବ୍ୟକ୍ତି ଯେ କି ଓଡ଼ିଶାକୁ ଧନ୍ୟ କରିଯାଇଛନ୍ତି । ତେଣୁ ଜଣେ ବ୍ୟକ୍ତିଭାବେ ତାଙ୍କୁ ବିଚାର କରିବା ଅପେକ୍ଷା ବରଂ ସେ ଗୋଟିଏ ଅନୁଷ୍ଠାନ ବୋଲି ପ୍ରତ୍ୟୟ ।

ଅଧ୍ୟାପକ, ଓଡ଼ିଆ ବିଭାଗ
ଉତ୍କଳ ଭାରତୀ ବିଜ୍ଞାନ ମହାବିଦ୍ୟାଳୟ
ପଳାଶୁଣି, ଭୁବନେଶ୍ୱର

**ସହାୟକ ଗ୍ରନ୍ଥସୂଚୀ**

୧) ସାହିତ୍ୟ ସାଧକ ମହତାବ/ ଡକ୍ଟର ରମାକାନ୍ତ ବେହେରା/ ପ୍ରଜାତନ୍ତ୍ର ପ୍ରଚାର ସମିତି

୨) ମହତାବ ସ୍ମାରକୀ ଜୟନ୍ତୀ/ ସମ୍ପାଦନା– ପ୍ରଜାତନ୍ତ୍ର ପ୍ରଚାର ସମିତି



# ମହାନ୍ ରାଷ୍ଟ୍ରନାୟକ ମୌଲାନା ଆଜାଦ୍

**ପ୍ରଫେସର ଅନନ୍ତ ଚରଣ ସାହୁ**

ମୁକ୍ତି ସଂଗ୍ରାମର ମହାନାୟକମାନଙ୍କ ମଧ୍ୟରେ ଆଗଧାଡ଼ିର ଯେଉଁ କେତେକ ଭାରତୀୟ ନେତା ଜନଜୀବନକୁ ଗଭୀର ଭାବରେ ଆଲୋଡ଼ିତ କରିଥିଲେ, ସେମାନଙ୍କ ମଧ୍ୟରେ ମୌଲାନା ଆଜାଦ ଅନ୍ୟତମ । ଆବୁଲ୍ କଲାମ୍ ମୁହିଉଦ୍ଦିନ୍ ଅହେମଦ୍ ଆଜାଦଙ୍କ ଜନ୍ମ ୧୮୮୮ ନଭେମ୍ବର ୧୧ ତାରିଖରେ । ସେ ସ୍ୱାଧୀନ ଭାରତର ପ୍ରଥମ ଶିକ୍ଷା ମନ୍ତ୍ରୀ ରୂପେ ଶୈକ୍ଷିକ ଜଗତ ଉପରେ ଯେଉଁ ପ୍ରଲେପ ଛାଡ଼ିଯାଇ ଅଛନ୍ତି, ତାହା ବିସ୍ମୃତିର ଧୂଳିଝଡ ଅଥବା କାଳର କରାଳ କବଳରେ ଧୋଇଯିବ ନାହିଁ । ସେଥିପାଇଁ ତାଙ୍କର ଯଥାର୍ଥ ଶ୍ରଦ୍ଧାଞ୍ଜଳି ପାଇଁ ରାଷ୍ଟ୍ର ଆଜିର ଦିନଟିକୁ ତାଙ୍କର ଜୟନ୍ତୀ ଉପଲକ୍ଷେ, ରାଷ୍ଟ୍ରୀୟ ଶୈକ୍ଷିକ ଦିବସ ରୂପେ ପାଳନ କରୁଛି । ମରଣୋତ୍ତର ଭାରତରତ୍ନ ଉପାଧି ଦେଇ ସରକାର ରାଷ୍ଟ୍ରନିର୍ମାଣ ପାଇଁ ତାଙ୍କର ଅବଦାନକୁ ଶୁଝିବା ଯଥେଷ୍ଟ ନୁହେଁ । ଭାରତର ପ୍ରତ୍ୟେକ ଶିକ୍ଷାନୁଷ୍ଠାନରେ ତାଙ୍କ ଭଳି ଜଣେ ମହାନ୍ ରାଷ୍ଟ୍ରବାଦୀ ସଚ୍ଚା ଭାରତୀୟଙ୍କ ସମ୍ପର୍କରେ ଆଲୋଚନା ସାପେକ୍ଷ । 'ମୌଲାନା' ତଥା 'ପ୍ରଜ୍ଞାବାନ ମହାପଣ୍ଡିତ' ତାଙ୍କର ସେହି ନାମୋପାଧିର ସାର୍ଥକତା ପ୍ରତିପାଦନ କରିଅଛନ୍ତି ।



ତାଙ୍କର ବୁନିଆଦୀ ଥିଲା ଭାରତୀୟ ସଂସ୍କୃତି ଓ ଜୀବନଧାରା ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ପିତା ମୌଲାନା ଖୈରୁଦ୍ଦୀନ ଥିଲେ ଆଫଗାନ୍‌ସମ୍ଭୂତ ବଙ୍ଗାଳୀ ମୁସଲମାନ୍ । ୧୮୫୭ର ପ୍ରଥମ ଭାରତୀୟ ମୁକ୍ତି ସଂଗ୍ରାମ, ଯାହାକୁ ଇଂରେଜ ଐତିହାସିକଗଣ ସିପାହୀ-ବିଦ୍ରୋହ କହି ବିଦ୍ରୁପ କରିଥାଆନ୍ତି, ସେହି ସମୟରେ ପିତା ଇଂରେଜମାନଙ୍କ ସନ୍ଦେହାତ୍ମକ ବୈରଦୃଷ୍ଟିରୁ କ୍ଷାନ୍ତି ପାଇବା ପାଇଁ ମେକ୍କାତୀର୍ଥକୁ ପଳାଇଯାଇଥିଲେ । ସେହିଠାରେ ହିଁ ମୌଲାନା ଆଜାଦଙ୍କର ଜନ୍ମ । ୧୮୯୦ ମସିହାରେ ପିତାମାତା ପୁନର୍ବାର ଭାରତ ଫେରିଆସି କଲିକତାରେ ଅବସ୍ଥାନ କଲେ । ସେତେବେଳେ କଲିକତା ଥିଲା ବ୍ରିଟିଶ ଭାରତର ରାଜଧାନୀ ଓ ସମଗ୍ର ଦେଶର ପାଶ୍ଚାତ୍ୟ ସଭ୍ୟତା ସମ୍ପନ୍ନ ବିଦ୍ୟା ଓ ଧନ ସମୃଦ୍ଧ ନଗରୀ । ଅସାଧାରଣ ମେଧାବୀ ଏହି ବାଳକ ୧୫ ବର୍ଷ ନପୁରୁଣୁ ଆରବୀ, ଉର୍ଦ୍ଦୁ ବଙ୍ଗଳା ଓ ଇଂରାଜୀ ଭାଷାରେ ବେଶ୍ ପାରଦର୍ଶିତା ଲାଭ କରିପାରିଥିଲା । ସ୍ୱଳ୍ପ ବୟସରେ 'କୋରାନ୍' ଗ୍ରନ୍ଥର ସେ ଯେଉଁଭଳି ବ୍ୟାଖ୍ୟା କରିପାରୁଥିଲେ, ତାହା ମୁସଲମାନ ପୁରୋହିତମାନଙ୍କୁ ଆଚମ୍ବିତ କରୁଥିଲା । ଅତି ସାବଲୀଳ ଓ ସ୍ୱଚ୍ଛନ୍ଦ-ଲାଳିତ୍ୟଭରା ତାଙ୍କର

ଉର୍ଦ୍ଦୁ କବିତାଗୁଡିକ ବେଶ ଲୋକପ୍ରିୟ ହୋଇପାରୁଥିଲା । ତେରବର୍ଷର ବାଳୁତ ବୟସରେ ତାଙ୍କର ବିବାହିତ ଜୀବନ ଆରମ୍ଭ ହେଲା । କିଶୋର ବୟସରୁ ତାଙ୍କ ଦ୍ୱାରା ସମ୍ପାଦିତ ନୈରଙ୍ଗ–ଇ– ଆଲାମ ନାମକ ଏକ ରାଜନୈତିକ ପତ୍ରିକା ଜରିଆରେ ତାଙ୍କର ଦେଶପ୍ରୀତି ଓ ବିପ୍ଳବାତ୍ମକ ଚିନ୍ତାଧାରର ସ୍ଫୁରଣ ଘଟିଥିଲା । ତାଙ୍କର ଏହି ଚିନ୍ତାଧାରା ଓ ଆଭିମୁଖ୍ୟକୁ ସେ କାଳର ରକ୍ଷଣଶୀଳ ମୁସଲମାନ ଗୋଷ୍ଠୀ ଆଦୌ ପସନ୍ଦ କରୁନଥିଲେ । କ୍ରମେ ଆଜାଦଙ୍କର ଉଗ୍ର–ଜାତୀୟବାଦୀ ମତବାଦ ବଙ୍ଗଳାର ବିପ୍ଳବୀ ଯୁବଗୋଷ୍ଠୀଙ୍କୁ ବିଶେଷ ଭାବରେ ଆକୃଷ୍ଟ କରିଥିଲା । ସେ କାଳରେ ଅରବିନ୍ଦ ଘୋଷ, ଚିତ୍ତରଞ୍ଜନ ଦାସ, ଶ୍ୟାମସୁନ୍ଦର ଚକ୍ରବର୍ତ୍ତୀ ପ୍ରଭୃତି ବିପ୍ଳବୀ ଜାତୀୟବାଦୀମାନଙ୍କ କ୍ରିୟାକଳାପ ଆଜାଦଙ୍କ ଭବିଷ୍ୟତ ଦୃଷ୍ଟିଭଙ୍ଗୀକୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ୧୯୦୫ର ବଙ୍ଗ ବିଭାଜନ ବିରୋଧୀ ଆନ୍ଦୋଳନକୁ ସମର୍ଥନ ଜଣାଇ ସେ ନିଜର ପତ୍ରିକାରେ ବୈପ୍ଳବିକ ଲେଖାମାନ ପ୍ରକାଶ କରୁଥିଲେ । ସେସମୟରେ ଭାରତୀୟ ମୁସଲିମ୍ ଲିଗ୍ ଦ୍ୱାରା ପ୍ରଚାରିତ ସାମ୍ପ୍ରଦାୟିକ ବିଭେଦକୁ ସେ କଠୋର ଭାବରେ ସମାଲୋଚନା କରିବା ସହ ଇଂରେଜମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ସାମ୍ପ୍ରଦାୟିକ ଭିତ୍ତିରେ ନିର୍ବାଚନ ପଦ୍ଧତିକୁ ସମ୍ପୂର୍ଣ୍ଣ ରୂପେ ପ୍ରତ୍ୟାଖ୍ୟାନ କରିଥିଲେ । ଏହା ଭାରତୀୟ ହିନ୍ଦୁ, ମୁସଲମାନମାନଙ୍କ ମଧ୍ୟରେ ଭେଦଭାବର ବୀଜ ବପନ କରିବ ବୋଲି ସେ କହିଥିଲେ ।

ପ୍ରଥମ ବିଶ୍ୱଯୁଦ୍ଧ କାଳରେ ବ୍ରିଟିଶ ବାହିନୀ ଦ୍ୱାରା ତୁର୍କୀର ସୁଲତାନ୍ ତଥା ମୁସ୍‌ଲିମ୍ ସମ୍ପ୍ରଦାୟର ଆଧ୍ୟାତ୍ମିକ ଗୁରୁ 'ଖଲିପା'ଙ୍କୁ ନିର୍ଯାତନା ବିରୁଦ୍ଧରେ ଭାରତର ଖିଲାଫତ୍ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଏହି ଖିଲାଫତ୍ ଆନ୍ଦୋଳନରେ ତିନି ଆଗଧାଡିର ମୁସଲମାନ ନେତା ଥିଲେ ମୁକ୍ତାର ଅହମଦ ଆନ୍‌ସାରୀ, ହାକିମ୍ ଆଜମଲ ଖାଁ ଓ ମୌଲାନା ଆଜାଦ । ଗାନ୍ଧୀଜୀଙ୍କ ନେତୃତ୍ୱରେ ଯେତେବେଳେ ଜାତୀୟ କଂଗ୍ରେସ ଏହି ଆନ୍ଦୋଳନକୁ ସମର୍ଥନ ଜଣାଇଲେ, ସେତେବେଳେ ଉଭୟ ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟଙ୍କ ମଧ୍ୟରେ ଭାରତୀୟ ଐକାତ୍ମକ ଜାତୀୟତାର ଅପୂର୍ବ ସମନ୍ୱୟ ଘଟିଥିଲା । ୧୯୧୯ର ରାଉଲାଟ୍ ଆଇନ ଓ ପ୍ରେସ୍ ଆଇନ୍ ବିରୁଦ୍ଧରେ ଉଭୟ ଗାନ୍ଧୀ ଓ ମୌଲାନା ଆଜାଦଙ୍କ ନେତୃତ୍ୱରେ ଦୁଇ ସମ୍ପ୍ରଦାୟ ଐକ୍ୟବଦ୍ଧ ଭାବରେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନକୁ ତୀବ୍ର ଆକାରରେ ଗଢି ତୋଳିଥିଲେ । ୧୩ ଏପ୍ରିଲ ୧୯୧୯ରେ ପଞ୍ଜାବର ଜାଲିଆନାୱାଲାବାଗରେ ଘଟିଥିବା ନରସଂହାର ପରିପ୍ରେକ୍ଷୀରେ ଆଜାଦଙ୍କ ନେତୃତ୍ୱରେ ସମଗ୍ର ମୁସଲମାନ ସମ୍ପ୍ରଦାୟଙ୍କୁ ବ୍ରିଟିଶ ବିରୋଧୀ ଜାତୀୟବାଦୀ ଆନ୍ଦୋଳନ ସଙ୍ଗଠିତ କରାଇଥିଲେ । କ୍ରମେ ଆଜାଦ ଜବାହରଲାଲ ଓ ସୁଭାଷ ବୋଷଙ୍କ ପ୍ରବର୍ତ୍ତିତ ସମାଜବାଦ ଓ ପୂର୍ଣ୍ଣ ସ୍ୱରାଜ ଲକ୍ଷ୍ୟକୁ ସ୍ୱାଗତ ଜଣାଇଥିଲେ ।

ମୌଲାନା ଆଜାଦଙ୍କ କ୍ରାନ୍ତିକାରୀ ଚିନ୍ତନ, ପ୍ରଗତିବାଦୀ ଦର୍ଶନ ଓ ସରଳ ନିରାଡମ୍ବର ଜୀବନଶୈଳୀ ତାଙ୍କୁ ଏକ ସର୍ବଗ୍ରହଣୀୟ ନେତାରୂପେ ଭାରତୀୟ ଜାତୀୟ କଂଗ୍ରେସରେ ଆଦୃତ କରିଥିଲା । ୧୯୨୩ ମସିହାରେ କେବଳ ୩୫ ବର୍ଷ ବୟସରେ ସେ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ପଦ ଅଳଙ୍କୃତ କରିବାର ସୁଯୋଗ ପାଇଥିଲେ । ଏକାଧିକବାର ସେ ଜାତୀୟ କଂଗ୍ରେସର ସଭାପତି ରୂପେ ଏହି ସଙ୍ଗଠନକୁ ଦିଗ୍‌ଦର୍ଶନ ଦେବା ସହିତ ମୁସଲମାନ ସମ୍ପ୍ରଦାୟକୁ ଜାତୀୟ ସ୍ରୋତରେ ସାମିଲ କରି ରାଷ୍ଟ୍ରବାଦ ଓ ଦେଶପ୍ରେମର ବାର୍ତ୍ତାରେ ଉଦ୍‌ବୋଧିତ କରିଥିଲେ ।

୧୯୪୦ରେ ମହମ୍ମଦ ଅଲ୍ଲି ଜିନ୍ନାଙ୍କ ନେତୃତ୍ୱରେ ମୁସ୍‌ଲିମ୍ ଲିଗ୍ ଲାହୋର ସମ୍ମିଳନୀରେ ଏକ ପ୍ରସ୍ତାବ ଆଗତ କରି ଭାରତଠାରୁ ପୃଥକ୍ ଭାବରେ ମୁସଲମାନ ସମ୍ପ୍ରଦାୟଙ୍କ ପାଇଁ ଏକ ସ୍ୱତନ୍ତ୍ର ରାଷ୍ଟ୍ର 'ପାକିସ୍ତାନ'ଗଠନର ଦାବି କରିଥିଲେ । ଜିନ୍ନାଙ୍କର ଏହି ଦୁଇ–ରାଷ୍ଟ୍ରୀୟ ପରିକଳ୍ପନାକୁ ଆଜାଦ ତାଙ୍କର ଉର୍ଦ୍ଦୁ ପତ୍ରିକା ଆଲ୍–ହିଲାଲରେ ତୀବ୍ର ବିରୋଧ ଓ ପ୍ରତିବାଦ କରିଥିଲେ । ୧୯୪୦ରେ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ରୂପେ ସମଗ୍ର ଭାରତର ମୁସଲମାନ ସମ୍ପ୍ରଦାୟକୁ ଏହା ବିରୁଦ୍ଧରେ ଏକଜୁଟ୍ ହେବା ପାଇଁ ଆହ୍ୱାନ ଦେଇଥିଲେ । ତାଙ୍କର ପ୍ରଗତିବାଦୀ ବୈପ୍ଳବିକ ମତ ପାଇଁ ଅନେକବାର ତାଙ୍କୁ କାରାବରଣ କରିବାକୁ ପଡିଥିଲା ।

୧୯୪୨ର ଗାନ୍ଧୀଜୀଙ୍କ ଆହ୍ୱାନରେ ବମ୍ବେସ୍ଥିତ କ୍ରାନ୍ତି ମଇଦାନଠାରେ ଅଗଷ୍ଟ ୮ ତାରିଖ ମଧ୍ୟରାତ୍ରରେ 'ଭାରତଛାଡ ଆନ୍ଦୋଳନ'ର ଯେଉଁ ପ୍ରସ୍ତାବଟି ସର୍ବସମ୍ମତି କ୍ରମେ ଗୃହୀତ ହୋଇଥିଲା, ତାହାର ପୁରୋଧା ଥିଲେ କଂଗ୍ରେସର ତତ୍କାଳୀନ ସଭାପତି ମୌଲାନା ଆଜାଦ୍ ।

ହିନ୍ଦୁ–ମୁସଲମାନ ଐକ୍ୟ ଉପରେ ଦୃଢ ଆସ୍ଥା ବ୍ୟକ୍ତ କରି ସେ ଲେଖିଥିଲେ 'ଜଣେ ହିନ୍ଦୁ ଯେଉଳି ଗର୍ବର ସହ ନିଜକୁ ଭାରତୀୟ ବୋଲି ସ୍ୱୀକାର କରୁଛି ଓ ନିଷ୍ଠାର ସହ ତାହାର ଧର୍ମ ମତକୁ ପାଳନ କରୁଛି, ସେହିଭଳି ଜଣେ ମୁସଲମାନ ମଧ୍ୟ ଗର୍ବର ସହ ନିଜକୁ ଭାରତୀୟ ରୂପେ ପରିଚିତ କରିବା ସହିତ, ନିଷ୍ଠାର ସହ ଇସ୍‌ଲାମ୍ ଧର୍ମକୁ ଅବଲମ୍ବନ କରିପାରିବ ।' ତାଙ୍କ ମତରେ ଭ୍ରାତୃତ୍ୱର ଅତୁଟ ବନ୍ଧନ ଓ ଜାତୀୟତାର ମହାସ୍ରୋତରେ ଉଭୟ ହିନ୍ଦୁ ଓ ମୁସଲମାନ ସମଯାତ୍ରୀ ।

୧୯୪୭ ଜୁନ୍ ୩ ତାରିଖରେ ଇଂରେଜ ସରକାର ଭାରତକୁ ସାମ୍ପ୍ରଦାୟିକତା ଭିତ୍ତିରେ ବିଭାଜନ କରିବା ପାଇଁ ନିଷ୍ପତ୍ତି କଲେ । ଯେଉଁ ଭାରତୀୟ ନେତୃବୃନ୍ଦ ବିଭାଜନର ତୀବ୍ର ବିରୋଧୀ ଥିଲେ, ସେମାନଙ୍କ ମଧ୍ୟରେ ମୌଲାନା ଆଜାଦ୍ ଥିଲେ ଅନ୍ୟତମ । ବିଭାଜନ ପୃଷ୍ଠଭୂମିରେ ଭାରତର ବିଭିନ୍ନ ଅଞ୍ଚଳରେ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଯେଉଁ ସାମ୍ପ୍ରଦାୟିକ ଦଙ୍ଗା ଉପୁଜିଲା, ତାହାର ପ୍ରଶମନ ପାଇଁ ଉଭୟ ଗାନ୍ଧୀ ଓ ମୌଲାନା ଆଜାଦ ଭାରତର ଦଙ୍ଗାଗ୍ରସ୍ତ ଅଞ୍ଚଳକୁ ଗସ୍ତ କରି ଉଭୟ ସମ୍ପ୍ରଦାୟ ମଧ୍ୟରେ ସଦ୍‌ଭାବନା ସୃଷ୍ଟି ପାଇଁ ଉଦ୍ୟମ ଜାରି ରଖିଥିଲେ । ଜିନ୍ନାଙ୍କ ଜିଦ୍‌ଖୋର ନୀତିଯୋଗୁଁ ପାକିସ୍ତାନ ସୃଷ୍ଟି ହେଲା ସତ, କିନ୍ତୁ ଯେଉଁ ଚାରିଗୋଟି ଆଦର୍ଶ ଯଥା ଧର୍ମନିରପେକ୍ଷତା, ସର୍ବଧର୍ମସହିଷ୍ଣୁତା, ସମାଜବାଦ ଓ ଗଣତନ୍ତ୍ରକୁ ଆଧାର କରି ଭାରତର ଜାତୀୟ କଂଗ୍ରେସର ସ୍ୱାଧୀନତା ପାଇଁ ସଂଗ୍ରାମ କରୁଥିଲା, ପାକିସ୍ତାନରେ ସେଗୁଡିକ ତିଷ୍ଠି ପାରିଲା ନାହିଁ ।

୧୯୫୭ରେ ମୌଲାନା ଆଜାଦଙ୍କ ଲିଖିତ 'ଇଣ୍ଡିଆ ଓ୍ୱିନ୍ସ ଫ୍ରିଡମ୍' ନାମକ ଆତ୍ମଜୀବନୀରେ ପାକିସ୍ତାନ ସୃଷ୍ଟି ଫଳରେ ତାଙ୍କର ସ୍ୱପ୍ନର ଭାରତ ପରିକଳ୍ପନା କିଭଳି ଫଳପ୍ରସୂ ହୋଇପାରିନଥିଲା ତାହା ମର୍ମନ୍ତୁଦ ଭାଷାରେ ବର୍ଣ୍ଣନା କରିଅଛନ୍ତି ।

ସ୍ୱାଧୀନ ଭାରତର ପ୍ରଥମ ଶିକ୍ଷାମନ୍ତ୍ରୀ ଭାବରେ ସେ ଭାରତରେ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷାର ଜଣେ ପରମ ପୃଷ୍ଠପୋଷକ ଥିଲେ । ତାଙ୍କ ମତରେ ମୌଳିକ ପ୍ରାଥମିକ ଶିକ୍ଷା ବ୍ୟତିରେକେ କୌଣସି ନାଗରିକ ତାହାର ଦାୟିତ୍ୱ ସୂଚାରୁରୂପେ ତୁଲାଇବା ପାଇଁ ସକ୍ଷମ ହେବେ ନାହିଁ । ଉଚ୍ଚଶିକ୍ଷାର ଗୁଣାତ୍ମକ ଉନ୍ନତି ପାଇଁ ୧୯୫୧ରେ ପ୍ରଥମ ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍‌ନୋଲଜି ଓ ୧୯୫୩ରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଗଲା । ଶତ ପ୍ରତିଶତ ସାକ୍ଷରତା ପାଇଁ ଭାରତର ଉଦ୍ୟମ ସଫଳ ହେଲେ ରାଷ୍ଟ୍ରୀୟ ଶୈକ୍ଷିକ ଦିବସର ସାର୍ଥକତା ସହିତ ମୌଲାନା ଆଜାଦଙ୍କ ସ୍ୱପ୍ନ ସାକାର ହୋଇପାରିବ । ୧୯୫୮ ଫେବୃଆରୀ ୨୨ ତାରିଖରେ ତାଙ୍କର ମହାପ୍ରୟାଣ ଫଳରେ ହିନ୍ଦୁ-ମୁସଲିମ୍ ଐକ୍ୟର ଏକ ଉଜ୍ଜ୍ୱଳ ତାରକାର ନିର୍ବାପନ ଘଟିଲା ।

୨୦୦୮ରୁ ଭାରତ ସରକାର ଏହି ମହାନ୍ ଦେଶପ୍ରେମୀ ମହାପୁରୁଷଙ୍କ ଜନ୍ମଦିବସ ଅର୍ଥାତ୍ ୧୧ ନଭେମ୍ବରକୁ 'ରାଷ୍ଟ୍ରୀୟ ଶିକ୍ଷା ଦିବସ' ଭାବେ ପାଳନ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ଏହି ଦିବସକୁ ଭାରତର ପ୍ରତି ଶିକ୍ଷାନୁଷ୍ଠାନରେ ଅବଶ୍ୟ ପାଳନ କରାଯିବା ଉଚିତ୍ ।

ପ୍ରାକ୍ତନ ଅଧ୍ୟକ୍ଷ, ରେଭେନ୍ସା ମହାବିଦ୍ୟାଳୟ
୫୬୯, ନେତାଜୀ ନଗର
ସେଲ୍‌ଟର ଛକ, କଟକ-୮

# ମାତା ଦୁର୍ଗେ, ଦୁର୍ଗତିନାଶିନୀ

**ସୁବୋଧ କାନୁନ୍‌ଗୋ**

ସିଂହବାହିନୀ, ବରଦେ, ସାରଦେ,
ମାତା ଦୁର୍ଗେ, ସାହା ହୁଅ ତୁମେ,
ଜୀବନର ଦୁଃଖ-କଷ୍ଟ, ଅପହଞ୍ଚ,
ଲାଞ୍ଛନା, ଯାତନା, ସବୁ ହରିନିଅ ।

ରୌଦ୍ର ଦାମିନୀ, କାମିନୀ, ରୁଦ୍ର କୃପାଳିନୀ
ଖର୍ପର ଶୋଭିନୀ, ମା
ହରିନିଅ ଭକ୍ତର ଦାରିଦ୍ର୍ୟ, ରୋଗ, ଶୋକ, ଦୁଃଖ-କଷ୍ଟ

ଦାନବ ଦଳିନୀ, ପାତିବ୍ରତ୍ୟ, ପବିତ୍ର ପତିତ ପାବନୀ,
ତୁମେ ହରି-ହର, ଦାନବ ସିଂହବାହିନୀ,
ଯାତନା ମୋହର- ଦୁଃଖ, କ୍ଲେଶ, ଝଡ, ଝଞ୍ଜା,
ସବୁ ଜଗତରୁ ହରିନିଅ ।

ଏଫ୍-୭/୨, ବିଧାୟକ କଲୋନୀ
ୟୁନିଟ୍-୪, ଭୁବନେଶ୍ୱର

# ନବବାବୁ କ'ଣ ନଥିଲେ

**ଶୈଳଜ ରବି**

ବ୍ରହ୍ମ କ'ଣ ବୁଝାଇବାକୁ ଯାଇ ବୈଦିକ ଋଷି ବ୍ରହ୍ମ କ'ଣ ନୁହେଁ ବୁଝାଉଥିଲେ । 'ନେତି ନେତି'ର ସେଇ ତାର୍କିକ ପଦ୍ଧତି ଅବଲମ୍ବନ କରି ନବକୃଷ୍ଣ ଚୌଧୁରୀଙ୍କୁ ହୁଏତ ବୁଝିବା ସହଜ ହେବ ।

ନବକୃଷ୍ଣ ଚୌଧୁରୀ 'ରାଜନୀତି' କରୁଥିବା ନେତା ନଥିଲେ । ରାଜନୈତିକ ନେତା କହିଲେ ଆଜିର ମଣିଷ ବୁଝେ କ୍ଷମତା ସର୍ବସ୍ୱ ଭୋଟ୍‌ଜୀବୀ ପଲିଟିସିଆନ୍ । କ୍ଷମତାକୁ ଯିବା ପାଇଁ ପ୍ରସ୍ତୁତ ହେବା, କ୍ଷମତାକୁ ଯାଇ ସାରିଲେ ଗାଦିକୁ ମଜଭୁତ କରିବା ଏବଂ ଗାଦି ମଜଭୁତ ହୋଇ ଗଲାପରେ ପରବର୍ତ୍ତୀ ନିର୍ବାଚନ ପାଇଁ ପ୍ରସ୍ତୁତ ହେବା ଏଇଥିରେ ବିତିଯାଏ କ୍ଷମତା ସର୍ବସ୍ୱ ରାଜନୀତିବାଲାଙ୍କର ସାରାଜୀବନ । ସବୁକାମର ଓଜନ ସେମାନେ ତଉଲି ଥାଆନ୍ତି ଗୋଟିଏ ନିକିତିରେ: ଏ କାର୍ଯ୍ୟଟା କରାଗଲେ ପରବର୍ତ୍ତୀ ନିର୍ବାଚନରେ କେତେ ଭୋଟ୍ ବଢିଯିବ/କମିଯିବ ।



ଏହି ଦୃଷ୍ଟିରୁ ଦେଖିଲେ ନବକୃଷ୍ଣ ଚୌଧୁରୀ ଜଣେ ସଫଳ ରାଜନୈତିକ ନେତା ନଥିଲେ ବୋଲି ଏକଦା ତାଙ୍କ ବିରୋଧରେ ଷଡଯନ୍ତ୍ର କରିଥିବାର ସ୍ୱୀକାର କରିଥିବା ଶ୍ରୀଯୁକ୍ତ ନୀଳମଣି ରାଉତରାୟ ନିଜ ଆତ୍ମଜୀବନୀରେ ମନ୍ତବ୍ୟ ଦେଇଛନ୍ତି । ତାଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ହଟାଇବା ପାଇଁ ତାଙ୍କର କିଛି ସହକର୍ମୀ ଯେତେବେଳେ ତାଙ୍କ ବିରୋଧରେ ଷଡଯନ୍ତ୍ର କରୁଛନ୍ତି ବୋଲି ନବବାବୁ ଜାଣିପାରିଲେ, ସେ ହସିଲେ । ଶୁଣିଛି, ସେ ନିଜର ଇସ୍ତଫାପତ୍ର ପକେଟରେ ଧରି ବୁଲୁଥିଲେ । ଭୋଟ୍‌କୁ ଆଖି ଆଗରେ ରଖି ସେ କିଛି କାର୍ଯ୍ୟ କରୁନଥିଲେ । ସେତେବେଳେ ସାମ୍ୟବାଦୀ ଓ ସମାଜବାଦୀଙ୍କ ସମେତ ତାଙ୍କ ନିଜ ଦଳର ଏକ ବଡଗୋଷ୍ଠୀ 'ଲଙ୍ଗଳ ଯା'ର, ଜମି ତା'ର' ସ୍ଲୋଗାନ ଦେଉଥିଲେ । ନବବାବୁ ସ୍ଲୋଗାନ୍ ଦେଉନଥିଲେ, ସେ ଏ ତତ୍ତ୍ୱରେ ବିଶ୍ୱାସ କରୁଥିଲେ । ସ୍ଲୋଗାନକୁ ସାକାର କରିବା ପାଇଁ ସେ 'ଟେନାଣ୍ଟସ୍ ରିଲିଫ୍ ଆକ୍ଟ' ନାମରେ ଏକ ଆଇନ୍ ପାଶ୍ କରାଇଲେ । ଆଇନ୍‌ଟିକୁ ତାଙ୍କ ଦଳର ଅଧିକାଂଶ ସଭ୍ୟ ବିରୋଧ କରିବେ, ସେ ତାହା ଜାଣିଥିଲେ । କାରଣ ସେମାନଙ୍କର ସ୍ଲୋଗାନ ଲୋକ ଦେଖାଣିଆ ବୋଲି ସେ ଜାଣିଥିଲେ । କିନ୍ତୁ ସାମ୍ୟବାଦୀ ଓ ସମାଜବାଦୀ ବୋଲାଉଥିବା ଅନେକ ଭୂମିବାନ ନେତା ମଧ୍ୟ ତାଙ୍କର ଏ ପଦକ୍ଷେପକୁ ପସନ୍ଦ କରୁନଥିବା ଦେଖି ସେ ଆଶ୍ଚର୍ଯ୍ୟ ହେଲେ । ମାତ୍ର ଦୃଢତାର ସହିତ ସେ ନିଜର ସିଦ୍ଧାନ୍ତକୁ କାର୍ଯ୍ୟକାରୀ କରାଇଲେ । ଏହି ଆଇନ୍ ପାଶ୍ ହେବା ଦିନ ଅର୍ଥାତ୍ ୧୯୫୬ ଏପ୍ରିଲ୍ ୩ ତାରିଖ ଦିନ ସେ ବିଧାନସଭାରେ ଦେଇଥିବା ଭାଷଣ ଏକ ଐତିହାସିକ ଦଲିଲ ।

ସେ ତାଙ୍କ ଭାଷଣରେ କହିଥିଲେ ଯେତେବେଳେ Tenants Relief Bill ଏ ଗୃହରେ ପାଶ୍ କରାଗଲା, ସେତେବେଳେ ବହୁତ ବାଦବିବାଦ ପରେ ବହୁତ ସଂଶୋଧନ ଆସି ଏ ଗୃହରେ ଗ୍ରହଣ କରାଯାଇଥିଲା । କିନ୍ତୁ ତାକୁ କାର୍ଯ୍ୟକାରୀ କରିବାକୁ ଯାଇ ଯେଉଁ ଅବସ୍ଥା ହେଲା, ସେଥିରୁ ପରିଷ୍କାର ଜଣାଯାଇଛି ଯେ ସେ ଆଇନ୍ ଠିକ୍ ଭାବରେ କାର୍ଯ୍ୟକାରୀ ହୋଇପାରିନାହିଁ । ଫଳରେ ଆଇନ୍ ଅନୁସାରେ ଭାଗଚାଷୀମାନେ ଯେଉଁ ଅଧିକାର ପାଇବା କଥା ସେ ଅଧିକାରରୁ ଅନେକ ସମୟରେ

ସେମାନେ ବଞ୍ଚିତ ହୋଇଛନ୍ତି । ଭାଗଚାଷୀମାନଙ୍କର ଦୁର୍ବଳତା ଯୋଗୁଁ ହେଉ ବା ସେମାନଙ୍କର ଦାରିଦ୍ର୍ୟ ଯୋଗୁ ହେଉ କିମ୍ବା ସେମାନଙ୍କ ଭିତରେ ସଂଗଠନ ଅଭାବ ହେତୁ ହେଉ, ସେମାନେ ଏ ଆଇନ୍ ଦ୍ୱାରା ବିଶେଷ କ୍ଷତିଗ୍ରସ୍ତ ହୋଇଛନ୍ତି । ମାନ୍ୟବର ସଭ୍ୟମାନେ ଏ ବିଷୟରେ ଯେତିକି କ୍ଷୁବ୍ଧ ମୁଁ ମଧ୍ୟ ତା'ଠାରୁ କମ୍ କ୍ଷୁବ୍ଧ ନୁହେଁ । କିନ୍ତୁ ଅସହାୟ ଭାବରେ ନିଜକୁ ରହିବାକୁ ହେଉଛି । କାହିଁକିନା ଆମ ଦେଶରେ ଯେଉଁ ଆଇନ୍‌କାନୁନ୍ ପଦ୍ଧତି ଚାଲିଛି, ସେଥିରେ ସବୁବେଳେ ଧନୀଲୋକ ନ୍ୟାୟର ସୁବିଧା ପାଉଛି । ଏହା ବହୁତ ଦିନୁ ପ୍ରମାଣିତ ହୋଇଛି । ବାସ୍ତବିକ ଆମ ଭାରତବର୍ଷରେ ଯେଉଁ ନ୍ୟାୟ କରାଯାଉଛି ତାହା ପ୍ରକୃତ ନ୍ୟାୟ ନୁହେଁ । ସେ ଗୋଟିଏ ଫର୍ମାଲ୍ ନ୍ୟାୟ । ଏଥିରେ କେବଳ ଆଇନ୍‌ର ଆଡ୍‌ମିନିଷ୍ଟ୍ରେସନ୍ କରାଯାଉଛି, ନ୍ୟାୟର ଆଡ୍‌ମିନିଷ୍ଟ୍ରେସନ୍ କରାଯାଉନାହିଁ । ଆମ ଅଫିସରମାନଙ୍କର ମାଜିଷ୍ଟେରିଆଲ୍ ମାଇଣ୍ଡ୍ ଥିବା ଯୋଗୁ ସେମାନେ ସାକ୍ଷୀ ପ୍ରମାଣ ଧରି କଚେରୀ କରୁଛନ୍ତି, ଯେଉଁଥିରେ କି ଗରିବ ଲୋକେ ନ୍ୟାୟ ପାଉନାହାନ୍ତି । ମୁଁ ଭାବୁଛି ଆମେ ହତାଶ ହେଲେ ଚଳିବ ନାହିଁ । ଆମ କନ୍‌ଷ୍ଟିଚ୍ୟୁସନ୍‌ରେ ଯାହା ଥାଉ ନା କାହିଁକି, ଆମ ଆଇନ୍‌ରେ ଯାହା ଥାଉନା କାହିଁକି, ଆମେ ଯେତେବେଳେ ବୁଝୁଛୁ ଯେ ଅନ୍ୟାୟ ହେଉଛି ସେତେବେଳେ ଆମକୁ ଏହାର ପ୍ରତିକାର କରିବାକୁ ହେବ । ଯେକୌଣସି ଉପାୟରେ ପ୍ରତିକାର କରିବାକୁ ହେବ । ଏହା ଜଣେ ଶାସନ ମୁଖ୍ୟଙ୍କର ବିଧାନସଭାରେ ବକ୍ତବ୍ୟ ! ଏହା ନେତାଙ୍କର ଲୋକ ଦେଖାଣିଆ କୁମ୍ଭୀର କାନ୍ଦଣା ବା ପ୍ଲେଇଙ୍ଗ୍ ଟୁ ଦି ଗ୍ୟାଲେରୀ ନଥିଲା । ସମତା ଓ ନ୍ୟାୟ ପାଇଁ ତାଙ୍କର ଅଦମ୍ୟ ଆକୁତି ନିଜର ଶାସକ ଦଳ ବିରୁଦ୍ଧରେ ବିରୋଧୀ ଦଳକୁ ମତାଇବାଠାରୁ କ୍ଷମତା ଛାଡିବାଠାରୁ ପରବର୍ତ୍ତୀ କାଳରେ ତାଙ୍କୁ 'କଂଗ୍ରେସ୍ ହଟାଓ' ଆନ୍ଦୋଳନ କରିବା, ନକ୍ସଲପନ୍ଥୀ ଏପରିକି ଆର୍.ଏସ୍.ଏସ୍.କୁ ମଧ୍ୟ ସମର୍ଥନ ଜଣାଇବା ଓ ଶେଷରେ ଜରୁରୀ ପରିସ୍ଥିତି ବେଳେ କାରାବରଣ କରିବାକୁ ପ୍ରଚୋଦିତ କରିଛି ।

୧୯୫୬ ସେପ୍ଟେମ୍ବରରେ ମୁଖ୍ୟମନ୍ତ୍ରୀ ପଦରୁ ସ୍ୱେଚ୍ଛାରେ ଇସ୍ତଫା ଦେଇ ସେ ଅନୁଗୁଳ ବାଜିରାଉତ ଛାତ୍ରାବାସରେ ଥିବା ନିଜ ଆଶ୍ରମକୁ ଚାଲିଆସିଲେ ଏବଂ ପୂର୍ଣ୍ଣ ସମୟ ଦେଇ ବିନୋବାଜୀଙ୍କର ଭୂଦାନ ଆନ୍ଦୋଳନରେ କାମ କଲେ ।

ବିରାଟ ଜମିଦାର ପରିବାରରେ ସେ ଜନ୍ମଗ୍ରହଣ କରିଥିଲେ । ଦୁଇବର୍ଷ ଓଡ଼ିଶାର ରାଜସ୍ୱ ମନ୍ତ୍ରୀ ଏବଂ ଛଅବର୍ଷ ମୁଖ୍ୟମନ୍ତ୍ରୀ ଥିଲେ । ଅନୁଗୁଳ ଫେରିବା ବେଳେ ସାଥିରେ ଥିଲା କିଛି ବାସନ ଏବଂ ଖଣ୍ଡେ କାର୍ । କାର୍‌ଟି ବିକି ନିଜର ସାନଝିଅକୁ ବାହା କଲେ । ତେବେ ଏସବୁ ପାଇଁ ତାଙ୍କର କେବେ ଅବଶୋଷ ନଥିଲା । କ୍ଷମତା ଅଥବା ଅର୍ଥର ଆକାଂକ୍ଷା କେବେହେଲେ ନବକୃଷ୍ଣ ଚୌଧୁରୀ ଅଥବା ଗୋପବନ୍ଧୁ ଚୌଧୁରୀଙ୍କର ପରିବାରକୁ ଛୁଇଁ ପାରିନଥିଲା । ନବବାବୁ ତତ୍କାଳୀନ ଲାଭ ଏବଂ ନିଜ ସ୍ୱାର୍ଥକୁ ଆଖି ଆଗରେ ରଖି କାର୍ଯ୍ୟ କରୁଥିବା ରାଜନୈତିକ ନେତା ନଥିଲେ, ସେ ଥିଲେ ଜଣେ କ୍ରାନ୍ତଦର୍ଶୀ ରାଜନୀତିଜ୍ଞ ।

ଅନେକ କହନ୍ତି ନବ ଚୌଧୁରୀ ରାଜନୀତି ଛାଡି ସମାଜସେବା କଲେ । 'ସମାଜସେବୀ' ଅର୍ଥ ଯଦି ନିଆଁ ଲିଭାଇବା ଓ ଚୁଡା, ଚାଉଳ ବାଣ୍ଟିବା ହୋଇଥାଏ ତେବେ ନବବାବୁ ସମାଜସେବୀ ନଥିଲେ । ସେ ପ୍ରକାର ସେବାର କିଛି ତତ୍କାଳୀକ ବା ସାମୟିକ ପ୍ରୟୋଜନୀୟତା ଥାଇପାରେ ମାତ୍ର ତାହାକୁ ହିଁ ଧ୍ୟେୟ କରିଥିବା ସଂସ୍ଥାମାନଙ୍କୁ ସେ ସମାଲୋଚନା କରୁଥିଲେ । ବିନୋବାଜୀଙ୍କ ସର୍ବୋଦୟ ଆନ୍ଦୋଳନ ପରବର୍ତ୍ତୀ କାଳରେ ସେହିଭଳି କାର୍ଯ୍ୟରେ ସୀମାବଦ୍ଧ ହୋଇଗଲା ବୋଲି ସେ ଅଭିଯୋଗ କରିଥିଲେ । ନିଆଁ ଲିଭାଇବା ନୁହେଁ, ନିଆଁ କିପରି ନ ଲାଗିବ, ତା'ର ଉପାୟ ଚିନ୍ତା କରିବା ଏବଂ ସମାଜରେ ନିଆଁ ଲଗାଉଥିବା ବ୍ୟକ୍ତି ସଂଗଠନ ଅଥବା ଆନ୍ଦୋଳନକୁ ପ୍ରତିରୋଧ କରିବାରେ ତାଙ୍କର ଅଧିକ ଆଗ୍ରହ ଥିଲା । ସେ ସମସ୍ୟାର ଚେର ବା ରାଡିକ୍ସକୁ ଯାଇ ସମାଧାନ ଖୋଜୁଥିବା ଜଣେ ରାଡିକଲ୍ ଚିନ୍ତାନାୟକ ଥିଲେ ।

ସେ ଗାନ୍ଧୀବାଦୀ ନଥିଲେ । ସବୁ 'ବାଦ' ରଢିବାଦରେ ପର୍ଯ୍ୟବସିତ ହୁଏ ଏବଂ କ୍ରମଶଃ କର୍ମକାଣ୍ଡ ସର୍ବସ୍ୱ ହୋଇଯାଏ ବୋଲି ତାଙ୍କର ବିଶ୍ୱାସ ଥିଲା । ଏଣୁ ଗାନ୍ଧୀବାଦ ନୁହେଁ, 'ଗାନ୍ଧୀବୋଧ'କୁ ସେ ଅନୁସରଣ କରୁଥିଲେ ।

ଗାନ୍ଧୀ ପରି ସତ୍ୟର ଆନ୍ତରିକ ଅନ୍ୱେଷଣ କରିବାରେ ଓ ଯାହା ସତ୍ୟ ବୋଲି ଉପଲବ୍ଧି କରୁଥିଲେ ତାକୁ ଜୀବନରେ ପ୍ରୟୋଗ କରିବାରେ ବ୍ରତୀ ଥିଲେ । ଏଇଥିପାଇଁ ଯେତେବେଳେ ସେ ଅନୁଭବ କରିଛନ୍ତି ଯେ ଗାନ୍ଧୀ କଂଗ୍ରେସର ଶପଥ ଭୁଲି ନେହେରୁ– କଂଗ୍ରେସରେ ଯୋଗଦେବା ତାଙ୍କର ଏକ ଭୁଲ୍ ନିଷ୍ପତ୍ତି ଥିଲା ସେ ନିଃସଂକୋଚରେ ସେଥିପାଇଁ ନିଜକୁ ଦୋଷୀ ଏବଂ ରାଜସାକ୍ଷୀ ବୋଲି ଘୋଷଣା କରିଛନ୍ତି, ଅନୁତାପ କରିଛନ୍ତି ଏବଂ ପ୍ରାୟଶ୍ଚିତ କରିଛନ୍ତି । ଥରେ କ୍ଷମତା ଛାଡିବା ପରେ ପରବର୍ତ୍ତୀ ଜୀବନରେ ବହୁ ସୁଯୋଗ ଆସିଥିଲେ ମଧ୍ୟ ଆଉ କ୍ଷମତାକୁ ଫେରି ନାହାନ୍ତି । ଗାନ୍ଧୀବୋଧକୁ ନେଇ ଶେଷ ଜୀବନ ବଞ୍ଚିଛନ୍ତି ।

◆◆◆

ସେ କୌଣସି ସଠିକ୍ ଦର୍ଶନରେ ବିଶ୍ୱାସ କରୁନଥିଲେ । ତାଙ୍କର ଚିନ୍ତା ମଧ୍ୟ 'ସ୍ପଷ୍ଟ' ନଥିଲା । ସେ 'ଆଶାବାଦୀ' ମଧ୍ୟ ନଥିଲେ । ଏଇଥିପାଇଁ ତାଙ୍କର ସମାଲୋଚକ, ଏପରିକି କତିପୟ ସ୍ତାବକ ମଧ୍ୟ ନବବାବୁ ଏବଂ ବିଭ୍ରାନ୍ତ ଏବଂ ହତାଶ– ବୋଲି ଅଭିଯୋଗ କରୁଥିଲେ । ମାତ୍ର ତାଙ୍କର ସଂସ୍ପର୍ଶରେ ଆସିଥିବା ତାଙ୍କର ଶତ୍ରୁ, ମିତ୍ର ଉଭୟ ସ୍ୱୀକାର କରନ୍ତି ଯେ ନବବାବୁ ବହୁପାଠୀ, ମହାଜ୍ଞାନୀ ଜଣେ ଚିନ୍ତାନାୟକ । ଜଣେ ଚିନ୍ତାନାୟକଙ୍କର ପୁଣି ଚିନ୍ତା ବିଭ୍ରାଟ କାହିଁକି ? ସମସାମୟିକ ରାଜନୀତି ତଥା ସମାଜ ବ୍ୟବସ୍ଥାକୁ ଅନୁଧ୍ୟାନ କରି ସେ ଅନୁଭବ କରିଥିଲେ ଯେ ସମକାଳର ସବୁ ଭାବାଦର୍ଶ ଏକ ଅମୁହାଁ ଅନ୍ଧ ଗଳିରେ ପହଞ୍ଚି ଯାଇଛି । ସମସାମୟିକ ସମସ୍ୟାମାନଙ୍କର ସନ୍ତୋଷଜନକ ସମାଧାନ ଯୋଗାଇବା ଦିଗରେ ସେମାନଙ୍କ ଭିତରୁ କୌଣସି ଗୋଟିଏ ଦର୍ଶନ ଏକକଭାବେ ସମର୍ଥ ନୁହନ୍ତି । ଏଣୁ ବହୁ ପରସ୍ପର ବିରୋଧୀ ତତ୍ତ୍ୱ ଏବଂ ଭାବାଦର୍ଶ ଭିତରୁ ସେ ସମନ୍ୱୟର ପନ୍ଥାମାନ ଖୋଜୁଥିଲେ । ନିଜ ସମ୍ପ୍ରଦାୟର ତତ୍ତ୍ୱ ଏବଂ ଭାବାଦର୍ଶକୁ ଏକମାତ୍ର 'ସଠିକ୍' ଆଦର୍ଶ ବୋଲି 'ସ୍ପଷ୍ଟ' ଚିନ୍ତା କରିପାରୁଥିବା ଏବଂ ତାଙ୍କରି ମାର୍ଗ ମୁକ୍ତିର ଏକମାତ୍ର 'ସଠିକ୍' ମାର୍ଗ ବୋଲି 'ସ୍ପଷ୍ଟ' ପଥ ନିର୍ଦ୍ଦେଶ କରିପାରୁଥିବା ବିଭିନ୍ନ ଧର୍ମ ତଥା ରାଜନୈତିକ ସମ୍ପ୍ରଦାୟର ବ୍ୟକ୍ତି ନବବାବୁଙ୍କୁ Confused ଏବଂ ତାଙ୍କର ଚିନ୍ତାଧାରାକୁ 'ଅସ୍ପଷ୍ଟ' ବା 'ବିଭ୍ରାନ୍ତିକାରୀ' ବୋଲି ଠଉରେଇବା ସ୍ୱାଭାବିକ । କିନ୍ତୁ ନବବାବୁ ବସ୍ତୁସ୍ଥିତିକୁ ଏପରି ଜଟିଳ ଓ ବିଭ୍ରାନ୍ତିକର ମନେ କରୁଥିଲେ ଯେ ସେଥିରେ ଯଦି କେହି Confused ନୁହେଁ ତେବେ ସେ ସ୍ପଷ୍ଟ ଚିନ୍ତା କରିପାରୁ ନାହିଁ ବୋଲି ଧରି ନେଉଥିଲେ ।

ସେ 'ଆଶାବାଦୀ' ନ ହୋଇପାରିବା ଉପରୋକ୍ତ କାରଣର ଏକ ଆନୁଷଙ୍ଗିକ କାରଣ ଥିଲା । ନବବାବୁଙ୍କ ଦର୍ଶନକୁ ଲକ୍ଷ୍ୟ କରି ଅନେକ ବିଦ୍ରୂପ କରୁଥିଲେ ଯେ ସେ ଭିକାରୀର ବାରମିଶା ଚାଉଳକୁ ନେଇ ମହାପ୍ରସାଦ ତିଆରି ଉଦ୍ୟମ କରୁଛନ୍ତି । ବାସ୍ତବରେ ତାଙ୍କ ଦର୍ଶନ ଥିଲା ନବଗୁଞ୍ଜର । ଗାନ୍ଧିଜୀଙ୍କ ସଂଗ୍ରାମ କରିବା ପଦ୍ଧତି, ମାଓ–ସେ–ତୁଙ୍ଗଙ୍କ ଦେଶ ପୁନର୍ଗଠନ କରିବା ପଦ୍ଧତି, ମାର୍କିନ୍ ବାକ୍ ସ୍ୱାଧୀନତା ଓ ଭିଏତ୍‌ନାମୀ ଦେଶାତ୍ମବୋଧ ତାଙ୍କୁ ଚମତ୍କୃତ କରୁଥିଲା । ସେସବୁର ଏକ ମଧୁର ସମନ୍ୱୟ ସମ୍ଭବ ବୋଲି ସେ ବିଶ୍ୱାସ କରୁଥିଲେ । କେତେକ ନ୍ୟୂନତମ କାର୍ଯ୍ୟକ୍ରମକୁ ଭିତ୍ତିକରି ଦେଶର ବିଭିନ୍ନ ପ୍ରଗତିଶୀଳ ଶକ୍ତିଙ୍କ ଭିତରେ ସେହିପରି ଏକ ସମଝୌତା ମଧ୍ୟ ସମ୍ଭବ ବୋଲି ସେ ବିଶ୍ୱାସ କରୁଥିଲେ । ମାତ୍ର ଯେଉଁ ଦେଶରେ ଏକା ଦଳ ବା ଏକା ସମ୍ପ୍ରଦାୟର ଦୁଇଜଣ ବ୍ୟକ୍ତି ଘଣ୍ଟାଏ ଏକାଠି ବାର୍ତ୍ତାଳାପ କଲେ ଗଡାଗଡି ହୋଇଯିବାର ଆଶଙ୍କା ଏବଂ ଏକ ନୂଆ ନୂଆ ଦଳ ବା ନୂଆ ସମ୍ପ୍ରଦାୟ ଜନ୍ମ ନେବାର ସମ୍ଭାବନା ଥାଏ, ସେଠି ସମନ୍ୱୟର ସ୍ୱପ୍ନ ଦେଖୁଥିବା ନବବାବୁ ହତାଶ ବା Frustrated ହେବା ଅତି ସ୍ୱାଭାବିକ୍ ।

ତଥାପି ତାଙ୍କ ହତାଶା ନଥିଲା । ଅକର୍ମାର ହତାଶା । ମୃତ୍ୟୁଯାଏ ସେ ଥିଲେ କର୍ମଯୋଗୀ । ଶେଷଯାଏ ସେ ବିଭିନ୍ନ ବିବଦମାନ ଗୋଷ୍ଠୀ, ସମ୍ପ୍ରଦାୟ, ଦଳ ଭିତରେ ସେତୁମାନ ଗଢିବାକୁ ଆପ୍ରାଣ ଚେଷ୍ଟା କରିଛନ୍ତି ଓ ଯେଉଁଠାରେ ହତାଶ ହୋଇଛନ୍ତି ସେଠି ବସି ନପଡି 'ଏକ୍‌ଲା ଚଲୋ'ର ଚରୈବେତି ଗୀତ ଗାଇଛନ୍ତି । ନିଃସଙ୍ଗ ଅବଧୂତ ଭଳି ଏକାଏକା ନିଜ ପଥରେ ଆଗେଇ ଚାଲିଛନ୍ତି ।

ହଁ, ନବବାବୁ ଥିଲେ ଜଣେ ନିଃସଙ୍ଗ ଅବଧୂତ । କୌଣସି ଗୋଟିଏ ଗୁରୁ ପାଖରେ ସେ ମୁଣ୍ଡ ବିକି ନଥିଲେ । ତାଙ୍କର ଥିଲେ ୨୪ ଶହ ଗୁରୁ । ଗାନ୍ଧୀଠାରୁ ମାଓ, କୋରାପୁଟର ଆଦିବାସୀ ବୃଦ୍ଧଠାରୁ ବାଜିରାଉତ ଛାତ୍ରାବାସର ଅନାଥ ଶିଶୁ ପର୍ଯ୍ୟନ୍ତ 'ସନ୍ତି ମେ ଗୁରବୋ ରାଜନ୍ ବହବୋ ବୁଦ୍ଧ୍ୟୁପାଶ୍ରିତା ।' 'ଚଲ୍‌ତି ସାଧୁ'ର ଦୀକ୍ଷା ନେଇଥିବାରୁ ସେ ଚେଲା ମଧ୍ୟ କରିନାହାନ୍ତି, ସମ୍ପ୍ରଦାୟ, ଦଳ, ଗୋଷ୍ଠୀ ତିଆରି କରି ନାହାନ୍ତି । ଛତା, ଚିତା, ବାନା– କିଛି ତାଙ୍କର ନଥିଲା ।

ସଂଖ୍ୟା ଗରିଷ୍ଠ ମୁସଲମାନ ବିଶ୍ୱାସ କରନ୍ତି ଯେ ମହମ୍ମଦ ପୃଥିବୀରେ ଅବତୀର୍ଣ୍ଣ ହୋଇଥିବା ଶେଷ ପୟଗମ୍ବର ବା ଈଶ୍ୱର ପ୍ରେରିତ ବାର୍ତ୍ତାବହ । ରକ୍ଷଣଶୀଳ ମୁସଲମାନଙ୍କ ବ୍ୟାଖ୍ୟାଠାରୁ ଏହାର ବ୍ୟାଖ୍ୟା ନବବାବୁଙ୍କ କ୍ଷେତ୍ରରେ ହୁଏତ ଥିଲା ଭିନ୍ନ । ମାତ୍ର ସେ ଏ କଥାଟିକୁ ବହୁତ ପସନ୍ଦ କରୁଥିଲେ । ଏହାର ଅର୍ଥ ସେ କରୁଥିଲେ, ମହମ୍ମଦଙ୍କ ଯୁଗ ପରେ ଦେବଦୂତ, ମହାପୁରୁଷ ଅଥବା ଅବତାରଙ୍କ ଯୁଗ ସରିଯାଇଛି । କେହି ଯଦି ଏବେ ଦାବି କରେ, 'ମାମେକଂ ଶରଣଂ ବ୍ରଜ' (ଏକା ମୋହରି ଶରଣ ପଶ) ଲୋକେ ଆଉ ମାନିବେ ନାହିଁ । ଏବେ ତୁ ତୋ ନିଜଗୁରୁ । ତୋ ନିଜକୁ ଉଦ୍ଧାର କରିବା ଦାୟିତ୍ୱ ତୋ ନିଜର ।

ନବବାବୁ କ'ଣ ନଥିଲେ ଜାଣିପାରିଲେ ଆମେ କିପରି ନିଜ 'ସ୍ୱଧର୍ମ' ଆବିଷ୍କାର କରିପାରିବା ଓ ସେହି ବାଟରେ ଚାଲିପାରିବା । ନବବାବୁ ବରିଷ୍ଠ ଓ କନିଷ୍ଠ ସମସ୍ତଙ୍କ ସହିତ ଗୁରୁପରି ନୁହେଁ ସାଥୀପରି ଆଚରଣ କରୁଥିଲେ । ତାଙ୍କ ବାଟରେ ଚାଲିବା ପାଇଁ ବାଧ୍ୟ କରୁନଥିବା ଅଥଚ ଆପଣା ସ୍ୱଧର୍ମ ସମ୍ପର୍କରେ ସଚେତନ କରିଦେଉଥିବା ସାଥୀଟିଏ ପରି ।

ବନମାଳି ଭବନ, ଖାନ୍‌ନଗର
କଟକ–୭୫୩୦୧୨

# ପ୍ରାଚୀନ ଓଡ଼ିଶାର ନୌବାଣିଜ୍ୟ

ଗୀତାଶ୍ରୀ ପ୍ରିୟମ୍ବଦା

ସମ୍ପଦ ଆଭ୍ୟନ୍ତରରେ ଦାରିଦ୍ର୍ୟ ସତେ ଯେମିତି ଓଡ଼ିଶାର ଚରମ ବିଡମ୍ବନା । ଓଡ଼ିଶାର ଗର୍ବ ଗୌରବ ବିମଣ୍ଡିତ ଓଡ଼ିଶା ସ୍ୱୟଂ ରତ୍ନଗର୍ଭା, ମଣିଖଚିତ, ସ୍ୱର୍ଣ୍ଣସିକ୍ତ ଭୂମିରୂପ । କିନ୍ତୁ ଗର୍ବ ଗୌରବ ବିଭୂଷିତ ଓଡ଼ିଶାର କୀର୍ତ୍ତି ଏବେ ବି ଦୀପ୍ତିମନ୍ତ । ଏହାର ଉଦାହରଣ ଓଡ଼ିଶାର ଅମୂଲ୍ୟ ସମ୍ଭାର ନୌବାଣିଜ୍ୟ ।

ପ୍ରାଚୀନ ଯୁଗରୁ ନୌବାଣିଜ୍ୟ କ୍ଷେତ୍ରରେ ଓଡ଼ିଆମାନଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । ସାଧବ ପୁଅମାନେ ନୌବାଣିଜ୍ୟ କଳାରେ ନିପୁଣ ଥିବା ଭାରତର ଇତିହାସ କହେ । ଓଡ଼ିଆ ସାଧବ ପୁଅ ବିଶ୍ୱ ଦରବାରରେ ନିଜକୁ ନିଜର ‘ନୌବାଣିଜ୍ୟ’ର କଳାକୁ ଏକ ସ୍ୱତନ୍ତ୍ର ଆସନରେ ଅଳଙ୍କୃତ କରିପାରିଥିଲେ । ପ୍ରମାଣ କହେ, ଓଡ଼ିଶାର ସୁଦୀର୍ଘ ସମୁଦ୍ର ଉପକୂଳରେ ଅନେକ ପ୍ରାକୃତିକ ବନ୍ଦର ଥିଲା । ଏହି ବନ୍ଦର ଜରିଆରେ ଅମୂଲ୍ୟ ରତ୍ନସମ ଆମ ରାଜ୍ୟ ତଥା ଦେଶର ହାତୀଦାନ୍ତ, ସୂକ୍ଷ୍ମବସ୍ତ୍ର, ପଟ୍ଟବସ୍ତ୍ର, ସୌଖୀନ ହସ୍ତଶିଳ୍ପ ସାମଗ୍ରୀ, ରତ୍ନପଥର, ଚାନ୍ଦୁଆ, ଓଡ଼ିଶାର ମୂଳ ଆଧାର ପାନପତ୍ର ସହ ସ୍ୱର୍ଣ୍ଣ, ମୁକ୍ତା, ରୂପା, ତମ୍ବା, ଲୌହ, ସୀସା ଏବଂ ସର୍ବୋପରି ଖାଦ୍ୟ ପ୍ରସ୍ତୁତି ସାମଗ୍ରୀ ମସଲା ପ୍ରଭୃତି ନିଜ ରାଜ୍ୟକୁ ତଥା ବିଦେଶକୁ ରପ୍ତାନୀ ଦେଉଥିଲା । ବିଦେଶରୁ ମଧ୍ୟ ବହୁମୂଲ୍ୟ ଦ୍ରବ୍ୟ ଆମଦାନୀ ହେଉଥିଲା । ଉକ୍ତ ‘ନୌବାଣିଜ୍ୟ’ ମାଧ୍ୟମରେ ଓଡ଼ିଆମାନେ ଦୂରଦୂରାନ୍ତ ଦେଶମାନଙ୍କୁ ଯାଇ ବ୍ୟବସାୟ ପୂର୍ବକ ଅସରନ୍ତି ଧନଦୌଲତରେ ଓଡ଼ିଶାକୁ ସମୃଦ୍ଧିଶାଳୀ କରିବାରେ ଅଗ୍ରଣୀ ଥିଲେ । ଓଡ଼ିଶାର ଲୋକକଥା, ସଙ୍ଗୀତ ଓ ନୃତ୍ୟ ଜରିଆରେ ସାଧବ ପୁଅର ବହୁବିଧ କାହାଣୀ ମନରେ ଅପୂର୍ବ ମାଦକତା ଏବଂ ନୌବାଣିଜ୍ୟ ପ୍ରତି ସ୍ୱତନ୍ତ୍ର ଆଗ୍ରହ ସୃଷ୍ଟି କରେ । ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ରଙ୍କ ଉଲ୍ଲେଖରୁ ଜଣାଯାଏ ଯେ, ସମୃଦ୍ଧ ସାମୁଦ୍ରିକ ବାଣିଜ୍ୟ ଯୋଗୁଁ ଓଡ଼ିଶାର ରାଜାଙ୍କୁ ପ୍ରାଚୀନ ସାହିତ୍ୟରେ ‘ମହୋଦଧିପତି’ ବୋଲି କୁହାଯାଉଥିଲା ।

ପୁରାଣ ଓ ଇତିହାସର ପୃଷ୍ଠା ଉନ୍ମୋଚନ କଲେ ଓଡ଼ିଶାର ବହୁବିଧ ନାମ ସାମ୍ନାକୁ ଆସେ ଯଥା– କଳିଙ୍ଗ, ଉଡ୍ର, ତ୍ରି କଳିଙ୍ଗ, ଉଦ୍ କଳିଙ୍ଗ, ଉତ୍କଳ, ତୋଷଳ, କୋଶଳ ଇତ୍ୟାଦି । ଓଡ଼ିଶାର ଯେଉଁସବୁ ମୁଖ୍ୟ ବନ୍ଦରମାନଙ୍କ ଦ୍ୱାରା ଉକ୍ତ ନୌବାଣିଜ୍ୟର କାର୍ଯ୍ୟ ସମ୍ପାଦିତ ହେଉଥିଲା ତନ୍ମଧ୍ୟରୁ ତାମ୍ରଲିପ୍ତ, ଅଜିତା, ପିପିଲି, ଦଶାର୍ଣ୍ଣ, ଦନ୍ତପୁରୀ, ମାଣିକ ପାଟଣା, ପାଲୁର, ଗଞ୍ଜାମ ଇତ୍ୟାଦି



ଉଲ୍ଲେଖନୀୟ । ଓଡ଼ିଆମାନେ ନୌବାଣିଜ୍ୟ ମାଧ୍ୟମରେ ବାଲି, ଜାଭା, ସୁମାତ୍ରା, ବ୍ରହ୍ମଦେଶ ଓ ଶ୍ରୀଲଙ୍କା ଇତ୍ୟାଦି ସହ ସ୍ଥାପିତ ହେବାର ପ୍ରମାଣ ମିଳେ । ନୌ–ବାଣିଜ୍ୟ ମାଧ୍ୟମରେ ସେହିକାଳରୁ ବ୍ରହ୍ମଦେଶ, ଥାଇଲାଣ୍ଡ, କାମ୍ବୋଡିଆ, ଶ୍ରୀଲଙ୍କା, ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ଚୀନ୍, ରୋମ୍, ଜାପାନ ତଥା ଆଫ୍ରିକା ସହିତ ଓଡ଼ିଶାର ବାଣିଜ୍ୟିକ ଓ ସାଂସ୍କୃତିକ ସମ୍ପର୍କ ରହିଛି । ଓଡ଼ିଆମାନେ ହିଁ ସେହିସବୁ ଦେଶରେ ଜଗନ୍ନାଥ ଓ ବୌଦ୍ଧ ସଂସ୍କୃତି ପ୍ରଚାର କରିଥିଲେ । ଏହା ସତ୍ୟ ଯେ, ଓଡ଼ିଆଙ୍କ ନୌବାଣିଜ୍ୟ ଯୋଗୁଁ ବୌଦ୍ଧ ଧର୍ମ ବିଶ୍ୱରେ ପ୍ରସାରିତ ହୋଇପାରିଥିଲା ।

ଓଡ଼ିଶାର ନୌବାଣିଜ୍ୟ ସମ୍ପର୍କୀୟ ଅନେକ ତଥ୍ୟ ବୌଦ୍ଧ ଧର୍ମଯାଜକ ବିଜ୍ଞଦତ୍ତ ସ୍ୱରଚିତ ବୁଦ୍ଧ ଜୀବନ ଚରିତ, ମଗଧର

ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ମନ୍ତ୍ରୀ ଚାଣକ୍ୟଙ୍କ ରଚିତ ଅର୍ଥଶାସ୍ତ୍ର ସ୍ୱଷ୍ଟିକୃତ । ମହାନଦୀ, ବ୍ରାହ୍ମଣୀ, ବୈତରଣୀ, ସୁବର୍ଣ୍ଣରେଖା, ବୁଢାବଳଙ୍ଗ, ଋଷିକୁଲ୍ୟା ଇତ୍ୟାଦି ନଦୀରେ ଆଭ୍ୟନ୍ତରୀଣ ଅଞ୍ଚଳରୁ ପଣ୍ୟଦ୍ରବ୍ୟ ଆସି ନଦୀ ମୁହାଣ ମଧ୍ୟସ୍ଥ ବନ୍ଦରରେ ଏକତ୍ରିତ ହୋଇ ବିଭିନ୍ନ ଦେଶକୁ ରପ୍ତାନି ହେଉଥିଲା ।

ଅନ୍ତଃବାଣିଜ୍ୟ ଦୃଷ୍ଟିରୁ ଜଳେଶ୍ୱର, ବାଲେଶ୍ୱର, ବାମନଘାଟୀ, କଟକ, ଯାଜପୁର, ଆନନ୍ଦପୁର, ଚାନ୍ଦବାଲି, ବାରକୋଟ, ତାଳଚେର, ଭୁବନ, ଆଦିପୁରା, ଜେନାପୁଟ, ଇନ୍ଦିପୁର, ପଚ୍ଚାମୁଣ୍ଡାଇ, ଆସ୍କା, ସମ୍ବଲପୁର, ସୋନପୁର କଣ୍ଟାବାଂଝି ଇତ୍ୟାଦି ସମୃଦ୍ଧ ବାଣିଜ୍ୟ ନଗରୀ ଥିଲା । 'ପେରିକ୍ଲିସ୍' ନାମକ ଏକ ପୁସ୍ତକରୁ ଜଣାଯାଏ ଓଡ଼ିଶାରେ ଏକଦା ପ୍ରଚୁର ହାତୀଦାନ୍ତ ମିଳୁଥିଲା । ଓଡ଼ିଶାର ସୂକ୍ଷ୍ମବସ୍ତ୍ର, ସମ୍ବଲପୁରୀ ବସ୍ତ୍ର, ହସ୍ତଶିଳ୍ପ, ତାରକସି କୌଶଳ, ପଟ୍ଟବସ୍ତ୍ର, ପଟ୍ଟଚିତ୍ର, କଂସାବାସନ ଇତ୍ୟାଦି ବିଦେଶରେ ଖୁବ୍ ଆଦୃତ । ଓଡ଼ିଆ ସାଧବପୁଅ ଅପୂର୍ବ କାରୁକାର୍ଯ୍ୟ ଶୋଭା କୌଶଳଯୁକ୍ତ ଦ୍ରବ୍ୟ ବିକ୍ରୟ ପୂର୍ବକ ବିଦେଶରୁ ଓଡ଼ିଶାକୁ ସୁନା, ମୁକ୍ତାର ପ୍ରାଚୁର୍ଯ୍ୟ ଆଣିବାରେ ସକ୍ଷମ ଥିଲେ । ନୌବାଣିଜ୍ୟ କୁଶଳୀ ଓଡ଼ିଆମାନେ ପ୍ରାଚ୍ୟ ଭୂଖଣ୍ଡ ତଥା ଆଫ୍ରିକାର ବିଭିନ୍ନ ଅଞ୍ଚଳରେ ବାଣିଜ୍ୟ ନିମିତ୍ତ ଉପନିବେଶମାନ ସ୍ଥାପନ କରିଥିଲେ । ଇତିହାସ କହେ, ସୋମ ଓ ଗଙ୍ଗବଂଶ ରାଜତ୍ୱରେ ଓଡ଼ିଶାର ନୌ–ବାଣିଜ୍ୟ ସମୃଦ୍ଧି ଲାଭ କରିଥିଲା । ସେସମୟରେ ନୌବାଣିଜ୍ୟ ନିମିତ୍ତ ବ୍ୟବହୃତ ବୃହତ ନୌକାର ଚିତ୍ର ଏଯାବତ୍ ପୁରୀ ଶ୍ରୀମନ୍ଦିରର ଭୋଗ ମଣ୍ଡପରେ ଦୃଶ୍ୟମାନ । ଓଡ଼ିଶାର ବାଲେଶ୍ୱର, ଚାନ୍ଦବାଲି, ବୋଇତିକୁଦ, ଅସ୍ତରଙ୍ଗ, ମାଣିକପାଟଣା ଓ ପାଲୁରରେ ବାଣିଜ୍ୟ ନୌକା ନିର୍ମାଣ ହେବାର କୁହାଯାଏ । ଏପରିକି ଶବ୍ଦ ସାର୍ଥକତାର କଳେବର ପ୍ରାଚୀ ମହାତ୍ମ୍ୟ, ତୀର୍ଥ ଚିନ୍ତାମଣି, କପିଳସଂହିତା ଇତ୍ୟାଦିରୁ ମଧ୍ୟ ନୌବାଣିଜ୍ୟ ସମ୍ପର୍କରେ ଅନେକ ତଥ୍ୟ ଉପଲବ୍ଧ ହୋଇଥାଏ ।

ସାହିତ୍ୟର ସ୍ୱପ୍ନିଳ ଆଭା ମଣ୍ଡିତ ପଞ୍ଚସଖା ଯୁଗରୁ ସୂଚନା ମିଳେ ଯେ ପ୍ରାଚୀ, ଚିତ୍ରୋତ୍ପଳା, ଋଷିକୁଲ୍ୟା, ବୈତରଣୀ, ବ୍ରାହ୍ମଣୀ, ମହାନଦୀ, ସୁବର୍ଣ୍ଣରେଖା ଓ ବୁଢାବଳଙ୍ଗ ଇତ୍ୟାଦି ନଦୀ ସମୂହ ସାମୁଦ୍ରିକ ବାଣିଜ୍ୟର ଦ୍ୱାର ଭାବରେ ପରିଚିତ । ଭକ୍ତକବି ଦୀନକୃଷ୍ଣ ଦାସଙ୍କ 'ସିନ୍ଧୁ' ଗ୍ରନ୍ଥରେ ବାଣିଜ୍ୟତରୀ ନିର୍ମାଣ ପ୍ରଣାଳୀ ବର୍ଣ୍ଣିତ । ଓଡ଼ିଶାର ସଂସ୍କୃତିଭରା କଳାଚାତୁରୀର ଆଧାର ପାଲା, ଦାସକାଠିଆ, ସଂକୀର୍ତ୍ତନ ଇତ୍ୟାଦିରୁ ଓଡ଼ିଆ ସାଧବପୁଅର ଭାଷା, ଭାବନା ଏବଂ କୃତିତ୍ୱକୁ ଅନୁଭବ କରିହୁଏ । ଜଣାଯାଏ ଯେ, ସାଧବପୁଅ ସଂସ୍କୃତ, ପାଲି, ବଙ୍ଗଳା, ନାଗରୀ, ଫରାସୀ ଇତ୍ୟାଦି ବହୁ ଭାଷାରେ ଧୁରନ୍ଧର ତଥା ପ୍ରବୀଣ ଥିଲେ । ଏପରିକି ଭଞ୍ଜଯୁଗର ପ୍ରବର୍ତ୍ତକ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ରଚନାରୁ ମଧ୍ୟ ଓଡ଼ିଶାର ନୌବାଣିଜ୍ୟ ସମ୍ପର୍କୀୟ ତଥ୍ୟ ହସ୍ତଗତ ହୋଇଛି ।

ନୌ–ବାଣିଜ୍ୟ ଓଡ଼ିଆ ସଂସ୍କୃତି ଓ ପରମ୍ପରା ତଥା ଶିଳ୍ପ କଳାର କୌଶଳ ଓଡ଼ିଶାକୁ ବିଶ୍ୱ ପ୍ରସିଦ୍ଧ କରିପାରିଛି । ଓଡ଼ିଆ ବଣିକମାନଙ୍କ ଦ୍ୱାରା ବିଦେଶରେ ଜଗନ୍ନାଥ, ବୌଦ୍ଧ, ଶୈବ, ବୈଷ୍ଣବ, ଶାକ୍ତ ଓ ବୈଦିକ ସଂସ୍କୃତିର ପ୍ରସାର ହୋଇପାରିଥିଲା । ଜଣାଯାଏ, କାମ୍ବୋଡିଆ ହରିହର ଉପାସନାର ପୀଠଭୂମି, ଭିଏତ୍‌ନାମାରେ ରାମାୟଣର ପ୍ରଚାର, ଜାଭାରେ ବ୍ରାହ୍ମଣ୍ୟଧର୍ମ, ବ୍ରହ୍ମଦେଶରେ ବୌଦ୍ଧ ଓ ଜଗନ୍ନାଥ ଧର୍ମର ପ୍ରସାର ପ୍ରଚାର ତଥା ପ୍ରତିଷ୍ଠା କେବଳ ନୌ–ବାଣିଜ୍ୟ ହେବାର ଫଳପ୍ରଦ ପ୍ରତିଫଳନ । ଚୀନ, ଜାପାନ, ଶ୍ରୀଲଙ୍କା, ଇଣ୍ଡୋନେସିଆ ଇତ୍ୟାଦି ଦେଶ ସହ ଓଡ଼ିଶାର ମଧୁମୟ ବାଣିଜ୍ୟିକ ଓ ସାଂସ୍କୃତିକ ସମ୍ପର୍କ ମଧ୍ୟ ଦୃଢୀଭୂତ ହୋଇପାରିଥିଲା ।

ଯଥାର୍ଥରେ ଓଡ଼ିଶାର ଅର୍ଥନୈତିକ, ରାଜନୈତିକ ସାଂସ୍କୃତିକ ଓ ଧାର୍ମିକ ଜୀବନର ଅଭିବୃଦ୍ଧି ନୌବାଣିଜ୍ୟ ଦ୍ୱାରା ହିଁ ସମ୍ଭବ ହୋଇପାରିଥିଲା । ନୌ–ବାଣିଜ୍ୟହିଁ ଓଡ଼ିଶାକୁ ଏକ ସାମୁଦ୍ରିକ ବାଣିଜ୍ୟ ସମୃଦ୍ଧ, ଐଶ୍ୱର୍ଯ୍ୟ ପରିପୂର୍ଣ୍ଣ ବିଭବଶାଳୀ ରାଜ୍ୟର ମାନ୍ୟତା ପ୍ରଦାନ କରିଥିଲା । ଜଣାଯାଏ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଓଡ଼ିଆମାନେ ନୌ–ବାଣିଜ୍ୟକୁ ଆପଣେଇ ନେବା ସହ ଆପଣାର ସମ୍ପର୍କ ପ୍ରତିଷ୍ଠା କରିବାର ଗୌରବ ହାସଲ କରିପାରି ଥିଲେ ।

ମାଦଳାପାଞ୍ଜି ଅନୁସାରେ ବିଧର୍ମୀ ଶତ୍ରୁମାନେ ସମୁଦ୍ର ପଥରେ ହିଁ ଓଡ଼ିଶାକୁ ପ୍ରବେଶ କରିଥିଲେ । ଶାମ୍ବ ପୁରାଣରେ ଉଲ୍ଲିଖିତ ଅଛି ଯେ, ଶାକ୍ୟଦୀପ ବା ପାରସ୍ୟ ଦେଶରୁ ସୂର୍ଯ୍ୟ ପୂଜକମାନେ କୋଣାର୍କରେ ସୂର୍ଯ୍ୟ ପୂଜା ଆରମ୍ଭ କରିଥିଲେ । ଜାଭାରେ ପ୍ରଚଳିତ କିମ୍ବଦନ୍ତୀ ଅନୁସାରେ କଳିଙ୍ଗ ରାଜା କୋଡିଏ ହଜାର ପରିବାରକୁ ଜାଭା ପଠାଇଥିଲେ । ସେମାନେ ସେଠାରେ ତିନି ପୁରୁଷ ଧରି ରାଜତ୍ୱ କରିଥିଲେ । ଓଡ଼ିଆମାନେ ବାଲିଦ୍ୱୀପକୁ ଯାତ୍ରା କରିବାର ସ୍ମୃତିକୁ ଜୀବନ୍ତ ରଖିବା ନିମନ୍ତେ ଅଦ୍ୟାବଧି କଟକରେ ବାଲିଯାତ୍ରା ଅନୁଷ୍ଠିତ ହେଉଛି । ଓଡ଼ିଶାର ଆଭ୍ୟନ୍ତରୀଣ ଅଞ୍ଚଳରୁ ବିଭିନ୍ନ ସାମଗ୍ରୀ ନଦୀପଥରେ ଆସି କଟକ ମହାନଦୀ କୂଳକୁ ଆସୁଥିଲା ଏବଂ ଓଡ଼ିଆ ବଣିକ ତଥା ବ୍ୟବସାୟୀମାନେ ତାହା ନେଇ ଦୂରଦୂରାନ୍ତ ଗମନ କରୁଥିଲେ ।

ଓଡ଼ିଶା କୀର୍ତ୍ତି, ଗର୍ବମୟ ଗାରିମାର କେନ୍ଦ୍ରବିନ୍ଦୁ । ନୌ–ବାଣିଜ୍ୟର ଐତିହ୍ୟକୁ ଜାବୁଡି ଧରିଥିବା ସହର 'କଟକ' ସ୍ୱତନ୍ତ୍ର

ଶୈଳୀରେ ସଞ୍ଜୀବିତ । ଆଜିବି ଅଭୁଲା କୀର୍ତ୍ତି ପ୍ରତ୍ୟେକ ଓଡ଼ିଆ ଛାତିରେ କମ୍ପନ ସୃଷ୍ଟି କରେ ଏବଂ ମଧୁର ଆଗ୍ରହ, ଆବେଗ ଆନନ୍ଦ ତଥା ମଧୁରତାର ମଳୟ ପ୍ରବାହିତ କରେ । କଳିଙ୍ଗର ସାଧବମାନଙ୍କ ବେପାର ବାଣିଜ୍ୟକୁ ଚିରଦୀପ୍ତ ରଖିବାକୁ ଆଜି ମଧ ପ୍ରତ୍ୟେକ ଓଡ଼ିଆ ବୋଇତ ବନ୍ଦାଣ ପ୍ରକ୍ରିୟାକୁ ଭୁଲି ପାରିନାହାନ୍ତି । ଏବେ ମଧ ଓଡ଼ିଆମାନେ ନଦୀରେ, ସମୁଦ୍ର ତଟରେ, ପୁଷ୍କରିଣୀରେ, ଜଳାଶୟରେ କଦଳୀ ପଟୁକାରେ କାଗଜ ତିଆରି ଡଙ୍ଗାରେ ଦୀପ ପ୍ରଜ୍ୱଳନ କରି କାର୍ତ୍ତିକ ପୂର୍ଣ୍ଣିମାର ଶୁଭ ସକାଳରେ ଡଙ୍ଗା ଭସାଇ ଅତୀତ ଉତ୍କଳର ଗୌରବକୁ ହୃଦୟଙ୍ଗମ କରିବା ସହ ବେଶ୍ ଆନନ୍ଦ ଅନୁଭବ କରନ୍ତି ।

ଜଳଯାତ୍ରା ପାଇଁ ଆଷାଢ଼ରୁ କାର୍ତ୍ତିକ ଅମାବାସ୍ୟା ପ୍ରକୃଷ୍ଟ ସମୟ । ଏହି ସମୟରେ ଉତ୍ତର-ପୂର୍ବ ମୌସୁମୀ ବାୟୁ ପ୍ରବାହିତ ହୋଇଥାଏ । ସବୁକିଛିର ସ୍ୱତନ୍ତ୍ର ଅନୁଭୂତି ହିଁ 'ବାଲିଯାତ୍ରା'ର ମୂଳଭିତ୍ତି । ପାଞ୍ଚଦିନ ପାଇଁ ପଞ୍ଚୁକ ବ୍ରତ ପାଳନ କରି କାର୍ତ୍ତିକ ପୂର୍ଣ୍ଣମୀ ପ୍ରଭାତରୁ କଦଳୀ ପଟୁକାରେ ବୋଇତ ତିଆରି କରି ସେଥିରେ ଭକ୍ତି ନୈବେଦ୍ୟ ପୂର୍ବକ ପ୍ରତ୍ୟେକ ଓଡ଼ିଆ ମାଆ ଗଙ୍ଗାଙ୍କ ଉଦ୍ଦେଶ୍ୟରେ ପାନ ଓ ଗୁଆ ସମର୍ପଣ କରିଥାଆନ୍ତି । ଏହି ମୁଷ୍ଟିକର କଳିଙ୍ଗ ବାଲିଯାତ୍ରା ଏଯାବତ ତ୍ୱରାନ୍ୱିତ ହୋଇ ଚାଲିଛି । ଏଥିପାଇଁ ଓଡ଼ିଶା ସରକାରଙ୍କ ପର୍ଯ୍ୟଟନ ବିଭାଗର ବିଶେଷ ପଦକ୍ଷେପ ପ୍ରଶଂସନୀୟ । ବାଲିଯାତ୍ରାରେ ଦୋକାନ, ବଜାର, ଖାଇବା ସାମଗ୍ରୀ, ନିତ୍ୟ ବ୍ୟବହାର୍ଯ୍ୟ ଆସବାବପତ୍ର ଏପରିକି ଛୁଞ୍ଚିଠାରୁ ଶାବଳ ପର୍ଯ୍ୟନ୍ତ ସବୁକିଛି ସୁଲଭ ସହଜରେ ପ୍ରାପ୍ତ ହୋଇଥାଏ । ବାସ୍ତବିକ ଓଡ଼ିଶାର ନୌବାଣିଜ୍ୟ ଏବଂ କଟକର ବାଲିଯାତ୍ରା ଆଜିର ଆନମନା ବିଡମ୍ବିତ ବାଟବଣା ସମୟକୁ ସୁଧାରିବାର ଗୁରୁ ଅମୋଘ ଅସ୍ତ୍ରରଂଜିତ ସେତୁ ପ୍ରାୟ ବିଦ୍ୟମାନ । ତେଣୁ କୁହାଯାଏ–

'ଗର୍ବ ଗୌରବର କିମ୍ବଦନ୍ତୀ ତୁ'
କଳିଙ୍ଗର କୀର୍ତ୍ତିବିଜୟ ବୈଜୟନ୍ତୀ,
ତୋ ପାଇଁ ଗର୍ବିତ ସ୍ଥିତି ଓ ସଂହତି
ଶାଶ୍ୱତ ସର୍ଜନାର ସ୍ୱପ୍ନମୟ ଜ୍ୟୋତି ।
ହଜିଲା ଅତୀତ ଭିଜିଲା ସ୍ମୃତି ତୁ'
ସାଧବ ସଂସ୍କୃତି ବୋଇତ ଆଳତୀ
ସବୁକିଛିରେ ସଜ୍ଜିତ ସଜଳ କାହାଣୀ
ଚିର ଗ୍ରହଣୀୟ ବରଣୀୟ
ଅଭୁଲା ଉପମାରେ
ତୋ ପାଇଁ ସାଧବାଣୀ ଯୁଗେ ଯୁଗେ
ଚିର ଦୀପ୍ତିମୟୀ, ଲାସ୍ୟମୟୀ
ଗର୍ବିତା ଗାରିମାମୟୀ ଓଡ଼ିଆଣୀ ।'

ଅଧ୍ୟାପିକା, ଶିକ୍ଷା ବିଭାଗ
ଖଡିଆଳ ସ୍ୱୟଂଶାସିତ ମହାବିଦ୍ୟାଳୟ
ଖଡିଆଳ, ନୂଆପଡା

**ସହାୟକ ପୁସ୍ତକ:**

୧– ଭିଜିଟର ଗାଇଡ୍ ଓଡ଼ିଶା, ଡଟା ଏଣ୍ଡ ଏକ୍ସପୋ ଇଣ୍ଡିଆ ଦ୍ୱାରା ପ୍ରକାଶିତ

୨– ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର– ଓଡ଼ିଶାର ଗୌରବୋଜ୍ଜ୍ୱଳ ନୌବାଣିଜ୍ୟ–୨୦୧୦

୩– ଝଙ୍କାର ୪୮ବର୍ଷ, ୮ମ ସଂଖ୍ୟା ।

୪– ପରିବ୍ରାଜକ–୨୦୦୬, ପର୍ଯ୍ୟଟନ ବିଭାଗ ସାଂସ୍କୃତିକ ପରିଷଦ ତରଫରୁ ପ୍ରକାଶିତ ।

୫– ଦାଶରଥି ପାତ୍ର– ଉତ୍କଳର ନୌବାଣିଜ୍ୟ ଓ କଟକର ବାଲିଯାତ୍ରା–୨୦୧୧



# ପ୍ରାଚୀନ ଓଡ଼ିଶାର ନୌବାଣିଜ୍ୟ: ପତନର ସମ୍ଭାବ୍ୟ କାରଣ

ମାନସ କୁମାର ମଲ୍ଲିକ

ପ୍ରାଚୀନ ଓଡ଼ିଶାର ନୌବାଣିଜ୍ୟ କେତେ ସମୃଦ୍ଧ ଥିଲା, ତାହା କହିବା ନିଷ୍ପ୍ରୟୋଜନକ । ସମୁଦ୍ର ଉପକୂଳବର୍ତ୍ତୀ କୌଣସି ରାଜ୍ୟର ଅର୍ଥନୀତିକୁ ସୁଦୃଢ଼ କରିବାରେ ସାମୁଦ୍ରିକ ନୌବାଣିଜ୍ୟ ଏକ ବିଶେଷ ଭୂମିକା ଗ୍ରହଣ କରିଥାଏ । ସେହି ଦୃଷ୍ଟିରୁ ଓଡ଼ିଶା ଅତୀତରେ ଭାରତର ଅନ୍ୟତମ ଅଗ୍ରଣୀ ରାଜ୍ୟ ଥିଲା ବୋଲି କୁହାଯାଇ ପାରେ । ଓଡ଼ିଶାର ନୌବାଣିଜ୍ୟିକ ପରମ୍ପରା ବେଶ୍ ପ୍ରାଚୀନ । ଏହା ଖ୍ରୀଷ୍ଟପୂର୍ବ ୫୦୦ କିମ୍ବା ତା' ପୂର୍ବରୁ ଆରମ୍ଭ ହୋଇଥିବା ବିଷୟ ଐତିହାସିକମାନେ ପ୍ରକାଶ କରନ୍ତି । ତତ୍କାଳୀନ କଳିଙ୍ଗର ବଣିକମାନେ ଭାରତର ବିଭିନ୍ନ ବନ୍ଦର ସହିତ ବାଣିଜ୍ୟିକ କାରବାର କରୁଥିବା ବେଳେ ଦରିଆପାରି ଦେଶ ଶ୍ରୀଲଙ୍କା, ମାଳଦ୍ୱୀପ, ବ୍ରହ୍ମଦେଶ (ମ୍ୟାନ୍‌ମାର), ଶ୍ୟାମଦେଶ (ଥାଇଲାଣ୍ଡ) ମାଳୟ (ମାଲେସିଆ, ସିଙ୍ଗାପୁର) ଚମ୍ପାଦେଶ (ଭିଏତ୍‌ନାମ) କମ୍ବୋଜ (କାମ୍ବୋଡ଼ିଆ), ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ ଭଳି ଇଣ୍ଡୋନେସୀୟ ଦ୍ୱୀପପୁଞ୍ଜ ଫିଲିଫାଇନ୍‌ସ ଏପରିକି ମିଶର ଏବଂ ରୋମ୍ ଦେଶ ସହିତ ମଧ୍ୟ ବାଣିଜ୍ୟ କାରବାର କରୁଥିବାର ପ୍ରମାଣ ମିଳେ । ସାମୁଦ୍ରିକ ନୌବାଣିଜ୍ୟ ଯୋଗୁଁ କେବଳ ଉତ୍ପାଦିତ ଦ୍ରବ୍ୟର କିଣାବିକା ବା ବିନିମୟ ହେଉଥିଲା ତା'ନୁହେଁ ବରଂ ଧର୍ମ ସଂସ୍କୃତିର ବିନିମୟ ମଧ୍ୟ ହେଉଥିଲା । ଦକ୍ଷିଣ-ପୂର୍ବ ଏସୀୟ ଦେଶମାନଙ୍କରେ ଭାରତୀୟ ତଥା ଉତ୍କଳୀୟ ସଂସ୍କୃତିର ପ୍ରଭାବ ଆଜିଯାଏ ଦେଖିବାକୁ ମିଳେ । ସ୍ଥଳ ବିଶେଷରେ କଳିଙ୍ଗର ବିଭିନ୍ନ ରାଜବଂଶର ଦାୟାଦମାନେ ସିଂହଳ ଓ କେତେକ ଦକ୍ଷିଣ-ପୂର୍ବ ଏସିୟ ଭୌଗଳିକ ଭୂଖଣ୍ଡରେ ଶାସନଭାର ମଧ୍ୟ ଗ୍ରହଣ କରିଥିଲେ ବୋଲି ଇତିହାସରେ ଉଲ୍ଲେଖ ଅଛି । ଇତିହାସର ନିୟମ ବଡ ବିଚିତ୍ର । ଆଜି ଯାହା ଅଛି, ଆସନ୍ତା କାଲିକୁ ତାହା ଇତିହାସ ପାଲଟିଯିବ, ଏହି ନ୍ୟାୟରେ କେଉଁ ଆବହମାନ କାଳରୁ ଯେଉଁ ଗୌରବାବହ ସାମୁଦ୍ରିକ ବାଣିଜ୍ୟ ପ୍ରାଚୀନ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପରିଚୟ ଦେଇଥିଲା, ତାହା କ୍ରମଶଃ ଇତିହାସ ପାଲଟିଗଲା । ଦରିଆପାରି ଦେଶଗୁଡିକରେ ବାଣିଜ୍ୟ ବ୍ୟବସାୟ ମାଧ୍ୟମରେ ଓଡ଼ିଆପୁଅ ନିଜ ରାଜ୍ୟ ପାଇଁ ଯେଉଁ ସୁଖ ସମୃଦ୍ଧି ଆଣିଥିଲା, ତାହା ସମୟକ୍ରମେ ମଳିନ ପଡିଆସିଲା । ସାମୁଦ୍ରିକ ନୌବାଣିଜ୍ୟର ପତନ ଓଡ଼ିଶାକୁ ଅର୍ଥନୈତିକ ଦୃଷ୍ଟିରୁ ଯେପରି ପଛକୁ ନେଇଗଲା, ସାଂସ୍କୃତିକ ଦୃଷ୍ଟିରୁ ସେହିପରି ପୂର୍ବ ପ୍ରଭାବିତ ଅଞ୍ଚଳରୁ ବିଛିନ୍ନ କରିଦେଲା । ସାମୁଦ୍ରିକ ନୌବାଣିଜ୍ୟର ପତନ ପଛରେ ଥିବା କାରଣଗୁଡିକ ବିଶ୍ଳେଷଣ କଲାବେଳେ ଜଣାଯାଏ, ଏହି ପ୍ରକ୍ରିୟା ଏକାଦଶ ଶତାବ୍ଦୀରୁ ଆରମ୍ଭ ହୋଇ ଷୋଡଶ ଶତାବ୍ଦୀ ପର୍ଯ୍ୟନ୍ତ ଚାଲିଥିଲା । ବିଭିନ୍ନ କାରଣରୁ ଏହି ସମୟ ପରଠାରୁ ଓଡ଼ିଆପୁଅର ସାତଦରିଆପାରି ବାଣିଜ୍ୟ ବ୍ୟବସାୟର ସ୍ୱପ୍ନ ମରିଯାଇଥିଲା । ଯେମିତି, ସପ୍ତଦଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶା ଉପକୂଳରେ ଥିବା କେତେକ ବନ୍ଦରରେ ଦୂର ଦେଶମାନଙ୍କ ସହିତ ଯେଉଁ ବାଣିଜ୍ୟ ବ୍ୟବସାୟ ଚାଲିଥିଲା, ତା'ର କର୍ତ୍ତୃତ୍ୱ କେଉଁ ଓଡ଼ିଆ ବଣିକ ହାତରେ ନଥିଲା । ବରଂ ଥିଲା ଗୁଜୁରାଟି ବଣିକ କିମ୍ବା ପର୍ତ୍ତୁଗୀଜ, ଇଂରେଜ, ଡଚ୍ ଓଲନ୍ଦାଜ, ଦିନାମାର, ଫରାସୀ ଆଦି ବିଦେଶୀ ୟୁରୋପୀୟ ଶକ୍ତିମାନଙ୍କ ହାତରେ ।

ଓଡ଼ିଶାର ବହୁ ପ୍ରାଚୀନ ସାମୁଦ୍ରିକ ନୌବାଣିଜ୍ୟର ପତନ ପାଇଁ ସର୍ବପ୍ରଥମେ ଦାୟୀ କରାଯାଇପାରେ ପ୍ରକୃତିକୁ । ଏକ ସମୁଦ୍ର ଉପକୂଳବର୍ତ୍ତୀ ରାଜ୍ୟ ହୋଇଥିବାରୁ ଅନେକ ବଡବଡ ନଦୀ କଳିଙ୍ଗ ସାଗର (ପରବର୍ତ୍ତୀ ସମୟରେ ବଙ୍ଗୋପସାଗର ନାମରେ ନାମିତ)ରେ ମିଶିଥିଲା । ବାହାର ଦେଶକୁ ରପ୍ତାନୀ ହେବାକୁ ଥିବା ମୂଲ୍ୟବାନ ଓ ଦରକାରୀ ସାମଗ୍ରୀସବୁ ଅଭ୍ୟନ୍ତରୀଣ ଅଞ୍ଚଳରୁ ନଦୀପଥରେ କିମ୍ବା ସ୍ଥଳ ପଥରେ ଆସି ମୁହାଁଣ ପାଖରୁ ଅଥବା ସମୁଦ୍ରକୂଳବର୍ତ୍ତୀ କୌଣସି ବନ୍ଦରରୁ ଦୂର ଦେଶକୁ ଯାଉଥିଲା । ମାତ୍ର ସମୟକ୍ରମେ ସେହିସବୁ ନଦୀମୁହାଁଣଗୁଡିକ ବର୍ଷାଦିନେ କୂଳ

ଖାଉଥିବା ମାଟି ଏବଂ ଉପର ମଣ୍ଡରୁ ଜଳସ୍ରୋତରେ ବାହିତ ହୋଇଆସୁଥିବା ବାଲି ଦ୍ୱାରା ପୋତି ହେବାକୁ ଲାଗିଲା । ମୁହାଁଣ ପାଖରେ ଏବଂ ସମୁଦ୍ର କୂଳ ପାଣି ଭିତରେ ସୃଷ୍ଟି ହେଉଥିବା ଛୋଟବଡ ବାଲିସ୍ତୂପ ପଣ୍ୟବାହୀ ବୋଇତସବୁକୁ ଅଭ୍ୟନ୍ତରକୁ ତଥା କୂଳକୁ ଆସିବାରେ ଏବଂ ଯିବାରେ ବାଧାସୃଷ୍ଟି କଲା । ଏକଦା ବିଭିନ୍ନ ଆକାରର ଦୂରଗାମୀ ବୋଇତଗୁଡିକ ଦ୍ୱାରା ଆଷାଢ ମାସରୁ ବୈଶାଖ ମାସ ପର୍ଯ୍ୟନ୍ତ କୋଳାହଳମୟ ହୋଇପଡୁଥିବା ପୋତାଶ୍ରୟ ଏବଂ ବନ୍ଦର ସେମାନଙ୍କର ପୂର୍ବ କାର୍ଯ୍ୟ କ୍ଷମତା ହରାଇଲେ । ଖ୍ରୀଷ୍ଟପୂର୍ବ ସମୟରୁ ଷୋଡଶ ଶତାବ୍ଦୀ ଯାଏ ସମୁଦ୍ରରେ ମିଶିଥିବା ଓଡ଼ିଶାର ବିଭିନ୍ନ ବଡ ବଡ ନଦୀ ଏବଂ ନୌବାଣିଜ୍ୟିକ ସ୍ଥିତି ବାବଦରେ ଉପଲବ୍ଧ ଐତିହାସିକ ବିବରଣୀରୁ ଅନେକ ଉପଯୋଗୀ ତଥ୍ୟ ମିଳିଥାଏ । ମେଘାସ୍ଥିନିସ୍, ପ୍ଲିନି, ଟଲେମୀ ଇତ୍ୟାଦିଙ୍କ ବର୍ଣ୍ଣନୁସାରେ ଗୋଟିଏ ସମୟରେ କଳିଙ୍ଗର ପ୍ରଧାନ ବନ୍ଦରଗୁଡିକ ମଧ୍ୟରେ ଅନ୍ୟତମ ଥିଲେ ତାଇଣ୍ଡିସ୍, କଟିକର୍ଦ୍ଦମ, ନନିଗଇନା, କୋନଗର, ପିଥୁଣ୍ଡ (ଏହା ବର୍ତ୍ତମାନ ଆନ୍ଧ୍ରପ୍ରଦେଶରେ) ପାଲୁର, ତାମ୍ରଲିପ୍ତି (ବର୍ତ୍ତମାନ ଏହା ମେଦିନିପୁର ଜିଲ୍ଲାର ତାମଲୁକ୍, ଅଶୋକଙ୍କ ସମୟରେ ଏହା କଳିଙ୍ଗ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ ଥିଲା) ଇତ୍ୟାଦି । ଅଧିକାଂଶ ବନ୍ଦର ନଦୀ ମୁହାଁଣ ନିକଟରେ ଅବସ୍ଥିତ ଥିଲା ଏବଂ ମୁହାଁଣ ପୋତିହୋଇ ଅଗଭୀର ହୋଇଯିବା କାରଣରୁ ଏହା ମଧ୍ୟରୁ ଅନେକ କାଳକ୍ରମେ ଅକାମୀ ହୋଇପଡିଲେ ଏବଂ ଚେଳିତାଲୋ ଭଳି କେତେକ ଅପେକ୍ଷାକୃତ କ୍ଷୁଦ୍ର ବନ୍ଦର ଉପରେ ବଣିକମାନଙ୍କର ନିର୍ଭରଶୀଳତା ବଢିଥିଲା । ଚୀନ୍ ପରିବ୍ରାଜକ ଫାଇୟାନ ଏବଂ ହୁଏନସାଂଙ୍କ ବେଳକୁ ଯଦିଓ ତାମ୍ରଲିପି ଏବଂ ପାଲୁରଭଳି ବଡବନ୍ଦର ସବୁ କାର୍ଯ୍ୟକ୍ଷମ ଥିଲା ଏବଂ ଅତିକମ୍‌ରେ ୨୦୦ ଲୋକ ତଥା ପଣ୍ୟଦ୍ରବ୍ୟକୁ ବହନ କରିବାର କ୍ଷମତା ରଖୁଥିବା ବୋଇତସବୁ ଏଠାରୁ ଯିବା ଆସିବା କରିପାରୁଥିଲା (ଫାଇୟାନ ଯେଉଁ ବୋଇତରେ ବସି ତାମ୍ରଲିପ୍ତରୁ ସିଂହଳ ବାଟ ଦେଇ ଚୀନକୁ ଫେରିଥିଲେ ସେଥିରେ ୨୦୦ ଜଣ ଯାତ୍ରୀ ଥିବାର ଲେଖିଛନ୍ତି) । ଦୂରଦେଶକୁ ବାଣିଜ୍ୟ କରିବାକୁ ଯିବାକୁ ହେଲେ ନିଶ୍ଚିତ ଭାବରେ ସାଧବ ବା ବଣିକମାନଙ୍କୁ ବିପୁଳ ପରିମାଣର ପଣ୍ୟଦ୍ରବ୍ୟ ଏବଂ ଯାତ୍ରୀ ବହନ କରିପାରୁଥିବା ବଡ ବୋଇତ ବ୍ୟବହାର କରିବା ଅର୍ଥନୈତିକ ଦୃଷ୍ଟିରୁ ଲାଭଦାୟକ ହେଉଥିବ । ମାତ୍ର ନିକଟବର୍ତ୍ତୀ ସମୁଦ୍ର ଏବଂ ନଦୀବନ୍ଦର ପୋତି ହୋଇ ଅକାମୀ ହୋଇଯିବାରୁ ସେମାନଙ୍କୁ କ୍ରମେ ଅପେକ୍ଷାକୃତ ଛୋଟ ବୋଇତର ସାହାଯ୍ୟ ନେବାକୁ ପଡୁଥିବ ଏବଂ ତାହା ସେମାନଙ୍କ ପାଇଁ ବିଶେଷ ଲାଭଦାୟକ ହେଉନଥିବ । ତଥାପି ଏହି ଅବସ୍ଥାରେ ଅନେକ ସାଧବ ତଥା ବଣିକ ଷୋଡଶ ଶତାବ୍ଦୀ ବେଳକୁ କାର୍ଯ୍ୟକ୍ଷମ ଥିବା ମାଣିକପାଟଣା, ହରିଶପୁର, ପିପିଲି, ବାଲେଶ୍ୱର ଆଦି ବନ୍ଦରରୁ ସେମାନଙ୍କର ନୌବାଣିଜ୍ୟିକ କାରବାର ଚଳାଇଥିଲେ । ଆଜିଭଳି ଆଧୁନିକ ବ୍ୟବସ୍ଥାରେ ଅଗଭୀର ହୋଇପଡୁଥିବା ବନ୍ଦର, ନଦୀପଥ ବା ମୁହାଁଣଗୁଡିକୁ ପୁନରୁଦ୍ଧାର କରିବା ସହଜ ହୋଇପାରୁଛି, ମାତ୍ର ସେ କାଳରେ ଏସବୁ ସମ୍ଭବ ନଥିଲା । ନୌବାଣିଜ୍ୟର ମୁଖ୍ୟ ସହାୟକ ସାଜୁଥିବା ଛୋଟବଡ ନଦୀଗୁଡିକ କାଳକ୍ରମେ କେବଳ ସଙ୍କୁଚିତ ହୋଇଯାଇଛନ୍ତି ତା ନୁହେଁ ଅନେକ ସମ୍ପୂର୍ଣ୍ଣ ପୋତିହୋଇ ନିଜର ସତ୍ତା ହରେଇଛନ୍ତି । ଉପଗ୍ରହ ମାଧ୍ୟମରେ ନିଆଯାଇଥିବା ଓଡ଼ିଶାର ମାନଚିତ୍ର ଦେଖିଲେ ଏବେବି ସେଗୁଡିକର ମୃତଧାରା ବାରିହୋଇଯାଏ ।

ନଦୀ ପଥ ଏବଂ ମୁହାଁଣ ପୋତି ହୋଇଯିବା କାରଣ ବ୍ୟତୀତ ନୌବାଣିଜ୍ୟିକ ପତନର ଆଉ ଏକ ପ୍ରାକୃତିକ କାରଣ ହେଲା ବିଭିନ୍ନ ସମୟରେ ବଙ୍ଗୋପସାଗରରେ ସୃଷ୍ଟିହେଉଥିବା ଭୟଙ୍କର ଝଡବାତ୍ୟା ଜଳବାୟୁ ଏବଂ ପାଣିପାଗ ଦୃଷ୍ଟିରୁ ବର୍ଷର ଆଷାଢ ଏବଂ କାର୍ତ୍ତିକ ମାସରେ ଯଥାକ୍ରମେ ଦକ୍ଷିଣ–ପୂର୍ବ ଏସିୟ ଦେଶ ଏବଂ ସିଂହଳ ଇତ୍ୟାଦିକୁ ବୋଇତ ନେବାରେ ସୁବିଧା ତଥା ଅନୁକୂଳ ହେଉଥିଲା । ଠିକ୍ ସେହିପରି ଫେରିବା ପାଇଁ ମାର୍ଗଶିରରୁ ବୈଶାଖ ଉପଯୁକ୍ତ ସମୟ ବୋଲି ଧରାଯାଉଥିଲା । (ଏଥିପାଇଁ ବୋଧହୁଏ କାର୍ତ୍ତିକ ମାସ ଡଙ୍ଗାଭସା ସମୟରେ ଆ କା ମା ବୈ ଉଚ୍ଚାରଣ କରାଯାଏ) । ତେବେ ବିଭିନ୍ନ କାରଣରୁ ବିଶ୍ୱବ୍ୟାପି କ୍ରମାଗତ ଭାବରେ ଜଳବାୟୁର ପରିବର୍ତ୍ତନ ସବୁ ପ୍ରାକୃତିକ ବ୍ୟବସ୍ଥାକୁ ପ୍ରଭାବିତ କରିଚାଲିଛି । ଅନେକ ଐତିହାସିକ ବିବରଣୀରୁ ବଙ୍ଗୋପସାଗରରେ ବିଭିନ୍ନ ସମୟରେ ସୃଷ୍ଟି ହୋଇଥିବା ଝଡବାତ୍ୟା ସମ୍ପର୍କରେ ତଥ୍ୟ ମିଳିଥାଏ । ଏବେ ଆଶ୍ୱିନ ଏବଂ କାର୍ତ୍ତିକ ମାସରେ ଯେପରି ଭୟଙ୍କର ଝଡବାତ୍ୟା ସୃଷ୍ଟି ହେଉଛି ପୂର୍ବେ ସେହିପରି ହେଉଥିବା ଅସମ୍ଭବ ନୁହେଁ । ଏହାଦ୍ୱାରା ଜଳଭାଗରେ ଥିବା ବୋଇତଗୁଡିକ କ୍ଷତିଗ୍ରସ୍ତ ହେବା ସହିତ ଅନେକ ମୃତ୍ୟୁ ମୁଖରେ ପଡୁଥିଲେ ଏବଂ ସମୁଦ୍ର ଉପକୂଳବର୍ତ୍ତୀ ବନ୍ଦର ତଥା ନଦୀ ମୁହାଁଣଗୁଡିକ ବିପର୍ଯ୍ୟସ୍ତ ହୋଇପଡୁଥିଲେ । କଳିଙ୍ଗରୁ ସିଂହଳ ଦ୍ୱୀପକୁ ବାଣିଜ୍ୟ କରିବାକୁ ବୋଇତଗୁଡିକ ଯାଉଥିବା ବେଳେ ଏକଦା ସାମୁଦ୍ରିକ ଝଡ ଯୋଗୁଁ ଅନେକ ବୋଇତ ପାଣିରେ ବୁଡିଯାଇଥିଲା ଏବଂ ଏଥିରେ ପ୍ରାୟ ୫୦୦ଜଣ ଯାତ୍ରୀ ତଥା ନାବିକ ମୃତ୍ୟୁବରଣ କରିଥିଲେ ବୋଲି ବଲାହସସ୍ ନାମକ ବୌଦ୍ଧ ଜାତକରୁ ସୂଚନା ମିଳିଥାଏ । ସାମୁଦ୍ରିକ ନୌବାଣିଜ୍ୟରେ ଧନ ଏବଂ ଜୀବନ ପ୍ରତି ଏପରି ବିପଦ ଏବଂ ଅନିଶ୍ଚିତତା ଯୋଗୁଁ ବୋଧହୁଏ ଓଡ଼ିଆଙ୍କ ମାନସିକତାରେ ନୌବାଣିଜ୍ୟର ପରମ୍ପରା

ଏକ ଧର୍ମୀୟ ରୀତିନୀତିର ମାନ୍ୟତା ପାଇଥିଲା ଏବଂ ସାଧବ ତଥା ବଣିକମାନେ ସୁରୁଖୁରୁରେ ବାଣିଜ୍ୟ ସାରି ରାଜ୍ୟକୁ ଫେରି ଆସିବାକୁ କାର୍ତ୍ତିକ ମାସରେ ଡଙ୍ଗା ଭସେଇ ପ୍ରାର୍ଥନା କରାଯାଉଥିଲା । ତେବେ ଯେଉଁ ବ୍ୟବସାୟରେ କ୍ରମାଗତ ଧନଜୀବନ ହାନୀର ସମ୍ଭାବନା ଅଧିକଥାଏ, ସେହି ବ୍ୟବସାୟରୁ ସମୟକ୍ରମେ ଅନେକ ମୁହଁ ଫେରେଇ ନେବା ଅସମ୍ଭବ ନୁହେଁ ।

ପ୍ରାଚୀନ ଓଡ଼ିଶାର ସାମୁଦ୍ରିକ ନୌବାଣିଜ୍ୟ ପତନର ଆଉ ଏକ ବିଶେଷ କାରଣକୁ ଏଠାରେ ଆଲୋଚନା କରାଯାଇପାରେ । ତାହା ହେଉଛି ୧୦୨୫ ଖ୍ରୀଷ୍ଟାବ୍ଦରେ ଦାକ୍ଷିଣାତ୍ୟ ଚୋଳବଂଶର ଶକ୍ତିଶାଳୀ ଶାସକ ରାଜେନ୍ଦ୍ର ଚୋଳଙ୍କ ଦକ୍ଷିଣ-ପୂର୍ବ ଏସିୟ ଦେଶ ଅଭିଯାନ । ତତ୍କାଳୀନ ତାମିଲ ତଥା ଅନ୍ୟ ଦକ୍ଷିଣ ଭାରତୀୟ ଶାସକମାନଙ୍କର ବୃହତ ନୌବଳ ଥିଲେ ମଧ୍ୟ ସେଠାକାର ବଣିକମାନେ ଦକ୍ଷିଣ-ପୂର୍ବ ଏସିୟ ଦେଶମାନଙ୍କରେ ଓଡ଼ିଆମାନଙ୍କ ପରି ସେତେଟା ନିଜର ବାଣିଜ୍ୟିକ ଆଧିପତ୍ୟ ବିସ୍ତାର କରିପାରିନଥିଲେ । ମାତ୍ର ରାଜେନ୍ଦ୍ର ଚୋଳଙ୍କ ଅଭିଯାନପରେ ସେହି ପ୍ରକ୍ରିୟା ବୃଦ୍ଧି ପାଇଲା । ଦକ୍ଷିଣ ଭାରତର ବଣିକ ଗୋଷ୍ଠୀ ଅଧିକରୁ ଅଧିକ ସଂଖ୍ୟାରେ ସେହିସବୁ ଦେଶରେ ବାଣିଜ୍ୟ ବ୍ୟବସାୟ କରିବାକୁ ଆସିଲେ । ବ୍ୟବସାୟ ସହିତ ସେମାନଙ୍କର ଭାଷା, ସଂସ୍କୃତି ମଧ୍ୟ ସେଠାରେ ଆଧିପତ୍ୟ ବିସ୍ତାର କଲା । ଦିନେ କଳିଙ୍ଗ ବା ଉତ୍କଳବାସୀ ସାଧବ ତଥା ବଣିକମାନଙ୍କ କର୍ତ୍ତୃତ୍ୱରେ ଥିବା ବନ୍ଦର ଓ ବ୍ୟବସାୟୀ ସ୍ଥଳୀଗୁଡ଼ିକ ଧୀରେ ଧୀରେ ତାମିଲ ବଣିକମାନଙ୍କ ଅଧୀନକୁ ଚାଲିଗଲା । ଏକାଦଶ ଶତାବ୍ଦୀର ପ୍ରାରମ୍ଭରୁ ତ୍ୱରାନ୍ୱିତ ହୋଇଥିବା ଏହି ପ୍ରକ୍ରିୟା ଷୋଡ଼ଶ ଶତାବ୍ଦୀ ବେଳକୁ ଦକ୍ଷିଣ-ପୂର୍ବ ଏସିୟ ଦେଶରେ ବାଣିଜ୍ୟର ଚିତ୍ର ବଦଳେଇ ଦେଇଥିଲା । ତେବେ ଏହି ସମୟ ଭିତରେ କେବଳ ତାମିଲ ବା ଦକ୍ଷିଣ ଭାରତୀୟ ବଣିକମାନେ ଯେ ଓଡ଼ିଆ ବଣିକଙ୍କ ପାଇଁ ପ୍ରତିବନ୍ଧକ ସାଜିଥିଲେ ତା ନୁହେଁ ଆରବୀୟ ଏବଂ ଗୁଜୁରାଟି ମୁସଲମାନ୍ ବଣିକମାନେ ମଧ୍ୟ ଆଉ ଏକ ବିପଦ ଭାବରେ ମୁଣ୍ଡ ଟେକିଥିଲେ । ଆରବୀୟ ବଣିକମାନେ ଆରବ ସାଗର ଦେଇ ଅନେକ କାଳରୁ ପଶ୍ଚିମ ଭାରତର ବିଭିନ୍ନ ବନ୍ଦର ସହିତ ବାଣିଜ୍ୟ କାରବାର ଚଳେଇଥିଲେ ଏବଂ କେବେ କେମିତି ଅନିୟମିତ ଭାବରେ ପୂର୍ବ ଉପକୂଳକୁ ଆସୁଥିଲେ । ସେମାନଙ୍କର ମୁଖ୍ୟ ପଣ୍ୟଦ୍ରବ୍ୟ ଭିତରେ ଆଫ୍ରିକୀୟ ଦେଶର ଜିରାଫ ଓ ତୁର୍କୀର ଘୋଡାଭଳି ପଶୁ ମଧ୍ୟ ସ୍ଥାନ ପାଉଥିଲେ । (କୋଣାର୍କ ମନ୍ଦିର ଗାତ୍ରରେ ଜିରାଫ ଏବଂ ଦାଢୀ ଥିବା ଲୋକଙ୍କ ଚିତ୍ର ଏହାର ଏକ ପ୍ରମାଣ) । ଦକ୍ଷିଣ-ପୂର୍ବ ଏସିୟ ଦେଶରୁ ଭାରତକୁ ଆସୁଥିବା ବିଭିନ୍ନ ପ୍ରକାର ମସଲାଜାତ ଦ୍ରବ୍ୟ ଆରବୀୟମାନେ ଭାରତରୁ ନେଉଥିଲେ । ଏସବୁକୁ ସିଧାସଳଖ ଏବଂ କମ୍ ମୂଲ୍ୟରେ ପାଇବା ପାଇଁ ସେମାନେ ମାଳୟ ଏବଂ ଇଣ୍ଡୋନେସୀୟ ଦ୍ୱୀପପୁଞ୍ଜ ସହିତ ପ୍ରତ୍ୟକ୍ଷ ବାଣିଜ୍ୟ କାରବାର ଆରମ୍ଭ କରିଦେଲେ । ସେମାନଙ୍କୁ ସହଯୋଗର ହାତ ବଢାଇଲେ ଗୁଜୁରାଟର ମୁସଲମାନ ବଣିକମାନେ । ବାଣିଜ୍ୟ ସହିତ ସେମାନଙ୍କର ଆଉଏକ ମୁଖ୍ୟ ଉଦ୍ଦେଶ୍ୟ ଥିଲା ଧର୍ମପ୍ରଚାର, ଯେଉଁଥିରେ ସେମାନେ ଅନେକଟା ସଫଳତା ହାସଲ କରିଥିଲେ ଯଦିଓ ଏଥିପାଇଁ ସେମାନଙ୍କୁ ବଳ ପ୍ରୟୋଗ କରିବାକୁ ପଡୁଥିଲା ।

ଏହି ପ୍ରକ୍ରିୟାରେ ସେଠାକାର ବୌଦ୍ଧ ଏବଂ ହିନ୍ଦୁମାନଙ୍କର ସଂଖ୍ୟା କମିଲା ଏବଂ ଓଡ଼ିଶାରୁ ସେଠାକୁ ବାଣିଜ୍ୟ ବ୍ୟବସାୟ କରିବାକୁ ଯାଉଥିବା ବଣିକ ତଥା ସାଧବମାନଙ୍କ ପ୍ରତି ସମର୍ଥନ ଓ ପୃଷ୍ଠପୋଷକତା ମଧ୍ୟ କମିଲା । ତଥାପି ବିଭିନ୍ନ ପ୍ରତିକୂଳ ପରିସ୍ଥିତିକୁ ସାମ୍ନାକରି ଓଡ଼ିଆ ବଣିକମାନେ ନିଜର ବାଣିଜ୍ୟିକ କାରବାର ଚଳେଇଥିଲେ କାରଣ ତତ୍କାଳୀନ ଓଡ଼ିଶାରୁ ରପ୍ତାନୀ ହେଉଥିବା ଦ୍ରବ୍ୟର ଚାହିଦା ସେଠାରେ ସେଯାଏଁ କମିନଥିଲା, ଭାସ୍କୋଡାଗାମାଙ୍କ ଭାରତକୁ ଜଳପଥ ଆବିଷ୍କାର ପରେ ବିଭିନ୍ନ ଇଉରୋପୀୟ ଶକ୍ତିଙ୍କ ଆଗମନ କେବଳ ଓଡ଼ିଶା ନୁହେଁ, ପୂରା ଭାରତର ନୌବାଣିଜ୍ୟିକ ଚିତ୍ରକୁ ବଦଳେଇ ଦେଲା । ଷୋଡଶ ଶତାବ୍ଦୀ ଆରମ୍ଭରୁ ପ୍ରଥମେ ପର୍ତ୍ତୁଗୀଜମାନେ ଭାରତ ମହାସାଗରରେ ନିଜର ପ୍ରଭୁତ୍ୱ ବିସ୍ତାର କଲେ, ତା'ପରେ ଇଂରେଜ, ଡଚ୍, ଓଲନ୍ଦାଜ ଫରାସୀ ଇତ୍ୟାଦି ନୌବାଣିଜ୍ୟିକ ଶକ୍ତିସମ୍ପନ୍ନ ରାଷ୍ଟ୍ରମାନେ କଳେବଳେ କୌଶଳେ ଆରବସାଗର ଓ ବଙ୍ଗୋପସାଗରକୁ ଲାଗିଥିବା ଭୌଗଳିକ ଭୂଖଣ୍ଡ ସହିତ ବାଣିଜ୍ୟ ବ୍ୟବସାୟ ନାଁରେ ପରସ୍ପର କଳହରେ ମାତି ଅନ୍ୟମାନଙ୍କର ଅଶେଷ କ୍ଷତି ସାଧନ କଲେ । ପର୍ତ୍ତୁଗୀଜ ବଣିକମାନେ ସମୁଦ୍ର ପଥରେ ବାଣିଜ୍ୟ ବ୍ୟବସାୟ ସହିତ କ୍ରୀତଦାସ ବ୍ୟବସାୟ ଏବଂ କେବେକେବେ ସ୍ଥାନୀୟ ଶାସକ ତଥା ବନ୍ଦର ଅଧିକାରୀମାନଙ୍କୁ ପ୍ରଲୋଭିତ କରି ବାଣିଜ୍ୟିକ ଅଧିକାର ଓ ଅନୁମତି ହାସଲ ପାଇଁ ନାରୀ ଚାଲାଣ ଭଳି ଘୃଣ୍ୟ କାର୍ଯ୍ୟରେ ଲିପ୍ତ ରହୁଥିଲେ । ଏଥିପାଇଁ ସେମାନଙ୍କୁ ଅନେକ ସମୟରେ ଅନ୍ୟ ଉପରେ ବଳ ପ୍ରୟୋଗ କରିବାକୁ ପଡୁଥିଲା । ଏପରିକି ମଝି ସମୁଦ୍ରରେ ସେମାନେ ବାଣିକମାନଙ୍କୁ ହତ୍ୟା କରି ପଣ୍ୟଦ୍ରବ୍ୟ ଲୁଣ୍ଠନ କରିବାକୁ ପଛାଉନଥିଲେ । ସେମାନଙ୍କର ଏପରି ବର୍ବରତା ଏବଂ ଜଳଭାଗରେ ଦସ୍ୟୁବୃତ୍ତି ଆଗରେ ସାଧୁତାର ସହ ବାଣିଜ୍ୟ କରୁଥିବା ଓଡ଼ିଆ ସାଧବ ତଥା ବଣିକମାନେ ତିଷ୍ଠି ନପାରିବା ସ୍ୱାଭାବିକ ।

ପୁନଶ୍ଚ ଇଂରେଜ ଓ ଅନ୍ୟ ଇଉରୋପୀୟ ବଣିକ ଜାତିମାନଙ୍କ ଦ୍ୱାରା ବଙ୍ଗୋପସାଗର ଅଧିକୃତ ହେବା ପରେ ସେମାନଙ୍କ ସହ ପ୍ରତିଯୋଗିତାରେ ପଛରେ ପଡିଗଲେ ଓଡ଼ିଆ ବଣିକ । କ୍ରମେ ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ, ଥାଇଲାଣ୍ଡ, ମ୍ୟାନମାର, ମାଲେସିଆ ପ୍ରଭୃତି ଦକ୍ଷିଣ–ପୂର୍ବ ଏସିୟ ଦେଶକୁ ଓଡ଼ିଆ ସାଧବ ପୁଅର ବୋଇତ ଯିବା ଆସିବା କମିଆସିଲା । ପଞ୍ଚଦଶ ଏବଂ ଷୋଡଶ ଶତାବ୍ଦୀ ବେଳକୁ ଦକ୍ଷିଣ–ପୂର୍ବ ଏସିୟ ଦେଶମାନଙ୍କରେ ବାଣିଜ୍ୟରେ କିପରି ପ୍ରତିଯୋଗିତା ଚାଲିଥିଲା ତାର ଏକ ଚିତ୍ର ପର୍ତ୍ତୁଗୀଜ୍ ପ୍ରର୍ଯ୍ୟଟକ ଟୋମେ ପିରେଜଙ୍କ ବିବରଣୀରୁ ମିଳିଥାଏ । ମାଳୟର ମଲ୍ଲାକା ପ୍ରଣାଳୀ ନିକଟରେ ଥିବା ବନ୍ଦରରେ ସେତେବେଳେ ୫୦ଟି ଭାଷାଭାଷୀର ବଣିକମାନେ ବାଣିଜ୍ୟ ବ୍ୟବସାୟ କରୁଥିଲେ, ଯେଉଁଥିରେ ଓଡ଼ିଆମାନେ ଥିଲେ ମଧ୍ୟ ସେମାନଙ୍କ ସଂଖ୍ୟା ଅପେକ୍ଷାକୃତ କମ୍‌ଥିଲା, ଅଥଚ ଏହି ମଲ୍ଲାକା ପ୍ରଣାଳୀରେ ସର୍ବାଧିକ ଓଡ଼ିଆମାନଙ୍କ ବୋଇତ ହିଁ ଯିବା ଆସିବା କରୁଥିଲା ।

ଏସବୁ ବ୍ୟତୀତ ଆଉ କେତେକ ଛୋଟ ବଡ କାରଣକୁ ପ୍ରାଚୀନ ଓଡ଼ିଶାର ଗୌରବମୟ ସାମୁଦ୍ରିକ ନୌବାଣିଜ୍ୟର ପତନ ପାଇଁ ଦାୟୀ କରାଯାଇପାରେ । ସେଥିମଧ୍ୟରୁ ଗୋଟିଏ ହେଲା ଓଡ଼ିଶାରେ ବଣିକମାନଙ୍କ ପ୍ରତି ନିଜ ରାଜ୍ୟରେ ରାଜ ପୃଷ୍ଠପୋଷକତାର ଅଭାବ । ପଞ୍ଚଦଶ ଶତାବ୍ଦୀ ବେଳକୁ ଓଡ଼ିଶାର ଗଜପତି ରାଜାମାନଙ୍କର ଶାସନର ସମୟ । ବାହ୍ୟଶକ୍ତି କବଳରୁ ରାଜ୍ୟକୁ ସୁରକ୍ଷା ଦେବା ପାଇଁ ଗଜପତି ରାଜାମାନଙ୍କ ପାଖରେ କିଛିଟା ନୌବଳ ଥିବାର ପ୍ରମାଣ ମିଳୁଥିଲେ ମଧ୍ୟ ନୌବାଣିଜ୍ୟ ପାଇଁ ସେମାନଙ୍କର କୌଣସି ପ୍ରକାର ଅବଦାନ ଥିବା ବିଷୟ ଲୋକଲୋଚନକୁ ଆସିନି । ଏହି ସମୟରେ ଓଡ଼ିଶାକୁ ଆଫ୍‌ଗାନ୍ ଶକ୍ତିର ଭୟ ରହିଥିଲା ଏବଂ ସେମାନେ ଓଡ଼ିଶାର କିଛିଅଂଶ ଅଧିକାର ମଧ୍ୟ କରି ନେଇଥିଲେ । ସେମାନଙ୍କ ପରେ ମୋଗଲ ଏବଂ ମରହଟ୍ଟାମାନେ ଶାସନ କ୍ଷମତା ଅଧିକାର କଲେ । ରାଜନୈତିକ ଅସ୍ଥିରତା ଏବଂ କ୍ଷମତା ପରିବର୍ତ୍ତନ ବ୍ୟବସାୟ ବାଣିଜ୍ୟ ପାଇଁ ଅନେକ ସମୟରେ ଅନୁକୂଳ ହୋଇନଥାଏ । କୌଣସି ଅଞ୍ଚଳ ବାହ୍ୟଶକ୍ତି ଦ୍ୱାରା ଶାସିତ ହେଲେ ପ୍ରଜା ଏବଂ ବ୍ୟବସାୟୀମାନେ ଅତ୍ୟଧିକ କରଜନିତ ଅର୍ଥନୈତିକ ଶୋଷଣର ଶିକାର ହୁଅନ୍ତି । ଯାହା ଓଡ଼ିଆ ବଣିକମାନଙ୍କ କ୍ଷେତ୍ରରେ ଘଟିଥିବାର ସମ୍ଭାବନାକୁ ଏଡାଇ ଦିଆଯାଇନପାରେ ।

ଓଡ଼ିଶାର ସାମୁଦ୍ରିକ ନୌବାଣିଜ୍ୟ ପତନର ଆଉ ଏକ ବିଶେଷ କାରଣ ହେଉଛି କାଳକ୍ରମେ ନୌବାଣିଜ୍ୟ ସହ ଜଡିତ ଦକ୍ଷ ଲୋକମାନଙ୍କର ଅଭାବ । ବୋଇତ ବା ଜାହାଜ ତିଆରିଠାରୁ ଆରମ୍ଭ କରି ଦିଗନିର୍ଣ୍ଣୟ ଏବଂ ନୌଚାଳନା ପର୍ଯ୍ୟନ୍ତ ବିଭିନ୍ନ ବିଭାଗରେ ତାଲିମ୍ ପ୍ରାପ୍ତ ଏବଂ ଦକ୍ଷ ଲୋକମାନେ ଜାତି ନିର୍ବିଶେଷରେ ନିଯୁକ୍ତ ହେଉଥିଲେ । ଉତ୍କଳୀୟ ନୌବାଣିଜ୍ୟ ଏକ ସାମୁଦ୍ରିକ ଉଦ୍ୟମର ଫଳଶ୍ରୁତି ଥିଲା କହିଲେ ଭୁଲ ହେବନି । ତେବେ ଏଥିସହିତ ସମ୍ପୃକ୍ତ କିଛିଲୋକଙ୍କ ବାରମ୍ବାର ସମୁଦ୍ର ଯାତ୍ରା ନକରି ହୁଏତ ନିଜ ପରିବାର ସହିତ କିମ୍ବା ଦୂରଦେଶରେ ବୈବାହିକ ସମ୍ପର୍କ ଦ୍ୱାରା ପରିବାର ଗଠନ କରି ସେଠାରେ ସ୍ଥାୟୀ ଭାବରେ ରହିଯାଉଥିଲେ । ଅବଶ୍ୟ ଏହି ପ୍ରକ୍ରିୟାରେ କଳିଙ୍ଗ ବା ଉତ୍କଳର କଳା ସଂସ୍କୃତି ସେଠାରେ ବିସ୍ତାର ଲାଭ କରୁଥିଲା ଏବଂ ଏବେବି ସେହି ସଂସ୍କୃତିର ଛାପ ସେସବୁ ଦେଶମାନଙ୍କରେ ଦେଖିବାକୁ ମିଳେ । କିନ୍ତୁ ଏହାଦ୍ୱାରା ରାଜ୍ୟ ନୌବାଣିଜ୍ୟ ସହିତ ସମ୍ପୃକ୍ତ କୁଶଳୀ ଲୋକମାନଙ୍କୁ ମଧ୍ୟ ହରାଉଥିଲା । ଏହି ସମସ୍ୟା ସହିତ ସମ୍ପୃକ୍ତ ଆଉଏକ ବିଶେଷ କଥାହେଲା ନୌବାଣିଜ୍ୟ ପାଇଁ ତିଆରି ହେଉଥିବା ବିଭିନ୍ନ ଆକାରର ଏବଂ କ୍ଷମତା ବିଶିଷ୍ଟ ବୋଇତ ବା ଜାହାଜ ତିଆରି ଜ୍ଞାନକୌଶଳ ପରବର୍ତ୍ତୀ ପିଢି ପାଖରେ ପହଞ୍ଚିନପାରିବା । ଏହାର ନିର୍ଦ୍ଦିଷ୍ଟ କାରଣ ଅଜଣା । ହୁଏତ ତତ୍କାଳୀନ ଓଡ଼ିଶାର ବଡ ବଡ ବନ୍ଦର ବା ପୋତାଶ୍ରୟଗୁଡିକ ବିଭିନ୍ନ ପ୍ରାକୃତିକ କାରଣରୁ ଅକାମୀ ହୋଇଯିବାରୁ କାରିଗରମାନଙ୍କୁ ଅପେକ୍ଷାକୃତ ଛୋଟବନ୍ଦରଗୁଡିକରେ ପ୍ରବେଶ ଓ ପ୍ରସ୍ଥାନ କରିପାରିବା ଭଳି ପୋତ ନିର୍ମାଣ କରିବାକୁ ପଡୁଥିବ। ଏହି ପ୍ରକ୍ରିୟା କ୍ରମାଗତ ଭାବରେ ଚାଲିବା ଫଳରେ ତତ୍ ସମ୍ପର୍କିତ ଜ୍ଞାନକୌଶଳ ପରବର୍ତ୍ତୀ ପିଢିକୁ ସଂଚାରିତ ହୋଇପାରିନଥିବ । ପରିସ୍ଥିତି ଏପରି ହେଉଥିଲା ଯେ, ବଡ ପୋତଗୁଡିକ ମରାମତି ଅଭାବରୁ ଅବ୍ୟବହୃତ ହୋଇପଡୁଥିଲା ଏବଂ କିଛିକାଳ ପରେ ତାହା ଜାଳେଣୀ କାଠ ପାଲଟି ଯାଉଥିଲା । ଓଡ଼ିଶା ନିର୍ମିତ ବୋଇତଗୁଡିକର କରୁଣ ପରିଣତି ସମ୍ପର୍କରେ ବ୍ୟାସକବି ଫକିର ମୋହନ ସେନାପତିଙ୍କର ରଚନାରୁ ପଢିବାକୁ ମିଳିଥାଏ ।

ଓଡ଼ିଶାରୁ ବଣିକମାନେ ଯେଉଁସବୁ ଆବଶ୍ୟକୀୟ ଦ୍ରବ୍ୟ ଦକ୍ଷିଣ–ପୂର୍ବ ଏସିୟ ଦେଶକୁ ରପ୍ତାନୀ କରୁଥିଲେ ସେଥିମଧ୍ୟରୁ ମୁଖ୍ୟ ଥିଲା ବିଭିନ୍ନ କୃଷିଜାତ ସାମଗ୍ରୀ ଏବଂ ସୂକ୍ଷ୍ମ କାର୍ପାସ ବସ୍ତ୍ର । ଇଉରୋପୀୟ ଶକ୍ତିମାନେ ଯେତେବେଳେ ନିଜର ପ୍ରଭାବ ବିସ୍ତାର କଲେ ସେମାନେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ସେସବୁକୁ ସଂଗ୍ରହ କରି ସେଠାରେ ବିକ୍ରିକଲେ ଏବଂ ସେଥିପାଇଁ ନିଜସ୍ୱ ବାଣିଜ୍ୟିକ ରଣକୌଶଳ ପ୍ରସ୍ତୁତ କରି ସଫଳ ହେଲେ । କୌଣସି ଏକ ଲାଭଜନକ ବ୍ୟବସାୟ ପାଇଁ ସମୟକ୍ରମେ ବହୁମୁଖୀ ପ୍ରତିଯୋଗିତା

ବା ପ୍ରତିଦ୍ୱନ୍ଦିତା ହେବା ଏକ ସ୍ୱାଭାବିକ ବ୍ୟବସାୟିକ ପ୍ରକ୍ରିୟା । ଏହି ପ୍ରକ୍ରିୟାରେ ଯେଉଁମାନେ ନିଜକୁ ସବୁ ଦୃଷ୍ଟିରୁ ସବଳ ଏବଂ ସକ୍ଷମ ସାବ୍ୟସ୍ତ କରିପାରନ୍ତି ସେମାନେ ତିଷ୍ଠିରୁହନ୍ତି ଏବଂ ଅନ୍ୟମାନେ ପଛରେ ପଡିଯାଆନ୍ତି କିମ୍ବା ବିଲୁପ୍ତ ହୋଇଯାଆନ୍ତି । ଠିକ୍ ଏହାହିଁ ଘଟିଥିଲା ଓଡ଼ିଆ ବଣିକମାନଙ୍କ କ୍ଷେତ୍ରରେ । ଏଠାକାର ଖାଦ୍ୟଶସ୍ୟ, ବସ୍ତ୍ର ଇତ୍ୟାଦି ପଣ୍ୟଦ୍ରବ୍ୟକୁ ଇଉରୋପୀୟ ଶକ୍ତିମାନେ ଦକ୍ଷିଣ–ପୂର୍ବ ଏସିୟ ଦେଶ ସିଂହଳ ଓ ମାଳଦ୍ୱୀପ ଇତ୍ୟାଦିକୁ ରପ୍ତାନୀ କରିବା ଫଳରେ ଓଡ଼ିଆ ବଣିକଙ୍କ ପାଇଁ ଅତି ଦରକାରୀ ରପ୍ତାନୀଯୋଗ୍ୟ ସାମଗ୍ରୀ ଆଉ କିଛି ନଥିଲା । ଏତଦ୍ ବ୍ୟତୀତ ଇଂରେଜ ଓ ଫରାସୀମାନେ ଓଡ଼ିଶାବ୍ୟତୀତ ପଡୋଶୀ 'ପଶ୍ଚିମବଙ୍ଗ'ର ବିଭିନ୍ନ ଅଞ୍ଚଳରୁ କପଡା ବା ବସ୍ତ୍ର ସଂଗ୍ରହ କରି ଦକ୍ଷିଣ–ପୂର୍ବ ଏସିୟ ଦେଶର ଲୋକଙ୍କର ଆବଶ୍ୟକତା ମଧ୍ୟ ମେଣ୍ଟାଉଥିଲେ ଯାହା ଫଳରେ ଓଡ଼ିଶାର ଉତ୍ପାଦିତ ବସ୍ତ୍ରର ଚାହିଦା କ୍ରମଶଃ କମିଯିବା ସ୍ୱାଭାବିକ । ଏହିପରି ଅନେକ ଛୋଟ ବଡ କାରଣରୁ ଓଡ଼ିଆମାନେ ନୌବାଣିଜ୍ୟରେ ପଛେଇ ଗଲେ ।

ପ୍ରାଚୀନ ଓଡ଼ିଶାର ନୌବାଣିଜ୍ୟ ଏହି ଭୂଖଣ୍ଡକୁ ବିଶ୍ୱ ଦରବାରରେ ପରିଚିତ କରାଇଥିଲା, କହିଲେ ଭୁଲ ହେବନି । ଏହାର ପତନକୁ ଓଡ଼ିଶାର ଅର୍ଥନୈତିକ ଅବନତିର ଏକ ପ୍ରମୁଖ କାରଣ ବୋଲି ମଧ୍ୟ କୁହାଯାଇପାରେ । ତେବେ କୌଣସି ପ୍ରକ୍ରିୟାର ଅବଧି ଯେତେ ଲମ୍ବା ହେଉନା କାହିଁକି ତା'ର ଉତ୍‌ଥାନ ଏବଂ ପତନ ବି ଇତିହାସର ଏକ ନିୟମ । କର୍ପୂର ଉଡିଯାଇଛି କନା ପଡିରହିଛି ନ୍ୟାୟରେ ଆମେ ଏବେ ଆମର ଅତୀତକୁ, ଅତୀତର ଐଶ୍ୱର୍ଯ୍ୟମୟ, ଗୌରବାବହ ପରମ୍ପରାକୁ ଝୁରି ହେଉଛେ, କିନ୍ତୁ ସେହି ଅତୀତରୁ ଆମେ ଯଦି କିଛି ପ୍ରେରଣା ଲାଭ କରନ୍ତୁ ତା'ହେଲେ ଆମର ଭବିଷ୍ୟତ ବି ଆମପାଇଁ ଗୌରବ ଆଣିପାରନ୍ତା ।

ଗ୍ରା/ପୋ– ସର୍ଦ୍ଧୋଳା
ଭା– କନକପୁର,
ଜି– ଜଗତସିଂହପୁର–୭୫୪୧୩୬

**ସହାୟକ ଗ୍ରନ୍ଥସୂଚୀ**

୧) ଓଡ଼ିଆ ଜାତିର ଇତିହାସ– ଡଃ ନବୀନ କୁମାର ସାହୁ
୨) ଆକାମାବୋଇ– ଆଶୁତୋଷ ପ୍ରସାଦ ପଟ୍ଟନାୟକ
୩) ଅତୀତ ଓଡ଼ିଶାର ନୌବାଣିଜ୍ୟ–ଲଲାଟେନ୍ଦୁ ଦାସ ମହାପାତ୍ର
୪) ହିଷ୍ଟ୍ରି ଅଫ୍ ଓରିଶା– ରାଖାଲ ଦାସ ବାନାର୍ଜୀ
୫) ପୋର୍ଟ୍ସ ଆଣ୍ଡ ମାରିଟାଇମ୍ ଆକ୍ଟିଭିଟିଜ୍ ଅଫ୍ ଓରିଶା– ଏସ୍. ତ୍ରିପାଠୀ
୬) ଫକୀରମୋହନ ଗ୍ରନ୍ଥାବଳୀ ଏବଂ ଆତ୍ମଚରିତ

# ଶିକ୍ଷା ସହାୟକ ଓ କନିଷ୍ଠ ଶିକ୍ଷକମାନଙ୍କର ଦରମା ୫୨୦୦ ଟଙ୍କା ଓ ୭୦୦୦ ଟଙ୍କାକୁ ବୃଦ୍ଧି

## –ଗଣଶିକ୍ଷା ମନ୍ତ୍ରୀ

ଶିକ୍ଷକମାନଙ୍କର ସର୍ବବିଧ ଉନ୍ନତି ପାଇଁ ରାଜ୍ୟ ସରକାର ଅଙ୍ଗୀକାରବଦ୍ଧ । ଏହି ଆଭିମୁଖ୍ୟକୁ ଦୃଷ୍ଟିରେ ରଖି ନଭେମ୍ବର ୩୦ ତାରିଖ ଦିନ ବିଧାନସଭା କକ୍ଷରେ ଗଣଶିକ୍ଷା ମନ୍ତ୍ରୀ ରାଜ୍ୟ ସରକାରଙ୍କ ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିକ୍ରମେ ସରକାରୀ ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ କାର୍ଯ୍ୟ କରୁଥିବା ଶିକ୍ଷା ସହାୟକ ଓ କନିଷ୍ଠ ଶିକ୍ଷକମାନଙ୍କ ପାରିଶ୍ରମିକ ବୃଦ୍ଧି କରାଯାଇଛି । ଏହା ଦୀର୍ଘଦିନରୁ ସରକାରଙ୍କର ବିଚାରାଧୀନ ଥିଲା । ସରକାର ଶିକ୍ଷା ସହାୟକ ଏବଂ କନିଷ୍ଠ ଶିକ୍ଷକମାନଙ୍କ ସମସ୍ୟାକୁ ସହୃଦୟତାର ସହିତ ବିଚାର କରି ଶିକ୍ଷା ସହାୟକମାନଙ୍କର ମାସିକ ପାରିଶ୍ରମିକ ୪୦୦୦ରୁ ୫୨୦୦ ଟଙ୍କାକୁ ଏବଂ କନିଷ୍ଠ ଶିକ୍ଷକମାନଙ୍କ ମାସିକ ପାରିଶ୍ରମିକ ୪୫୦୦ରୁ ୭୦୦୦ ଟଙ୍କାକୁ ବୃଦ୍ଧି କରିଛନ୍ତି । ସୂଚନାଯୋଗ୍ୟ ଯେ, ଯେଉଁ ଶିକ୍ଷା ସହାୟକମାନେ ନିରବଚ୍ଛିନ୍ନ ଓ ସନ୍ତୋଷଜନକ ଭାବେ ତିନିବର୍ଷ ଧରି କାର୍ଯ୍ୟ କରି କନିଷ୍ଠ ଶିକ୍ଷକ ହୋଇଥିବେ, ସେମାନଙ୍କ ମାସିକ ପାରିଶ୍ରମିକ ୪୫୦୦ରୁ ୭୦୦୦ ଟଙ୍କାକୁ ବୃଦ୍ଧି କରାଯାଇଛି । ଏହି ପାରିଶ୍ରମିକ ବୃଦ୍ଧି ଦ୍ୱାରା ୩୩,୦୪୪ ଶିକ୍ଷା ସହାୟକ ଏବଂ ୩୬,୦୦୦ କନିଷ୍ଠ ଶିକ୍ଷକ ଉପକୃତ ହେବେ । ଉକ୍ତ ବର୍ଦ୍ଧିତ ପାରିଶ୍ରମିକ ୧.୧୧.୨୦୧୩ ତାରିଖ ଠାରୁ ଲାଗୁ ହେବ । ଏଥିପାଇଁ ବାର୍ଷିକ ୧୭୬.୭୬ କୋଟି ଟଙ୍କା ଅଧିକ ବ୍ୟୟ ହେବ ବୋଲି ମନ୍ତ୍ରୀଙ୍କ ସୂତ୍ରରୁ ପ୍ରକାଶ ।

# ଓଡ଼ିଶାର ଗୌରବୋଜ୍ଜ୍ୱଳ ନୌବାଣିଜ୍ୟ

ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର

ପ୍ରାଚୀନ ଯୁଗରୁ ନୌବାଣିଜ୍ୟ କ୍ଷେତ୍ରରେ ଓଡ଼ିଆମାନେ ଥିଲେ ଅଗ୍ରଣୀ । ବିଶେଷତଃ ଓଡ଼ିଶାର ସାଧବ ପୁଅମାନେ ନୌବାଣିଜ୍ୟ ଦୃଷ୍ଟିରୁ ଥିଲେ ଭାରତର ଗର୍ବ ଓ ଗୌରବ । ନୌବହର ଜାତି ରୂପେ ଓଡ଼ିଆମାନେ ବିଶ୍ୱ ଦରବାରରେ ସ୍ୱତନ୍ତ୍ର ଆସନ ଅଳଙ୍କୃତ କରିପାରି ଥିଲେ । ଉଲ୍ଲେଖଯୋଗ୍ୟ ଯେ, ଓଡ଼ିଶାର ସୁଦୀର୍ଘ ସମୁଦ୍ର ଉପକୂଳରେ ଅନେକ ପ୍ରାକୃତିକ ବନ୍ଦର ରହିଥିଲା । ଏହି ବନ୍ଦରଗୁଡିକ ସୁନାବ୍ୟା ନଦୀ ଦ୍ୱାରା ଆଭ୍ୟନ୍ତରୀଣ ଅଞ୍ଚଳ ସହିତ ସଂଯୁକ୍ତ ଥିଲା । ଫଳତଃ ନଦୀ ପଥରେ ବାଣିଜ୍ୟ ସାମଗ୍ରୀ ଅନାୟାସରେ ବନ୍ଦରମାନଙ୍କରେ ପହଞ୍ଚି ପାରୁଥିଲା । ଏହିସବୁ ବନ୍ଦରରୁ ବିଦେଶକୁ ପ୍ରଚୁର ପରିମାଣରେ ହାତୀଦାନ୍ତ, ସୂକ୍ଷ୍ମବସ୍ତ୍ର, ପଟ୍ଟବସ୍ତ୍ର, ସୌଖୀନ ହସ୍ତଶିଳ୍ପ ସାମଗ୍ରୀ, ମୂଲ୍ୟବାନ ରତ୍ନପଥର, ଚାଳୁଆ ଓ ପାନପତ୍ର ପ୍ରଭୃତି ବିଦେଶକୁ ରପ୍ତାନୀ କରାଯାଉଥିଲା ଏବଂ ସୁବର୍ଣ୍ଣ, ମୁକ୍ତା, ରୂପା, ତମ୍ବା, ଅଗୁରୁ ତଥା ମୂଲ୍ୟବାନ ମସଲା ପ୍ରଭୃତି ବିଦେଶରୁ ଆମଦାନୀ ହେଉଥିଲା । ଏହି ବହିର୍ବାଣିଜ୍ୟ ମାଧ୍ୟମରେ ଓଡ଼ିଆମାନେ ଦରିଆପାରି ଦୂରଦୂରାନ୍ତ ଦେଶମାନଙ୍କରୁ ଅସରନ୍ତି ଧନଦୌଲତ ବୋହିଆଣି ଓଡ଼ିଶାକୁ ସମୃଦ୍ଧିଶାଳୀ କରିଥିଲେ । ଏତଦ୍ ଭିନ୍ନ ନଦୀ ମାଧ୍ୟମରେ ଉପକୂଳ ଅଞ୍ଚଳର ଦ୍ରବ୍ୟ ମାଳଅଞ୍ଚଳକୁ ତଥା ପାର୍ବତ୍ୟାଞ୍ଚଳର ଦ୍ରବ୍ୟ ଉପକୂଳ ଅଞ୍ଚଳକୁ ପରିବହନ ହୋଇ ଅନ୍ତର୍ବାଣିଜ୍ୟ ଅବ୍ୟାହତ ରହିଥିଲା । ଓଡ଼ିଆ ଲୋକକଥାରେ ସାଧବପୁଅ କାହାଣୀ ବହୁଳ ଭାବରେ ବର୍ଣ୍ଣିତ। ଓଡ଼ିଆ ସାହିତ୍ୟରେ ସାମୁଦ୍ରିକ ବାଣିଜ୍ୟର ଗୌରବୋଜ୍ଜ୍ୱଳ ଚିତ୍ର ସ୍ୱର୍ଣ୍ଣାକ୍ଷରରେ ଅଙ୍କିତ । ଅନେକ ବିଦେଶୀ ଭୌଗଳିକ, ଐତିହାସିକ ତଥା ପରିବ୍ରାଜକ ଓଡ଼ିଶାବାସୀଙ୍କର ସାମୁଦ୍ରିକ ବାଣିଜ୍ୟ ବ୍ୟବସାୟର ଭୂୟସୀ ପ୍ରଶଂସା କରିଯାଇଛନ୍ତି । ସମୃଦ୍ଧ ସାମୁଦ୍ରିକ ବାଣିଜ୍ୟ ଯୋଗୁଁ ଓଡ଼ିଶାର ରାଜାଙ୍କୁ ପ୍ରାଚୀନ ସାହିତ୍ୟରେ ମହୋଦଧିପତି ବୋଲି ଉଲ୍ଲେଖ କରାଯାଇଛି । ପ୍ରାୟ ପ୍ରତ୍ୟେକ ଓଡ଼ିଆ ନୌବାଣିଜ୍ୟ ଓ ସାଧବପୁଅ କଥା ପଢିଲେ ଜାତୀୟ ଗର୍ବରେ ଉଲ୍ଲସିତ ହୋଇଥାନ୍ତି ।

ପୌରାଣିକ ଓ ଐତିହାସିକ ଯୁଗରେ ଓଡ଼ିଶା ଭୂଖଣ୍ଡ ଉଡ୍ର, କଳିଙ୍ଗ, ତ୍ରିକଳିଙ୍ଗ, ଉତ୍‌କଳିଙ୍ଗ, ଉତ୍କଳ, ତୋଷଳ, କୋଶଳ, କଙ୍ଗୋଦ ପ୍ରଭୃତି ବହୁ ନାମରେ ପରିଚିତ ଥିଲା । ପ୍ରାଚୀନ କାଳରେ ପୂର୍ବମହୋଦଧି କଳିଙ୍ଗ ଉପକୂଳରେ ଥିବାରୁ ଏହାକୁ କଳିଙ୍ଗ ସାଗର କୁହାଯାଉଥିଲା, ଯାହାକି ସମ୍ପ୍ରତି ବୈଦେଶିକଙ୍କ ଦ୍ୱାରା ବଙ୍ଗୋପସାଗର ନାମରେ ଚିହ୍ନିତ । ଗଙ୍ଗାନଦୀର ମୁହାଣଠାରୁ ଗୋଦାବରୀର ମୁହାଣ ମଧ୍ୟରେ କଳିଙ୍ଗ ସାଗରରେ ବହୁ ପ୍ରାକୃତିକ ବନ୍ଦର ରହିଥିଲା । ସେହିସବୁ ବନ୍ଦରମାନଙ୍କ ମଧ୍ୟରେ ତାମ୍ରଲିପ୍ତ, ଅଜିତ ପିପିଲି, ଦଶାର୍ଣ୍ଣ, ଚେଳିତୋଳ, ଦନ୍ତପୁରୀ, ମାଣିକପାଟଣା, ପାଲୁର, ଗଞ୍ଜାମ ପ୍ରଭୃତି ବିଶ୍ୱ ପ୍ରସିଦ୍ଧିଲାଭ କରିଥିଲା । ପୁରୀ, ବାଲେଶ୍ୱର, ମାଣିକପାଟଣା ପ୍ରଭୃତି ସ୍ଥାନରୁ ପ୍ରାଚୀନ ବୈଦେଶିକ ମୁଦ୍ରା ମିଳି ଥିବାରୁ ପ୍ରମାଣିତ ହୁଏ, ଓଡ଼ିଶାବାସୀଙ୍କର ଦରିଆପାରି ଦେଶମାନଙ୍କ ସହିତ ଖ୍ରୀଷ୍ଟପୂର୍ବ କାଳରୁ ସାମୁଦ୍ରିକ ବାଣିଜ୍ୟ ସମ୍ପର୍କ ରହିଥିଲା । ବୌଦ୍ଧ ଧର୍ମଯାଜକ ବିଜ୍ଞଦତ୍ତ ସ୍ୱରଚିତ ବୁଦ୍ଧ ଜୀବନ ଚରିତରେ ଓଡ଼ିଶାର ଅଜିତ ବନ୍ଦର ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ତାଙ୍କ ବର୍ଣ୍ଣନାନୁସାରେ ବ୍ରହ୍ମଦେଶର ଦୁଇଭାଇ ବୋଇତରେ ପାଞ୍ଚଶହ ଶଗଡ ପଣ୍ୟ ଦ୍ରବ୍ୟ ଆଣି ଅଜିତ ବନ୍ଦରରେ ପହଞ୍ଚିଥିଲେ ଏବଂ ସେଠାରୁ ସ୍ଥଳ ପଥରେ ମଗଧ ଯାତ୍ରା କରିଥିଲେ । ଏହା ଖ୍ରୀଷ୍ଟପୂର୍ବ ପଞ୍ଚମ-ଷଷ୍ଠ ଶତାବ୍ଦୀ ପ୍ରସଙ୍ଗ ହେଲେ ହେଁ ଅଦ୍ୟାବଧି ଅଜିତ ବନ୍ଦର ପରିଚିହ୍ନିତ ହୋଇପାରିନାହିଁ । ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ମଗଧରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଶାସନ ପ୍ରତିଷ୍ଠା କରି ସମଗ୍ର ଭାରତ ଜୟ କଲେ ହେଁ ସମୃଦ୍ଧିଶାଳୀ ଓଡ଼ିଶା ଜୟ

କରିପାରି ନଥିଲେ । ତଦୀୟମନ୍ତ୍ରୀ ଚାଣକ୍ୟ ସ୍ୱରଚିତ ଅର୍ଥଶାସ୍ତ୍ରରେ ସମୁଦ୍ରଯାତ୍ରା ଓ ପୋତନିର୍ମାଣ ସମ୍ପର୍କରେ ସବିଶେଷ ସୂଚନା ରହିଛି । ଅନୁମିତ ହୁଏ, କଳିଙ୍ଗ ବା ଓଡ଼ିଶାବାସୀଙ୍କ ନୌଯାତ୍ରା ଓ ପୋତନିର୍ମାଣ ହିଁ ଚାଣକ୍ୟଙ୍କ ଦ୍ୱାରା ବର୍ଣ୍ଣିତ, କାରଣ ଚାଣକ୍ୟଙ୍କ ଉଲ୍ଲେଖ ଅନୁଯାୟୀ ଆଷାଢ଼ ମାସଠାରୁ କାର୍ତ୍ତିକ ମାସ ନୌଯାତ୍ରା ନିମିତ୍ତ ପ୍ରଶସ୍ତ । ଏବେ ମଧ୍ୟ ଓଡ଼ିଶାରେ କାର୍ତ୍ତିକ ମାସରେ ବୋଇତ ବନ୍ଦାଣ ହେଉଛି । ଏଥିରୁ ସ୍ପଷ୍ଟ ପ୍ରମାଣ ମିଳେ ଯେ ଓଡିଶାରେ ଖ୍ରୀଷ୍ଟପୂର୍ବ କାଳରୁ ସାମୁଦ୍ରିକ ନୌବାଣିଜ୍ୟ ଅବ୍ୟାହତ ଥିଲା, ଯାହାକି ସୁଦୀର୍ଘ ପରମ୍ପରାରେ ପ୍ରତିଫଳିତ । ଯାତ୍ରା ଆରମ୍ଭ ଓ ପ୍ରତ୍ୟାବର୍ତ୍ତନ ସମୟରେ ସାଧବବୋହୂମାନେ ଅର୍ଘ୍ୟଥାଳି ନେଇ, ହୁଳହୁଳି ପକାଇ ବୋଇତ ବନ୍ଦାଉ ଥିଲେ । ବର୍ତ୍ତମାନ ଓଡ଼ିଆଙ୍କ ସାମୁଦ୍ରିକ ବାଣିଜ୍ୟ ଲୋପ ପାଇଥିଲେ ହେଁ ପୂର୍ବଗୌରବର ପରମ୍ପରା ବିଦ୍ୟମାନ । ଅଧିକନ୍ତୁ, ସାର୍ବଜନୀନ, ପାରିବାରିକ ଓ ବ୍ୟକ୍ତିଗତ ଭାବରେ ଏହା ପାଳିତ ହୋଇ ଜାତୀୟ ମହୋତ୍ସବ ସ୍ୱରୂପରେ ପ୍ରତିଭାତ।

ପ୍ରଥମ ଶତାବ୍ଦୀ ଥିଲା ଓଡ଼ିଶାର ଗୌରବୋଜ୍ଜ୍ୱଳ ଶତାବ୍ଦୀ । ସେହି ସମୟରୁ ଓଡ଼ିଆମାନେ ନୌବାଣିଜ୍ୟ ମାଧ୍ୟମରେ ବାଲି, ଜାଭା, ସୁମାତ୍ରା, ବ୍ରହ୍ମଦେଶ ଓ ଶ୍ରୀଲଙ୍କା ପ୍ରଭୃତି ଦେଶ ସହିତ ସ୍ଥାୟୀ ସମ୍ପର୍କ ସ୍ଥାପନ କରିସାରିଥିଲେ । ଇତିହାସ ବର୍ଣ୍ଣନାନୁସାରେ ୭୫ ଖ୍ରୀଷ୍ଟାବ୍ଦରେ କଳିଙ୍ଗରୁ ଅନେକ ବ୍ୟକ୍ତି ସାମୁଦ୍ରିକ ବାଣିଜ୍ୟ ଉଦ୍ଦେଶ୍ୟରେ ଜାଭା ଦ୍ୱୀପକୁ ଯାଇ ସେଠାରେ ସ୍ଥାୟୀ ଭାବରେ ବସବାସ ଆରମ୍ଭ କରିଥିଲେ । ସେହିବର୍ଷଠାରୁ ଜାଭାରେ ଏକ ଅଙ୍କ ପ୍ରଚଳନ ହୋଇଆସୁଅଛି । ଏବେ ବି କଳିଙ୍ଗ ବଂଶଧରଗଣ ସେଠାରେ କ୍ଲିଙ୍ଗ ନାମରେ ପରିଚିତ । ସେହି ପ୍ରଥମ ଶତାବ୍ଦୀରେ ଓଡ଼ିଶାର କିଛି ବ୍ୟକ୍ତି ଜଳପଥରେ ବାଣିଜ୍ୟ ଉଦ୍ଦେଶ୍ୟରେ ବ୍ରହ୍ମଦେଶ ଯାଇ ଉପନିବେଶ ସ୍ଥାପନ କରିଥିଲେ । ସେମାନେ ତତ୍କାଳୀନ ପ୍ରୋମ୍ ନଗରୀର ନାମ ଶ୍ରୀକ୍ଷେତ୍ର ରଖିଥିଲେ । ବାଲି ଓ ଅନ୍ୟାନ୍ୟ ଦ୍ୱୀପରେ ବହୁ ଓଡ଼ିଆ ଯାଇ ରହିଛନ୍ତି । ସେହିସବୁ ସ୍ଥାନରେ ଅଦ୍ୟାବଧି ଓଡ଼ିଆ ସଂସ୍କୃତି ଉଜ୍ଜୀବିତ ରହିଛି । ନୌବାଣିଜ୍ୟ ମାଧ୍ୟମରେ ସେହି କାଳରୁ ବ୍ରହ୍ମଦେଶ, ଥାଇଲାଣ୍ଡ, କାମ୍ବୋଡିଆ, ଶ୍ରୀଲଙ୍କା, ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ଚୀନ୍, ରୋମ୍, ଜାପାନ ତଥା ଆଫ୍ରିକା ସହିତ ଓଡ଼ିଶାର ବାଣିଜ୍ୟିକ ଓ ସାଂସ୍କୃତିକ ସମ୍ପର୍କ ରହିଛି । ଓଡ଼ିଆମାନେ ହିଁ ସେହିସବୁ ଦେଶରେ ଜଗନ୍ନାଥ ଓ ବୌଦ୍ଧ ସଂସ୍କୃତି ପ୍ରଚାର କରିଥିଲେ । ଏହା ସତ୍ୟ ଯେ, ଓଡ଼ିଆଙ୍କ ନୌବାଣିଜ୍ୟ ଯୋଗୁଁ ବୌଦ୍ଧ ଧର୍ମ ଆବିଶ୍ୱ ପ୍ରସାରିତ ହୋଇଥିଲା ।

ପ୍ରଥମ ଶତାବ୍ଦୀରେ ଟଲେମି ସ୍ୱରଚିତ ଭୌଗଳିକ ବିବରଣୀରେ ଲେଖିଛନ୍ତି ଯେ ଓଡ଼ିଶାରେ ବହୁ ବନ୍ଦର ଓ ନଗର ରହିଥିଲା । ସେଗୁଡ଼ିକ ମଧ୍ୟରେ ନନିଗେନ (ପୁରୀ), କଟିକର୍ଦ୍ଦମ (କଟକ), କୋଣଗର (କୋଣାର୍କ), କୋଳାମ୍ବ (ବାଲେଶ୍ୱର), ପୁଲୁର (ଜଳେଶ୍ୱର), ମନଦ (ମହାନଦୀ), ତିଳିସ୍ (ବ୍ରାହ୍ମଣୀ), ଦୋସ୍‌ରମ (ବୈତରଣୀ), ଅଦମସ୍ (ସୁବର୍ଣ୍ଣରେଖା), ପଲୁରା (ଗଞ୍ଜାମ) ପ୍ରଭୃତି ପ୍ରଧାନ । ଏଥିରୁ ଓଡ଼ିଶାର ତତ୍କାଳୀନ ଭୂଚିତ୍ର ଉପଲବ୍ଧ ହୋଇଥାଏ । ମନେହୁଏ, ମହାନଦୀ, ବ୍ରାହ୍ମଣୀ, ବୈତରଣୀ, ସୁବର୍ଣ୍ଣରେଖା, ବୁଢ଼ାବଳଙ୍ଗ, ଋଷିକୁଲ୍ୟା ପ୍ରଭୃତି ନଦୀରେ ଆଭ୍ୟନ୍ତରୀଣ ଅଞ୍ଚଳରୁ ପଣ୍ୟଦ୍ରବ୍ୟ ଆସି ନଦୀ ମୁହାଣରେ ଥିବା ବନ୍ଦର ନଗରୀରେ ଏକତ୍ରିତ ହେଉଥିଲା ଏବଂ ବାଣିଜ୍ୟ ପୋତରେ ସାଗରପାରି ଦେଶମାନଙ୍କୁ ଯାଉଥିଲା । ସେହି ସମୟରେ ଓଡ଼ିଶା ଏକ ନୌବାଣିଜ୍ୟ ସମୃଦ୍ଧ ରାଜ୍ୟ ଥିଲା ବୋଲି ପ୍ରମାଣିତ ହୁଏ । ଏହାର ଅନ୍ତର୍ନୌବାଣିଜ୍ୟ ଓ ବାହ୍ୟ ନୌବାଣିଜ୍ୟ ସୁସଂହତ ଥିଲା । ଅନ୍ତଃବାଣିଜ୍ୟ ଦୃଷ୍ଟିରୁ ଜଳେଶ୍ୱର, ବାଲେଶ୍ୱର, ବାମନଘାଟୀ, କଟକ, ଯାଜପୁର, ଆନନ୍ଦପୁର, ଚାନ୍ଦବାଲି, ବାରକୋଟ, ତାଳଚେର, ଭୁବନ, ଆଦିପୁରା, ଜେନାପୁର, ଇନ୍ଦିପୁର, ପଟ୍ଟାମୁଣ୍ଡାଇ, ଆସ୍କା, ସମ୍ବଲପୁର, ସୋନପୁର ପ୍ରଭୃତି ସମୃଦ୍ଧ ବାଣିଜ୍ୟ ନଗରୀ ଥିଲା । ପେରିକ୍ଲିସ୍ ନାମକ ପୁସ୍ତକରୁ ଜଣାଯାଏ, ପ୍ରଥମ ଶତାବ୍ଦୀରେ ଓଡ଼ିଶାରେ ପ୍ରଚୁର ହାତୀଦାନ୍ତ ମିଳୁଥିଲା । କଳିଙ୍ଗର ସୂକ୍ଷ୍ମବସ୍ତ୍ର ଓ ପଟ୍ଟବସ୍ତ୍ର ସାଗରପାରି ଦେଶମାନଙ୍କରେ ଆଦୃତ ହେଉଥିଲା । ଓଡ଼ିଆ ସାଧବମାନେ ଏହିସବୁ ଦ୍ରବ୍ୟ ବିକ୍ରୟ କରି ବିଦେଶରୁ ପ୍ରଚୁର ସୁନା, ମୁକ୍ତା ଆଣୁଥିଲେ । ତେଣୁ ପ୍ରକୃତପକ୍ଷେ ପ୍ରଥମ ଶତାବ୍ଦୀ ଥିଲା ଓଡ଼ିଆ ନୌବାଣିଜ୍ୟର ସୁବର୍ଣ୍ଣଯୁଗ । ଗୌରବର କଥା, ଏହି ଶତାବ୍ଦୀରେ ଓଡ଼ିଆମାନେ ଦରିଆପାରି ଦେଶମାନଙ୍କରେ ଭାରତୀୟ ସଂସ୍କୃତିର ପ୍ରସାର ଘଟାଇଥିଲେ, ଯାହାକି ବର୍ତ୍ତମାନ ବିଭିନ୍ନ ସ୍ଥାନର ଭୂଖନନରୁ ସୁସ୍ପଷ୍ଟ । ସେହିସବୁ ଦେଶର ଅଭିଲେଖରୁ ପାଲି, ସଂସ୍କୃତ ଭାଷାର ନିଦର୍ଶନ ମିଳିଛି । ବୌଦ୍ଧ, ଶାକ୍ତ, ଶୈବ, ବୈଷ୍ଣବ ଓ ଜଗନ୍ନାଥ ଧର୍ମ ପ୍ରଚାରରେ ଓଡ଼ିଶା ନୌବାଣିଜ୍ୟର ଭୂମିକା ଉଲ୍ଲେଖନୀୟ ।

ତୃତୀୟ ଶତାବ୍ଦୀରେ କଳିଙ୍ଗ ରାଜ ଗୁହଶିବ ଆପଣାର କନ୍ୟା ହେମମାଳା ଓ ଜାମାତା ଦନ୍ତକୁମାରଙ୍କ ହସ୍ତରେ ସମୁଦ୍ର ପଥରେ ଭଗବାନ ବୁଦ୍ଧଙ୍କର ପବିତ୍ର ଦନ୍ତ ସିଂହଳ ଅଧିପତି ମହାସେନଙ୍କ ନିକଟକୁ ପଠାଇଥିଲେ । ଦନ୍ତବଂଶ, ଲଳିତବିସ୍ତର ଓ ସିଉକି ପ୍ରଭୃତି ଗ୍ରନ୍ଥରୁ ଚୀନ୍ ସହିତ ଓଡ଼ିଶାର ସାଂସ୍କୃତିକ

ସମ୍ପର୍କ ସ୍ପଷ୍ଟ ପ୍ରମାଣିତ । ନୌବାଣିଜ୍ୟ କୁଶଳୀ ଓଡ଼ିଆମାନେ ପ୍ରାଚ୍ୟ ଭୂଖଣ୍ଡ ତଥା ଆଫ୍ରିକା ମହାଦେଶର ବିଭିନ୍ନ ଅଞ୍ଚଳରେ ଏହି ସମୟରେ ଉପନିବେଶ ସ୍ଥାପନ କରିଥିଲେ । ଐତିହାସିକଙ୍କ ମତରେ ସିଂହଳ ଓ ବ୍ରହ୍ମଦେଶର ରାଜବଂଶ ଓଡ଼ିଆ କ୍ଷତ୍ରିୟ କୁଳୋଦ୍ଭବ । ସୁବର୍ଣ୍ଣଦ୍ୱୀପରେ ଓଡ଼ିଆମାନେ ଦୀର୍ଘ ୩୦୦ ବର୍ଷଧରି ରାଜ୍ୟ ବିସ୍ତାର କରିଥିଲେ । ଜାଭାରେ ପ୍ରଚଳିତ କିମ୍ବଦନ୍ତୀ ଅନୁଯାୟୀ କଳିଙ୍ଗ ରାଜା କୋଡିଏ ହଜାର ପରିବାରକୁ ଜାଭା ପଠାଇଥିଲେ ଏବଂ ସେମାନେ ତିନିପୁରୁଷ ଧରି ସେଠାରେ ରାଜତ୍ୱ କରିଥିଲେ । ଓଡ଼ିଆମାନେ ବାଲିଦ୍ୱୀପକୁ ଯାତ୍ରା କରିବାର ସ୍ମାରକୀ ସଦୃଶ ଅଦ୍ୟାବଧି କଟକରେ ବାଲିଯାତ୍ରା ଅନୁଷ୍ଠିତ ହେଉଅଛି । ଓଡ଼ିଶାର ଆଭ୍ୟନ୍ତରୀଣ ଅଞ୍ଚଳରୁ ବିଭିନ୍ନ ସାମଗ୍ରୀ ନଦୀ ପଥରେ ଆସି କଟକ ମହାନଦୀ କୂଳରେ ଏକତ୍ର ହେଉଥିଲା । ଓଡ଼ିଆ ବଣିକମାନେ ସେହିସବୁ ସାମଗ୍ରୀ ଧରି ବାଣିଜ୍ୟ ପୋତରେ ଦୂରଦୂରାନ୍ତ ଦେଶକୁ ଯାତ୍ରା କରୁଥିଲେ । ସେମାନଙ୍କର ବାଣିଜ୍ୟ ତରୀ ମହାନଦୀ ବକ୍ଷରେ ସାଗର ଅଭିମୁଖେ ଯାତ୍ରା କରିବାର ଅବ୍ୟବହିତ ପୂର୍ବରୁ ବୋଇତ ବନ୍ଦାଣ, ଶୁଭ ବିଦାୟ ତଥା ଅନ୍ତର୍ଦେଶୀୟ ଓ ବହିର୍ଦେଶୀୟ ବାଣିଜ୍ୟ ଉଦ୍ଦେଶ୍ୟରେ ଏକତ୍ରିତ ଜନସମାଗମରୁ ସୃଷ୍ଟି ହୋଇଥିଲା ବାଲିଯାତ୍ରା । ସଂସ୍କୃତିର ପ୍ରବହମାନ ଧାରାରେ ଏହା ଏକ ବାର୍ଷିକ ବାଣିଜ୍ୟ ମହୋତ୍ସବର ମାନ୍ୟତା ଲାଭ କଲା ତଥା ଅଦ୍ୟାବଧି ଏହା ଅବିଚ୍ଛିନ୍ନ ଧାରା ପ୍ରବାହିତ ।

ଚୀନ ପରିବ୍ରାଜକ ଇତିସିଂ ମଧ୍ୟ ଓଡ଼ିଆମାନଙ୍କ ବାଣିଜ୍ୟ ତରୀରେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଥିଲେ । ସେ ବ୍ରହ୍ମଦେଶର ପ୍ରୋମ୍ ନଗରୀରେ ଓଡ଼ିଆମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଶ୍ରୀକ୍ଷେତ୍ର ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ଚତୁର୍ଥ ଶତାବ୍ଦୀରେ ଅନ୍ୟତମ ଚୀନ ପରିବ୍ରାଜକ ଫାହିୟାନ ଓଡ଼ିଶାର ତାମ୍ରଲିପ୍ତ ବନ୍ଦରରୁ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଥିଲେ । ସେ ଜାଭାରେ ଓଡ଼ିଆଙ୍କ ଦ୍ୱାରା ବ୍ରାହ୍ମଣ୍ୟଧର୍ମ ପ୍ରତିଷ୍ଠା କରାଯାଇଥିବା ଲେଖିଛନ୍ତି । ସେ ଯେଉଁ ବାଣିଜ୍ୟ ପୋତରେ ଯାତ୍ରା କରିଥିଲେ, ତାହା ଓଡ଼ିଶାର ବ୍ରାହ୍ମଣ ନାବିକମାନେ ଚଳାଉଥିଲେ । ଏଥିରୁ ପ୍ରମାଣିତ ହୁଏ ଜାତି, ବର୍ଣ୍ଣ, ନିର୍ବିଶେଷରେ ଓଡ଼ିଆମାନେ ନୌବାଣିଜ୍ୟକୁ ଆପଣାର କରି ନେଇଥିଲେ । ନୌବାଣିଜ୍ୟ ଯୋଗୁଁ ଓଡ଼ିଶା ସମୃଦ୍ଧ ହୋଇଥିବାରୁ ଅନେକ ସମୟରେ ଯବନ ଓ ଜଳଦସ୍ୟୁମାନେ ଓଡ଼ିଶା ଆକ୍ରମଣ କରୁଥିଲେ । ମାଦଳାପାଞ୍ଜି ବର୍ଣ୍ଣନାନୁସାରେ ଯବନ ରକ୍ତବାହୁ ସମୁଦ୍ର ପଥରେ ଆସି ପୁରୀ ଆକ୍ରମଣ କରିଥିଲା । ଶାମ୍ବପୁରାଣରେ ଉଲ୍ଲେଖ ଅଛି ଶାକ୍ୟଦ୍ୱୀପ ବା ପାରସ୍ୟ ଦେଶରୁ ସୂର୍ଯ୍ୟ ପୂଜକମାନେ କୋଣାର୍କ ଆସିଥିଲେ । ଅନୁମିତ ହୁଏ, ନୌବାଣିଜ୍ୟ ଯୋଗୁଁ ସୂର୍ଯ୍ୟ ପୂଜକମାନେ ଜଳପଥରେ ପାରସ୍ୟରୁ ଆସି କୋଣାର୍କରେ ସୂର୍ଯ୍ୟ ପୂଜା ଆରମ୍ଭ କଲେ ଏବଂ ପରବର୍ତ୍ତୀ କାଳରେ ପ୍ରଥମ ନରସିଂହଦେବ ସେଠାରେ ମନ୍ଦିର ନିର୍ମାଣ କରିଥିଲେ । ଚିତ୍ରୋତ୍ପଳା ନଦୀର ଶାଖା ଚନ୍ଦ୍ରଭାଗା ନଦୀ ମୁହାଣରେ କୋଣାର୍କ ବନ୍ଦର ବହୁ ପ୍ରାଚୀନ କାଳରୁ ରହିଥିଲା । ଟଲେମି ଏହାକୁ କୋଣଗର ଆଖ୍ୟା ଦେଇଛନ୍ତି । ସପ୍ତମ ଶତାବ୍ଦୀ ବେଳକୁ ଏହା ସମୃଦ୍ଧ ଚରିତ୍ର ନଗରରେ ପରିଣତ ହୋଇଥିଲା ବୋଲି ଚୀନ ପରିବ୍ରାଜକ ହୁଏନ୍‌ସାଂ ଲେଖିଛନ୍ତି । ଚିତ୍ରୋତ୍ପଳା ନଦୀ ମୁହାଣରେ ଏହାର ଅବସ୍ଥିତି ଯୋଗୁଁ ସେ ଏହାର ନାମ ଚେଲିତୋଲ ଲିପିବଦ୍ଧ କରିଛନ୍ତି । ହୁଏନ୍‌ସାଂ ମଧ୍ୟ ବାଣିଜ୍ୟ ପୋତରେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଥିଲେ । ଷଷ୍ଠ ଓ ସପ୍ତମ ଶତାବ୍ଦୀରେ ଓଡ଼ିଶାରେ ବୋଇତର ବହୁଳ ବ୍ୟବହାର ଥିଲା । ସେହି ସମୟରେ ଭୁବନେଶ୍ୱରରେ ନିର୍ମିତ ବୋଇତାଳ ମନ୍ଦିରର ଆକୃତି ଓଲଟି ପଡିଥିବା ବୋଇତ ସଦୃଶ । ସପ୍ତମ ଶତାବ୍ଦୀରେ ରଚିତ ଦଶକୁମାର ଚରିତରେ ତାମ୍ରଲିପ୍ତ ବନ୍ଦରକୁ ବାଣିଜ୍ୟପୋତ ଆସୁଥିବା ଉଲ୍ଲେଖ ରହିଛି । ଅଷ୍ଟମ ଶତାବ୍ଦୀରେ ଭୌମକର ରାଜା ଶୁଭାକର ଦେବ ପ୍ରଜ୍ଞା ନାମକ ଜନୈକ ବୌଦ୍ଧ ଭିକ୍ଷୁଙ୍କ ହସ୍ତରେ ଜାହାଜ ଯୋଗେ ଚୀନ ଦେଶ ରାଜା ତେସିଙ୍ଗଙ୍କ ନିକଟକୁ ଖଣ୍ଡିଏ ଗ୍ରନ୍ଥ ଓ ଉପଢୌକନ ପ୍ରେରଣ କରିଥିଲେ । ଏହି ଜାହାଜ ତାମ୍ରଲିପ୍ତ ବନ୍ଦରରୁ ଯାତ୍ରାରମ୍ଭ କରିଥିଲା । ସେହି ସମୟରେ ରଚିତ ବୃହତ୍ ସଂହିତାରୁ ଜଣାଯାଏ ଓଡ଼ିଶାର ସମୁଦ୍ର ଉପକୂଳସ୍ଥ ସକଳ ବନ୍ଦର ଗୋଟିଏ ଗୋଟିଏ ତୀର୍ଥ ସ୍ଥାନ ଥିଲା ।

ସୋମ ଓ ଗଙ୍ଗବଂଶ ରାଜତ୍ୱରେ ଓଡ଼ିଶାର ନୌବାଣିଜ୍ୟ ସମୃଦ୍ଧିଲାଭ କରିଥିଲା । ବଙ୍ଗରାଜା ଲକ୍ଷ୍ମଣ ସେନଙ୍କ ସଭାକବି ଧୋୟୀଙ୍କ ବର୍ଣ୍ଣନା ଅନୁସାରେ କଳିଙ୍ଗର ରାଜଧାନୀ କଳିଙ୍ଗ ନଗର ଏକ ସମୃଦ୍ଧ ବନ୍ଦର ଥିଲା । କୋଣାର୍କ ମନ୍ଦିର ଓ ପୁରୀ ମନ୍ଦିର ନିର୍ମାଣ ନିମିତ୍ତ ଦୂରଦୂରାନ୍ତ ପର୍ବତରୁ ବଡ ବଡ ପଥର ଖଣ୍ଡମାନ ନଦୀପଥରେ ହିଁ ଆସିଥିଲା । ପୁରୀ ଶ୍ରୀମନ୍ଦିରର ଭୋଗମଣ୍ଡପରେ ଏକ ଭାସମାନ ବାଣିଜ୍ୟପୋତରେ ଚିତ୍ର ରହିଅଛି । ସେହି ସମୟରେ ନୌବାଣିଜ୍ୟ ନିମିତ୍ତ ବୃହତ୍ ନୌକାର ଏହା ଚିତ୍ର । ଓଡ଼ିଶାର ବାଲେଶ୍ୱର, ଚାନ୍ଦବାଲି, ବୋଇତକୁଦ, ଅସ୍ତରଙ୍ଗ, ମାଣିକପାଟଣା ଓ ପାଲୁରରେ ସେସମୟରେ ଏତାଦୃଶ ବାଣିଜ୍ୟତରୀ ନିର୍ମାଣ କରାଯାଉଥିଲା । ଉଲ୍ଲେଖଯୋଗ୍ୟ ଯେ ନୌବାଣିଜ୍ୟକୁ ସୁନିୟନ୍ତ୍ରିତ କରିବା ନିମିତ୍ତ

ରାଜାମାନେ ସ୍ୱତନ୍ତ୍ର କର୍ମଚାରୀ ନିଯୁକ୍ତ କରୁଥିଲେ । ଗଙ୍ଗ ରାଜତ୍ୱରେ ବନ୍ଦରମାନଙ୍କୁ ପତ୍ତନ କୁହାଯାଉଥିଲା । କଳିଙ୍ଗ ପତ୍ତନ, ବିଶାଖା ପତ୍ତନ, ଭୀମଲି ପତ୍ତନ ପ୍ରଭୃତି ବିଶେଷ ପ୍ରସିଦ୍ଧିଲାଭ କରିଥିଲା । ସେହି ସମୟରେ ରଚିତ ପ୍ରାଚୀମହାତ୍ମ୍ୟ, ତୀର୍ଥ ଚିନ୍ତାମଣି, କପିଳସଂହିତା ଓ ଅନ୍ୟାନ୍ୟ ସ୍ମୃତି ଶାସ୍ତ୍ରରୁ ନୌବାଣିଜ୍ୟ ସମ୍ପର୍କରେ ବିଶେଷ ସୂଚନା ଉପଲବ୍ଧ ହୋଇଥାଏ ।

ସୂର୍ଯ୍ୟବଂଶ ରାଜତ୍ୱରେ ଓଡ଼ିଶାର ନୌବାଣିଜ୍ୟ ଚରମ ସୀମାରେ ଉପନୀତ ହୋଇଥିଲା । ପଞ୍ଚସଖା ସାହିତ୍ୟରୁ ସୂଚନା ମିଳେ ଯେ ପ୍ରାଚୀ, ଚିତ୍ରୋତ୍ପଳା, ଋଷିକୁଲ୍ୟା, ବୈତରଣୀ, ବ୍ରାହ୍ମଣୀ, ମହାନଦୀ, ସୁବର୍ଣ୍ଣରେଖା ଓ ବୁଢ଼ାବଳଙ୍ଗ ପ୍ରଭୃତି ନଦୀ ଓଡ଼ିଶାରେ ସାମୁଦ୍ରିକ ବାଣିଜ୍ୟର ଦ୍ୱାର ଥିଲା । ଏହି ସମୟରେ ଓଡ଼ିଶାର ରାଜନ୍ୟବୃନ୍ଦ ନୌବାଣିଜ୍ୟରୁ କର ଆଦାୟ କରୁଥିଲେ । ଇତିହାସରୁ ଜଣାଯାଏ, ସୂର୍ଯ୍ୟବଂଶୀ ରାଜତ୍ୱ ସମୟରେ ପର୍ତ୍ତୁଗୀଜମାନେ ଓଡ଼ିଶା ଉପକୂଳରେ ମଧ୍ୟ ନୌବାଣିଜ୍ୟ କରୁଥିଲେ । ସାରଳା ମହାଭାରତରେ ଅନେକ ପର୍ତ୍ତୁଗୀଜ ଓ ଫରାସୀ ଶବ୍ଦ ବ୍ୟବହୃତ । ଷୋଡଶ ଶତାବ୍ଦୀରେ ଓଡ଼ିଶା ପରାଧୀନ ହେଲେ ହେଁ ନୌବାଣିଜ୍ୟ ଅବ୍ୟାହତ ରହିଥିଲା । ଆକବରଙ୍କ ସମୟରେ ତୋଡରମଲ୍ଲ ଯେଉଁ ବନ୍ଦୋବସ୍ତ କରିଥିଲେ, ସେଥିରୁ ଜଣାଯାଏ ଯେ ବନ୍ଦର ଓ ନୌବାଣିଜ୍ୟ ସୁପରିଚାଳନା ନିମିତ୍ତ ନଓ୍ୱାରା ପଦବୀ ରହିଥିଲା । ସେମାନେ ବନ୍ଦରମାନଙ୍କରେ କର ଆଦାୟ କରୁଥିଲେ । ପ୍ରତିବଦଳରେ ନଓ୍ୱାରାମାନେ ଜଳଦସ୍ୟୁ ଆକ୍ରମଣରୁ ବଣିକମାନଙ୍କୁ ସୁରକ୍ଷା ପ୍ରଦାନ କରୁଥିଲେ । ସେହି ସମୟରେ ହୁଗୁଳି, ବାଲେଶ୍ୱର, ପିପିଲି, ମୁରଯଂ, ବିଲ୍‌ମାରି ଓ ଯଶୋର ପ୍ରଭୃତି ସ୍ଥାନରେ ଜଳ ଜାହାଜ ନିର୍ମାଣ କରାଯାଉଥିଲା । ବଙ୍ଗ ନବାବ ସାଏଗସ୍ତା ଖାଁ ବନ୍ଦରମାନଙ୍କରୁ କର ଆଦାୟ କରୁଥିଲେ ତଥା ଫିରିଙ୍ଗି ଜଳଦସ୍ୟୁଙ୍କୁ ଦମନ କରୁଥିଲେ । ବୋରେ ସାହେବଙ୍କ ବର୍ଣ୍ଣନାନୁସାରେ ବାଲେଶ୍ୱର ଓ ପିପିଲିରେ ସୁଦୃଢ଼ ଜାହାଜ ନିର୍ମାଣ ହେଉଥିଲା ଏବଂ ସେହି ସ୍ଥାନମାନଙ୍କରୁ ଦରିଆପାରି ଦେଶମାନଙ୍କୁ ବାଣିଜ୍ୟତରୀ ଯାତ୍ରା କରୁଥିଲା । ଭକ୍ତକବି ଦୀନକୃଷ୍ଣ ଦାସ ସ୍ୱରଚିତ ପ୍ରସ୍ତାବ ସିନ୍ଧୁ ଗ୍ରନ୍ଥରେ ବାଣିଜ୍ୟତରୀ ନିର୍ମାଣ ପ୍ରଣାଳୀ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ଏହି ରଚନାରେ ସାମୁଦ୍ରିକ ବାଣିଜ୍ୟର ବହୁଳ ବର୍ଣ୍ଣନା ରହିଛି । କବି କର୍ଣ୍ଣଙ୍କ ସହିତ ସତ୍ୟନାରାୟଣ ଷୋଳପାଲାରେ ବାଣିଜ୍ୟ ପୋତର ମାର୍ଗ ବର୍ଣ୍ଣିତ । ପାଲା ବର୍ଣ୍ଣନାରୁ ଜଣାଯାଏ ଓଡ଼ିଶାର ସାଧବ ପୁଅମାନେ ଓଡ଼ିଆ ସହିତ ସଂସ୍କୃତ, ପାଲି, ବଙ୍ଗଳା, ନାଗରୀ, ଫରାସୀ ପ୍ରଭୃତି ବହୁଭାଷା ଶିକ୍ଷା କରୁଥିଲେ, ଯାହାକୁ ସେମାନେ ଦରିଆପାରି ଦେଶମାନଙ୍କରେ ବ୍ୟବହାର କରି ବାଣିଜ୍ୟ କରୁଥିଲେ । ଏତଦ୍‌ଭିନ୍ନ ଉପେନ୍ଦ୍ର ଭଞ୍ଜଙ୍କ ରଚନା ଓ ଅନ୍ୟାନ୍ୟ ଲୋକ ସାହିତ୍ୟରୁ ଓଡ଼ିଶାର ମଧ୍ୟଯୁଗୀୟ ନୌବାଣିଜ୍ୟ ସମ୍ପର୍କରେ ଅନେକ ସୂଚନା ମିଳିଥାଏ । ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଏଫ୍ ବଲଜର ସଲ୍‌ଭିନସ୍ କେତେକ ଆଦର୍ଶ ବାଣିଜ୍ୟ ପୋତର ବର୍ଣ୍ଣନା କରିଛନ୍ତି । ତାଙ୍କ ମତରେ ବାଲେଶ୍ୱର ହିଁ ପୂର୍ବ ଭାରତର ପ୍ରବେଶ ଦ୍ୱାର ଥିଲା । ଏଠାରୁ ବହୁ ଜାହାଜ ଇଉରୋପ ଓ ଆଫ୍ରିକା ମହାଦେଶର ବହୁ ବନ୍ଦରକୁ ବାଣିଜ୍ୟ ଉଦ୍ଦେଶ୍ୟରେ ଯାଉଥିଲା ତଥା ବହୁ ବିଦେଶୀ ଜାହାଜ ଆସୁଥିଲା । ଏତଦ୍‌ଭିନ୍ନ ବାଲେଶ୍ୱର ବନ୍ଦରରୁ ଲୁଗା ଓ ମାଟିହାଣ୍ଡି ବିଦେଶକୁ ରପ୍ତାନୀ କରାଯାଉଥିଲା । ବ୍ୟାସକବି ଫକୀର ମୋହନଙ୍କ ଆତ୍ମଜୀବନୀରୁ ଜଣାଯାଏ ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଓଡ଼ିଶାର ନୌବାଣିଜ୍ୟ ଅବ୍ୟାହତ ରହିଥିଲା ।

ବିଂଶ ଶତାବ୍ଦୀରେ ଓଡ଼ିଶାର ନୌବାଣିଜ୍ୟ ସମ୍ପୂର୍ଣ୍ଣ ଲୋପ ପାଇଗଲା । ଏହାର କାରଣ ହେଉଛି, ୟୁରୋପୀୟମାନେ ଏକଚାଟିଆ ବାଣିଜ୍ୟ କାରବାର କରିବା ନିମିତ୍ତ କଟକଣା ଜାରି କଲେ । ଓଡ଼ିଆଙ୍କ ପାଲଟଣା ଜାହାଜ ପରିବର୍ତ୍ତେ ସେମାନେ ଉନ୍ନତ ଯନ୍ତ୍ରଚାଳିତ ଜାହାଜ ବ୍ୟବହାର କଲେ । ନଦୀମୁହାଣରେ ବାଲିଚଡ଼ା ସୃଷ୍ଟି ହୋଇ ଜାହାଜ ଚଳାଚଳରେ ଅସୁବିଧା ସୃଷ୍ଟି ହେଲା । ପୋତାଶୟଗୁଡ଼ିକ ଅସୁରକ୍ଷିତ ହେଲା । ସର୍ବୋପରି ବାଣିଜ୍ୟ କୁଶଳୀ ଇଂରେଜମାନେ ଶାସକ ହୋଇଥିବାରୁ ଓଡ଼ିଆ ନାବିକମାନଙ୍କୁ ସୁରକ୍ଷା ପ୍ରଦାନ କଲେ ନାହିଁ । ବିଶେଷତଃ ନଅଙ୍କ ଦୁର୍ଭିକ୍ଷ ପରେ ଓଡ଼ିଆ ଜାତିର ଅଣ୍ଟା ଭାଙ୍ଗିଗଲା ଏବଂ ପ୍ରୋତ୍ସାହନ ଓ ଆର୍ଥିକ କାରଣ ନିମିତ୍ତ ଓଡ଼ିଆଙ୍କ ନୌବାଣିଜ୍ୟର ପତନ ଘଟିଲା । ପରିସ୍ଥିତି ଏପରି ହେଲା ଯେ ଯେଉଁ ଓଡ଼ିଆମାନେ ବର୍ମା ଦେଶରେ ସାମୁଦ୍ରିକ ବାଣିଜ୍ୟ ସମୃଦ୍ଧ ଜାତି ଭାବରେ ପରିଚୟ ସୃଷ୍ଟି କରିଥିଲେ, ସେମାନଙ୍କ ଜୀବନ ରକ୍ଷା ଲାଗି ରେଙ୍ଗୁନରୁ ଚାଉଳ ଜାହାଜ ଯୋଗେ ଅଣାଗଲା । ପୃଥିବୀର ଏକ ବାଣିଜ୍ୟ ସମୃଦ୍ଧ ନୌବହନ ଜାତିର ପତନ ନିମିତ୍ତ ଏହା ଥିଲା କୁଚକ୍ରୀ ଇଂରେଜ ଶାସକଙ୍କ ନୀତିବିହୀନ ବାଣିଜ୍ୟ କୌଶଳ । ଏଣୁ ନିଃସନ୍ଦେହରେ ବ୍ୟକ୍ତ କରାଯାଇପାରେ ଯେ ଓଡ଼ିଆଙ୍କ ନୌବାଣିଜ୍ୟ ଲୋପ ହେବା ପଛରେ ବେପାରୀ ଇଂରେଜମାନଙ୍କର ପ୍ରଚ୍ଛନ୍ନ ଭୂମିକା ରହିଥିଲା ।

ଖ୍ରୀଷ୍ଟପୂର୍ବ କାଳରୁ ଓଡ଼ିଶାରେ ନୌବାଣିଜ୍ୟର ଉନ୍ମେଷ ଘଟି ଓଡ଼ିଆ ସଂସ୍କୃତି ଓ ଶିଳ୍ପ ନୈପୁଣ୍ୟ ଆବିଶ୍ୱ ପ୍ରସାର

ହୋଇଥିଲା । ନୌବାଣିଜ୍ୟ କୁଶଳୀ ଓଡ଼ିଆମାନେ ଦରିଆପାରି ଦେଶମାନଙ୍କରେ ବାଣିଜ୍ୟ କରି ଅସରନ୍ତି ଧନଦୌଲତ ବୋହି ଆଣି ପ୍ରାଚୀନ କାଳରୁ ଓଡ଼ିଶାକୁ ସମୃଦ୍ଧ କରିଥିଲେ । ଓଡ଼ିଆ ବଣିକମାନଙ୍କ ଦ୍ୱାରା ହିଁ ବିଦେଶରେ ଜଗନ୍ନାଥ, ବୌଦ୍ଧ, ଶୈବ, ବୈଷ୍ଣବ, ଶାକ୍ତ ଓ ବୈଦିକ ସଂସ୍କୃତି ଦରିଆପାରି ଦେଶମାନଙ୍କରେ ପ୍ରସାର ହୋଇଥିଲା । କାମ୍ବୋଡିଆରେ ହରିହର ଉପାସନା, ଭିଏତ୍‌ନାମାରେ ରାମାୟଣର ପ୍ରଚାର, ପୁରୁଷୋତ୍ତମ ମନ୍ଦିର ଓ ଭଗବତୀ ମନ୍ଦିର, ଜାଭାର ବ୍ରାହ୍ମଣ୍ୟଧର୍ମ, ବ୍ରହ୍ମଦେଶର ବୌଦ୍ଧ ଓ ଜଗନ୍ନାଥ ଧର୍ମ ଏସବୁ ହେଉଛି ଓଡ଼ିଆଙ୍କ ନୌବାଣିଜ୍ୟର ସତ୍‌ଫଳ । ନୌବାଣିଜ୍ୟ ଦ୍ୱାରା ଚୀନ୍, ଜାପାନ, ଶ୍ରୀଲଙ୍କା, ଇଣ୍ଡୋନେସିଆ ପ୍ରଭୃତି ଦେଶ ସହିତ ଓଡ଼ିଶାର ବାଣିଜ୍ୟିକ ଓ ସାଂସ୍କୃତିକ ସମ୍ପର୍କ ରହିଥିଲା । ନୌବାଣିଜ୍ୟ ମାଧ୍ୟମରେ ହିଁ ଓଡ଼ିଆମାନେ ବିଭିନ୍ନ ଦେଶରେ ଉପନିବେଶ ସ୍ଥାପନ କରିଥିଲେ । ମୋଟ ଉପରେ କହିଲେ ଓଡ଼ିଆଙ୍କର ଅର୍ଥନୈତିକ, ରାଜନୈତିକ, ସାଂସ୍କୃତିକ ଓ ଧାର୍ମିକ ଜୀବନର ଅଭିବୃଦ୍ଧି ନୌବାଣିଜ୍ୟ ଦ୍ୱାରା ହିଁ ହୋଇଥିଲା । ଅପରପକ୍ଷରେ ନୌବାଣିଜ୍ୟ ଦ୍ୱାରା ଓଡ଼ିଆମାନେ ହିଁ ଭାରତୀୟ ସଂସ୍କୃତିର ମର୍ଯ୍ୟାଦାବନ୍ତ ଆତ୍ମପରିଚୟ ପ୍ରଦାନ ପୂର୍ବକ ଆନ୍ତର୍ଜାତୀୟ ସୁଖ୍ୟାତି ଅର୍ଜନ କରିଥିଲେ । ନୌବାଣିଜ୍ୟ ହିଁ ଓଡ଼ିଶାକୁ ଏକ ସାମୁଦ୍ରିକ ବାଣିଜ୍ୟ ସମୃଦ୍ଧ, ଐଶ୍ୱର୍ଯ୍ୟ ପରିପୂର୍ଣ୍ଣ ବିଭବଶାଳୀ ରାଜ୍ୟର ମାନ୍ୟତା ପ୍ରଦାନ କରିଥିଲା । ଆଜି ଓଡ଼ିଆଙ୍କର ନୌବାଣିଜ୍ୟ ନଥିଲେ ହେଁ ପ୍ରାଚୀନ ପରମ୍ପରା, ସଂସ୍କୃତି, ଜାତୀୟ ଜୀବନ ତଥା ଗୌରବୋଜ୍ଜ୍ୱଳ ସ୍ମୃତିର ସ୍ୱାକ୍ଷର ବହନ କରି ବାଲିଯାତ୍ରା ଓ ବୋଇତ ବନ୍ଦାଣ ଜାତୀୟ ମହୋତ୍ସବ ସ୍ୱରୂପରେ ପ୍ରତିଭାତ ।

ଦକ୍ଷିଣକାଳୀ ମାର୍ଗ, ଢେଙ୍କାନାଳ

# ମତ୍ସ୍ୟଜୀବୀମାନଙ୍କ ନିମନ୍ତେ ୫୧ କୋଟି ଟଙ୍କାର ବ୍ୟବସ୍ଥା

## –କୃଷି ମନ୍ତ୍ରୀ

ସାମୁଦ୍ରିକ ଝଡ ଫାଇଲିନ୍ ପ୍ରଭାବରେ ରାଜ୍ୟର ମତ୍ସ୍ୟସମ୍ପଦ ବିଶେଷ କ୍ଷତିଗ୍ରସ୍ତ ହୋଇଥିବା ବେଳେ ସାମୁଦ୍ରିକ ମତ୍ସ୍ୟଜୀବୀମାନଙ୍କର ଡଙ୍ଗା, ଜାଲ ଓ ମାଛଧରା ଉପକରଣ ବିଶେଷ ଭାବେ କ୍ଷତିଗ୍ରସ୍ତ ହୋଇଛି । ତେଣୁ ରାଜ୍ୟ ସରକାର ମତ୍ସ୍ୟଜୀବୀମାନଙ୍କ ପାଇଁ ରାଷ୍ଟ୍ରୀୟ କୃଷି ବିକାଶ ଯୋଜନା ସହାୟତାରେ ୫୦୦୦ ବିଭିନ୍ନ ପ୍ରକାର ଡଙ୍ଗା ଓ ଆବଶ୍ୟକୀୟ ଜାଲ ଯୋଗାଇବା ପାଇଁ ଡଙ୍ଗା ପ୍ରତି ୭୫ ହଜାର ଓ ଜାଲ ପ୍ରତି ୨୫ ହଜାର ଟଙ୍କାର ରିହାତି ବ୍ୟବସ୍ଥା କରିଛନ୍ତି ବୋଲି ରାଜ୍ୟ କୃଷି, ମତ୍ସ୍ୟ, ପ୍ରାଣୀସମ୍ପଦ ବିକାଶ ଏବଂ ଗୃହ ଓ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ଦେବୀ ପ୍ରସାଦ ମିଶ୍ର ପ୍ରକାଶ କରିଛନ୍ତି । ଏହି ଯୋଜନାରେ ମୋଟ ୫୧ କୋଟି ଟଙ୍କାର ବ୍ୟବସ୍ଥା କରାଯାଇଛି ବୋଲି ମନ୍ତ୍ରୀ ଶ୍ରୀ ମିଶ୍ର କହିଛନ୍ତି । ଆଜି ପୂର୍ବାହ୍ନରେ ପାନ୍ଥନିବାସ ସମ୍ମିଳନୀ କକ୍ଷରେ ମତ୍ସ୍ୟ ନିର୍ଦ୍ଦେଶାଳୟ ପକ୍ଷରୁ ରାଷ୍ଟ୍ରୀୟ କୃଷି ବିକାଶ ଯୋଜନା ସହାୟତାରେ ମତ୍ସ୍ୟଜୀବୀମାନଙ୍କୁ ଡଙ୍ଗା, ଜାଲ ଓ ବ୍ୟାଙ୍କ ଋଣ ଯୋଗାଣ ସମ୍ପର୍କିତ ଏକ କର୍ମଶାଳାରେ ମନ୍ତ୍ରୀ ଶ୍ରୀ ମିଶ୍ର ମୁଖ୍ୟ ଅତିଥି ଭାବେ ଯୋଗଦେଇ ଉପରୋକ୍ତ ମତବ୍ୟକ୍ତ କରିବା ସଙ୍ଗେ ସଙ୍ଗେ ମତ୍ସ୍ୟଜୀବୀମାନେ କିପରି ସହଜରେ ଓ ସୁବିଧାରେ ଏହି ରିହାତି ପାଇପାରିବେ ସେଥି ପ୍ରତି ଯତ୍ନବାନ ହେବାକୁ ବିଭାଗୀୟ ଅଧିକାରୀମାନଙ୍କୁ ପରାମର୍ଶ ଦେଇଥିଲେ । ଏଥିରେ ମତ୍ସ୍ୟ ବିଭାଗର ସଚିବ ଶ୍ରୀ ବିଷ୍ଣୁପଦ ସେଠୀ ଯୋଗ ଦେଇ ମତ୍ସ୍ୟଜୀବୀମାନଙ୍କ ପାଇଁ ୫୧ କୋଟି ଟଙ୍କା ବ୍ୟବସ୍ଥାକୁ ଏକ ଐତିହାସିକ କାର୍ଯ୍ୟକ୍ରମ ବୋଲି ପ୍ରକାଶ କରିଥିଲେ । ମତ୍ସ୍ୟଜୀବୀମାନେ କିପରି ସୁବିଧାରେ ଏହି ଡଙ୍ଗା ଓ ଜାଲ ପାଇପାରିବେ ତାହା ଉପରେ ସଚିବ ଶ୍ରୀ ସେଠୀ ଗୁରୁତ୍ୱାରୋପ କରିଥିଲେ । ଏଥିରେ ମତ୍ସ୍ୟ ବିଭାଗର ନିର୍ଦ୍ଦେଶକ ଶ୍ରୀ ପି. କୃଷ୍ଣମୋହନ ଯୋଜନାର ସାମୁଦ୍ରିକ ଓ ଚିଲିକା ଅଞ୍ଚଳରେ ମତ୍ସ୍ୟଜୀବୀମାନଙ୍କୁ ଆର୍ଥିକ ଓ ସାମାଜିକ ଉନ୍ନତି ପାଇଁ ପାରମ୍ପରିକ ମାଛଧରା ଡଙ୍ଗା ଓ ଜାଲ ପରିବର୍ତ୍ତେ ଉନ୍ନତ ଧରଣର ନିରାପଦ ଡଙ୍ଗା ଯୋଗାଣ ପାଇଁ ପଦକ୍ଷେପ ଉପରେ ଆଲୋଚନା କରିଥିଲେ । ଏହି କର୍ମଶାଳାରେ ମତ୍ସ୍ୟ ବିଭାଗର ବରିଷ୍ଠ ଅଧିକାରୀମାନଙ୍କ ସହ ମତ୍ସ୍ୟଜୀବୀ ଡଙ୍ଗା ଏବଂ ଜାଲ ତିଆରି ଓ ଯୋଗାଣ ସହିତ ସମ୍ପୃକ୍ତ ମତ୍ସ୍ୟଜୀବୀ, ସାମୁଦ୍ରିକ ଅଞ୍ଚଳର ବ୍ୟାଙ୍କ ସମୂହ ଓ ବୀମା କମ୍ପାନୀର ପ୍ରତିନିଧିମାନେ ଯୋଗଦେଇ ଆବଶ୍ୟକ ଡଙ୍ଗା ଓ ଜାଲର ମୋଡେଲ୍ ତିଆରି ପାଇଁ ଜ୍ଞାନକୌଶଳ ବିଷୟରେ ସିଦ୍ଧାନ୍ତ ଗ୍ରହଣ କରିଥିଲେ ।

# ଧର୍ମ ଓ ପାର୍ବଣର ମାସ: କାର୍ତ୍ତିକ

ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି (ହାରିତସ୍)

କାର୍ତ୍ତିକର ଶରତ– ଶୀତ ଆକାଶରେ ନିର୍ମଳ ପୂର୍ଣ୍ଣମାର ଚନ୍ଦ୍ର । ଜ୍ୟୋତ୍ସ୍ନା ବିଧୌତ ଜହ୍ନର ରୌପ୍ୟଝଲିରେ ଝଲସୁ ଥିବା ଆମର ଏ ପ୍ରକୃତି, ଏ ଧରିତ୍ରୀରାଣୀ, ଏ ପୃଥିବୀର ସ୍ୱର୍ଣ୍ଣରୂପ । ଗଙ୍ଗଶିଉଳି, ମାଳତୀ, ହେନା ଫୁଲର ବାସ୍ନାରେ ବିଭୋରିତ ଏ ରାତ୍ରୀର କଳେବର । ଆକାଶରେ ଜହ୍ନ ସାଙ୍ଗକୁ ଲକ୍ଷ ଲକ୍ଷ ତାରାର ଦୀପାଳୀ ବଢା ହୋଇଥାଏ ସେହି ପ୍ରଭୁ ବିଶ୍ୱନିୟନ୍ତାଙ୍କ ପାଇଁ ଆଜିର ଏହି ପୁଣ୍ୟ ତିଥିରେ । କାର୍ତ୍ତିକ ମାସ ପବିତ୍ର ଧର୍ମ ଓ ପୁଣ୍ୟ ଅର୍ଜନର ମାସ । ଗୀତାରେ ବର୍ଣ୍ଣିତ ଶ୍ରୀକୃଷ୍ଣ ନାରାୟଣଙ୍କ ଅତିପ୍ରିୟ ଏବଂ ବର୍ଷ ମଧ୍ୟରେ ସବୁମାସଠାରୁ ଶ୍ରେଷ୍ଠ ମାସ ଏହି କାର୍ତ୍ତିକମାସ । ଆଧ୍ୟାତ୍ମିକ ଉଦ୍‌ବେଳନର ପ୍ରକୃଷ୍ଟ ମାହେନ୍ଦ୍ର ବେଳା । ବିଶ୍ୱାସ ଅଛି, ପ୍ରାଣୀମାନେ ଏ ମାସରେ ଦେହତ୍ୟାଗ କଲେ ବୈକୁଣ୍ଠ ପାତ୍ର ହୁଅନ୍ତି । ପ୍ରତ୍ୟୁଷ ସ୍ନାନ, ବ୍ରତପାଳନ, ପୂଜା, ସଂକୀର୍ତ୍ତନ, ଜପ, ମେଳା, ମହୋତ୍ସବ ଓ ଦେବ ପୂଜନର ଧର୍ମୀୟ ଭାବଧାରା ସର୍ବତ୍ର ପରିବ୍ୟାପ୍ତ । କାର୍ତ୍ତିକ ଶୁକ୍ଳ ଏକାଦଶୀ ତିଥିରୁ ପୂର୍ଣ୍ଣିମା ଯାଏ 'ପଞ୍ଚକ' ବ୍ରତ ପାଳନ କରିବାର ବିଧି ଆମ ଓଡ଼ିଶାର ସର୍ବତ୍ର ପାଳିତ । ହିଂସା, ଦ୍ୱେଷ, ଈର୍ଷା, କାମ, କ୍ରୋଧ, ଲୋଭ ଆଦି ମନୁଷ୍ୟକୃତ ପ୍ରବୃତ୍ତିଗୁଡ଼ିକୁ କାର୍ତ୍ତିକ ବ୍ରତଚାରୀ ତ୍ୟାଗ କରି ନିଜ ମନରେ ସାତ୍ତ୍ୱିକ ଭାବର ଉଦ୍ରେକ କରାଇ ଥାନ୍ତି ।



ଏ ମାସରେ ନାରାୟଣ ମତ୍ସ୍ୟ ଅବତାର ହୋଇ ଶଙ୍ଖାସୁରକୁ ବଧ କରି ହୃତ ବେଦକୁ ରକ୍ଷା କରିଥିଲେ । ଏହି କାରଣରୁ ମନୁଷ୍ୟମାନେ ମତ୍ସ୍ୟକୁ ଈଶ୍ୱର ଜ୍ଞାନ କରି ମତ୍ସ୍ୟ ଭକ୍ଷଣ କରି ନଥାନ୍ତି । ଶାସ୍ତ୍ରରେ ବର୍ଣ୍ଣିତ ଯେ, ବକ ମଧ୍ୟ ଏହି ପଞ୍ଚକରେ ମତ୍ସ୍ୟ ଆହାର କରେ ନାହିଁ ବୋଲି ଏହି ପଞ୍ଚକକୁ 'ବକ ପଞ୍ଚକ' ମଧ୍ୟ କୁହାଯାଏ । ଓଡ଼ିଶାର ପୁରପଲ୍ଲୀରେ ଗୃହିଣୀମାନେ ତୁଳସୀ ଚଉରା ମୂଳରେ ପଞ୍ଚୁବର୍ଣ୍ଣ ମୁରୁଜରେ ଝୋଟି, ଚିତା ଦେଇ ରାଇ–ଦାମୋଦର, ଜଗନ୍ନାଥ, ବଳଭଦ୍ର, ଶୁଭଦ୍ରାଙ୍କ ମୁରୁଜ ଚିତ୍ରକୁ ନୌକା ମଧ୍ୟରେ ଆଙ୍କି ଫୁଲଦୂବ, ଅକ୍ଷତଚାଉଳ, ଅର୍ଘ୍ୟ ପ୍ରଦାନ କରି ହୁଳହୁଳି ସହ ପୂଜା କରିଥାନ୍ତି । ଏହିମାସ ହବିଷ୍ୟ ପାଳନର ମାସ, ହବିଷ୍ୟପାଳନ କରି ବିଶେଷରେ ଘରର ସ୍ତ୍ରୀଲୋକମାନେ କାର୍ତ୍ତିକ–ମହାତ୍ମ୍ୟ ଶ୍ରବଣ କରିଥାନ୍ତି । ତୁଳସୀ ଏକ ବହୁ ଉପକାରୀ ବୃକ୍ଷ, ଶାସ୍ତ୍ରରେ ଏହାର ପୂଜନ ଓ ଚଉରା ମୂଳର ପଦୋଦକ ସେବନ କରିବାର ଆଧ୍ୟାତ୍ମିକ ବିଧି ରହିଛି ।

ପୁରାଣରେ ତୁଳସୀ ବୃକ୍ଷର ଅନ୍ୟନାମ ବୃନ୍ଦାବତୀ । ବୃନ୍ଦାବତୀ ଜଳନ୍ଧର ଅସୁରର ପତ୍ନୀ ଓ ଦୈତ୍ୟ କାଳନେମୀର କନ୍ୟା । ଭଗବାନ ବିଷ୍ଣୁ ମାୟାବିସ୍ତାର କରି ଜଳନ୍ଧର ଦୈତ୍ୟର ବିନାଶ ପାଇଁ ବୃନ୍ଦାଙ୍କ ସତୀତ୍ୱ ନଷ୍ଟ କରିଥିଲେ ଏବଂ ଶିବଙ୍କ ଦ୍ୱାରା ଜଳନ୍ଧରର ବଧ ହେଲା । ବୃନ୍ଦାମତାନ୍ତରେ ତୁଳସୀଙ୍କ ଶାପରେ ନାରାୟଣ ପାଷାଣ ରୂପ ଶାଳଗ୍ରାମ ରୂପେ ପ୍ରକଟିତ ହେଲେ ଓ ବଜ୍ରକୀଟର ଦଂଶନରେ ସଦା କର୍ତ୍ତିତ ହେବାକୁ ଲାଗିଲେ । ଏ ସମୟରେ ଦେବୀ ବୃନ୍ଦା/

ତୁଳସୀ ଗଣ୍ଡକୀ ନଦୀରୂପ ନେଇ ବଜ୍ରକୀଟ ସହ ଶାଳଗ୍ରାମ ଶୀଳାକୁ ନିଜ କୋଳରେ ଧାରଣ କରି ପୂର୍ବ ଜନ୍ମରେ ପ୍ରଭୁ ନାରାୟଣଙ୍କ ଅକର୍ମର ପ୍ରତିଶୋଧ ନେବାରେ ଲାଗିଲେ । ଏହି କାର୍ତ୍ତିକ ମାସରେ ତୁଳସୀ ପୂଜା ସହ ଶାଳଗ୍ରାମ ପୂଜା ବିଶେଷରେ ଅନୁଷ୍ଠିତ ହୋଇ ପୂର୍ବ ପୁରାଣ ବର୍ଣ୍ଣିତ ଧର୍ମ ପ୍ରସଙ୍ଗକୁ ଉଜ୍ଜୀବିତ କରାଏ ।

କାର୍ତ୍ତିକ ମାସରେ ଅନ୍ୟ ଏକ ବିଶେଷ ପୂଜା ହେଉଛି ଆଲୋକ ପୂଜା । ବେଦରେ ଅନ୍ଧକାରକୁ ଦୂର କରିବା ପାଇଁ ଜ୍ୟୋତିକୁ ଆହ୍ୱାନ କରି ମନୀଷୀମାନେ 'ତମସୋ ମା ଜ୍ୟୋର୍ତିଗମୟ' କହି ଆଲୋକର ପୂଜା କରିଥାନ୍ତି । ଏହି ପରମ୍ପରାରୁ ପିତୃପକ୍ଷକୁ ଶ୍ରାଦ୍ଧ ଅର୍ପଣ ସହ ଏ ମାସର ଆଦ୍ୟତିଥି ପ୍ରତିପଦ ସନ୍ଧ୍ୟାରୁ ଗୁଆଗଛର ଶୀର୍ଷରେ 'ଆକାଶ ଦୀପ' ଜଳାଇ ଦିଆଯାଇଥାଏ । କାର୍ତ୍ତିକ ଅମାବାସ୍ୟାର ଦୀପାବଳି ଉତ୍ସବ ଏହି ଆଲୋକ ପୂଜାର ଅନ୍ୟଏକ ଅନନ୍ୟ ନିଦର୍ଶନ । କଦଳୀ ପଟୁକାରେ ଦୀପ ଜଳାଇ ନଦୀଘାଟ, ପୋଖରୀ, ହ୍ରଦ କି ସମୁଦ୍ର ଜଳରେ ଭସାଇ ଦେବା ବିଧି ବସ୍ତୁତଃ ବରୁଣ ତଥା ହିରଣ୍ୟ ଗର୍ଭ ସମୁଦ୍ରର ପୂଜା ବା ଜଳଦେବତାଙ୍କର ପୂଜା ନିବେଦନ କରେ । ଏ ମାସରେ ପ୍ରକୃତିର ସ୍ୱରୂପ ଐଶ୍ୱରୀୟ ମନେ ହୋଇପଡୁଥିଲେ ହେଁ କାର୍ତ୍ତିକ ପୂର୍ଣ୍ଣମୀ ପ୍ରଭାତରେ ନଦୀଘାଟ, ପୁଷ୍କରିଣୀ ଓ ସମୁଦ୍ର ବେଳାରେ ଆୟୋଜିତ ପବିତ୍ର ଆମସ୍ତକ ସ୍ନାନ, ବୁଡନ, ବାଲୁକାପୂଜା, ଝୋଟି ମୁରୁଜରେ ବିଭିନ୍ନ ଦେବାଦେବୀଙ୍କର ଉପାସିତ ଚିତ୍ର, କଦଳୀ ବାହୁଙ୍ଗାର ଦୀପଦାନ ବିଧି କେବଳ ଯେ ଆମର ଆଧାତ୍ମିକ ଉନ୍ମିଳନ କରାଏ, ତା' ନୁହେଁ ବରଂ ଆମ ଐତିହ୍ୟ ଆମ ସଂସ୍କୃତିରେ ଥିବା ନୌ–ବାଣିଜ୍ୟର ନିଦର୍ଶନକୁ ଆକାମାବୈ..ର ବିଲୁପ୍ତ ବୋଇତ ବନ୍ଦାଣକୁ ଆମରି ମନରେ ସଦା ସ୍ମରଣ କରିଥାଏ । ଓଡ଼ିଶାର ସୁଦୀର୍ଘ ବେଳାଭୂମିରେ ଏବେବି ରହିଥିବା ନଦୀ, ନଦୀମୁହାଣ, ବନ୍ଦର, ପୋତାଶ୍ରୟ, ହ୍ରଦ ସହ ଆମ ରାଜ୍ୟର ଅନୁକୂଳ ଭୌଗଳିକସ୍ଥିତି ସମଗ୍ର ଦେଶରେ ନୌ–ବାଣିଜ୍ୟ ପାଇଁ ବହୁ ପୁରାକାଳରୁ ବିଶେଷ ସୁବିଧା ଅର୍ପଣ କରିଆସିଛି । ଏଣୁ ଖ୍ରୀଷ୍ଟପୂର୍ବର ବହୁ ଶତାବ୍ଦୀ ଆଗରୁ କଳିଙ୍ଗ ନୌ–ବାଣିଜ୍ୟ କରିବାରେ ଏକ ସମୃଦ୍ଧ ରାଜ୍ୟ ରୂପେ ଖ୍ୟାତ ଥିଲା । କଳିଙ୍ଗ ଅଧିବାସୀ କଳିଙ୍ଗମାନେ ହଜାର ହଜାର ମାଇଲର ଜଳଯାତ୍ରା କରିବାରେ ଅତି ସାହସୀ ଓ ନିପୁଣ ଥିଲେ । ସୌର୍ଯ୍ୟ ବୀର୍ଯ୍ୟ ଧନଧାନ୍ୟରେ ଭରା କଳିଙ୍ଗବୀର ସାମାଜିକ, ସାଂସ୍କୃତିକ, ଆର୍ଥିକ ସବୁଠିଁ ସବୁଥିରେ ସ୍ୱୟଂସମ୍ପୂର୍ଣ୍ଣ ହୋଇପାରିଥିଲା ଅତୀତରେ । ଆଜି ପାଇଁ ସେସବୁ କିନ୍ତୁ ଶତଶତ ବର୍ଷର ପରାଧୀନତାର ବେଡି ମଧ୍ୟରେ ତାର ପ୍ରାକୃତିକ ବିଭବ ସବୁକୁ ହରାଇ ଦୀନହୀନ ପାଲଟିଯାଉଛି । ଯେଉଁ କଳିଙ୍ଗ ଦିନେ ସମଗ୍ର ଜମ୍ବୁଦ୍ୱୀପ, ଏସିଆ ଭୂଖଣ୍ଡ କାହିଁକି ମହୋଦଧିପତି ସମଗ୍ର ବିଶ୍ୱର ମଉଡମଣି ସାଜି ସଭିଙ୍କ ଦୃଷ୍ଟି ଆକର୍ଷଣ କରିପାରୁଥିଲା ସେ ରାଜ୍ୟ ଆଜି ପାଇଁ ଅବହେଳିତ ରୂପେ ଅନ୍ୟର ଭିକ୍ଷା ଅନୁକମ୍ପାକୁ ପାଥେୟ କରି ପଡି ରହିଛି । ଏକଥା ଭାବିଲେ ଲଜ୍ଜା ଅପମାନରେ ସ୍ୱତଃ ମଥାନତ ହୋଇଯାଉଛି । ଆସନ୍ତୁ 'କଳିଙ୍ଗାଃ ସାହାସିକା'ର ଉକ୍ତିକୁ ସ୍ମରଣ କରି ଏ ରାଜ୍ୟକୁ ସମୃଦ୍ଧ କରିବାରେ ଲାଗିପଡିବା ।

ବୟାଳୀ, ପୋ: ମନ୍ତ୍ରିଡି,
ଜି–ଗଞ୍ଜାମ–୭୬୧୦୦୮



# ଓଡ଼ିଆ ସାହିତ୍ୟରେ ନୌବାଣିଜ୍ୟ ଚିତ୍ର

**ଡକ୍ଟର ସର୍ବେଶ୍ୱର ସେଣ**

ଆସିଛି କାର୍ତ୍ତିକ ପୂର୍ଣ୍ଣିମା ଫି ସନପରି କ୍ୟାଲେଣ୍ଡର ପୃଷ୍ଠାରେ । ପୁନଶ୍ଚ ଉଖୁରେଇ ଦେଇଛି ଆମ ବିଭବଶାଳିନୀ ନୌବାଣିଜ୍ୟର କଥା–ଗାଥାକୁ । ଏକଦା ଉତ୍କଳ, କଳିଙ୍ଗ, ଓଡ଼ିଶାର ନୌବାଣିଜ୍ୟର କୀର୍ତ୍ତି ଥିଲା ବିଶ୍ୱ ବିଦିତ । କେବଳ ଏସିଆ ମହାଦେଶ ନୁହେଁ ବରଂ ୟୁରୋପୀୟ କେତେକ ରାଷ୍ଟ୍ରସହ ଆମର ଥିଲା ବାଣିଜ୍ୟିକ ସମ୍ପର୍କ । ଏହା ଖ୍ରୀଷ୍ଟପୂର୍ବ ଦେଢ଼ହଜାର / ଦୁଇ ହଜାର ବର୍ଷ ତଳର, ଯାହା ଇତିହାସ ଯୁଗର ବହୁ ପୂର୍ବର ପ୍ରସଙ୍ଗ । ନଥିଲା ଆଧୁନିକ ଜ୍ଞାନକୌଶଳ, ନଥିଲା ମଧ୍ୟ ଯନ୍ତ୍ରଚାଳିତ ଜାହାଜମାନ । ମାତ୍ର ଆମ ଦୁର୍ଦ୍ଧର୍ଷ ସାଧବପୁଅ, କାଠ ତିଆରି ବୋଇତରେ ଅଝାଲ ଉଡ଼ାଇ ଚାଲି ଯାଉଥିଲା ଦୂର ବିଦେଶକୁ । ଠିକ୍ ଏଇ କାର୍ତ୍ତିକ ପୂର୍ଣ୍ଣିମା, ସେତେବେଳକୁ ମୌସୁମୀର ବିଦାୟ ପର୍ବ, ଏଣେ ଅନୁକୂଳ ସାମୁଦ୍ରିକ ବାୟୁରେ ଅଝାଲ ଟଣା ବୋଇତମାନ ଯାଏ ନୀଳ ଦରିଆ ଛାତି ଚିରି ଦ୍ୱୀପ ଦ୍ୱୀପାନ୍ତରକୁ ଚାଲିଥିଲା ବେପାର ବଣିଜ ଦେଶ ବିଦେଶରେ । ଏ ଦେଶର ପଣ୍ୟଦ୍ରବ୍ୟ ବିଦେଶରେ ବିକି, ସେ ଦେଶରୁ ଆଣୁଥିଲେ ଭିନ୍ନଭିନ୍ନ ଚିଜ, ଯାହାର ଚାହିଦା ଭାରତରେ ଯଥେଷ୍ଟ ଥିଲା । ଏଣୁ ବାଣିଜ୍ୟରୁ ଉଦ୍‌ବୃତ୍ତ ସମ୍ପତ୍ତିରେ ଓଡ଼ିଶା ହେଲା ବିଭବଶାଳିନୀ, ତଦ୍ ସହିତ ଆମ ସଂସ୍କୃତି, ଆଚାର, ବିଚାରକୁ ବିଦେଶୀମାନେ ଭାରି ଆଦର କଲେ ଏପରିକି ଆମର ସାଧବମାନେ କେତେକ ଦ୍ୱୀପରେ ରାଜଗାଦି ମଧ୍ୟ ପାଇଲେ । ଗଲାଣି ଅତୀତ, ସଂପ୍ରତି ଆମ ନୌବାଣିଜ୍ୟ ରହିଛି କେବଳ ସ୍ମୃତିଟିଏ ହୋଇ । କଦବା କେମିତି ଗୀତଟିଏ ଭାସିଆସେ, ବେତାର ଅବା ଦୂରଦର୍ଶନରୁ କିମ୍ବା ସୁଲଳିତ କଣ୍ଠରୁ ଅନୁପମ ସଙ୍ଗୀତଟିଏ ଯା'ରେ ଭାସିଯା, ନଉକା ମୋର ଭାସିଯା ସଦୃଶ ମାଝିରେ... ଗୀତଟିଏ । ଲହରେଇ, ଲହରେଇ ଚହଲେଇଦିଏ ଆମ ଭାବ ବଳୟକୁ । ଆପଣାଛାଏଁ ମନ ଉଡ଼ିଯାଏ, ନୀଳ ଦରିଆ ଆଡ଼େ । ମନେପଡ଼େ ସେହି ଫେନୀଳ ସାଗର, ତାରକା ଖଚିତ ନୀଳଗଗନର ଧ୍ରୁବତାରା, ମା' ମଙ୍ଗଳା, ସାଧବବୋହୂର ବୋଇତ ବନ୍ଦାଣ ଦୃଶ୍ୟ ସହିତ ଆମ ସାଧବମାନଙ୍କ ମୁଣ୍ଡରେ ଜରି ପଗଡ଼ି, ଘରଣୀଙ୍କ ହାତରେ ପିନ୍ଧା ଯାଇଥିବା ମା'ଙ୍କର ସିନ୍ଦୂର ଟୋପା କଥା । ଏଣିକି ସାଧବ ପୁଅର ନୌଯାତ୍ରା । କର୍ପୂର ଉଡ଼ିଗଲାଣି, କନା ବି ସମ୍ପୂର୍ଣ୍ଣ ନାଶ, ଖାଲି ସ୍ମୃତିଟିଏ ଯାହା ! ସେଇ ସ୍ମୃତି ଫଳକରେ ଏବେ ବି ଦରିଆକୂଳ ବାଲିଯାତ୍ରା, ନୀଳଲହରୀ ବେଣୀଯୁକ୍ତା ମହାନଦୀ ପଠାର ମହୋତ୍ସବମାନ ପ୍ରତିବିମ୍ବିତ । ପୁନଶ୍ଚ ଦିନିକିଆ ସାଧବମାନଙ୍କର ସାଜସଜା, ସାଧାରଣ ଓଡ଼ିଆଣୀର ବୋଇତ ବନ୍ଦାଣ ଦୃଶ୍ୟ, ଗାଡ଼ିଆ, ପୋଖରୀ, ନଦୀ, ନାଳ, ସମୁଦ୍ରରେ ଭାସୁଥିବା ଶହଶହ କାଗଜ ଡଙ୍ଗା । ଏଗୁଡ଼ିକ ଓଡ଼ିଶା ନୌବାଣିଜ୍ୟର ଚିହ୍ନଟିଏ ମାନ ଯାହା ! ମାତ୍ର ପରିତାପର ବିଷୟ ଏଭଳି ଏକ ମହାନ ଜାତିର ଜାଜ୍ୱଲ୍ୟମାନ ବିଭବକୁ ଆମ ଐତିହାସିକମାନେ ଧରି ରଖିବା ପାଇଁ ସଶ୍ରଦ୍ଧ ଉଦ୍ୟମରେ ଅବହେଳା ପ୍ରଦର୍ଶନ କରିଛନ୍ତି । ଏଣୁ ଇତିହାସ ନୁହେଁ, ବରଂ ପ୍ରତ୍ନତାତ୍ତ୍ୱିକ ଖନନ, ଶିଳାଲିପି, ତାମ୍ର ଫଳକ, ଜାତକ କଥା, ପରିବ୍ରାଜକମାନଙ୍କର ପୁସ୍ତକ, ସର୍ବୋପରି ଲୋକକଥା, କିମ୍ବଦନ୍ତୀ, ସାହିତ୍ୟ ହିଁ ଏହାର ମୂଳାଧାର । ଏ ସବୁକୁ ଆଧାର କରି କଳିଙ୍ଗ ନୌବାଣିଜ୍ୟ ପରମ୍ପରା ଆକଳନ ପ୍ରୟାସ ବହୁଳ ଭାବରେ ଜାରି ରହିଛି । ଉକ୍ତ ପ୍ରବନ୍ଧଟିରେ ଆମ ସାହିତ୍ୟ, ଲୋକକଥାକୁ ଭିତ୍ତିକରି ଯାହାକିଛି ସୂଚନା ପ୍ରଦାନ ପ୍ରଚେଷ୍ଟା କରାଯାଇଛି ।

ବିଭବ, ପ୍ରାଚୁର୍ଯ୍ୟ ଆଣେ ସୁଖ ବିଳାସ ମାତ୍ର ଦୁଃଖ ପରିତାପ, ଧନ–ମାନ ହାନୀରେ ମଣିଷର ଆତ୍ମା ଝୁରେ ଅତୀତକୁ । ତାହା ହିଁ ଲୋକ ଚରିତ୍ରର ଏକ ଅଂଶବିଶେଷ । ଠିକ୍ ସେମିତି ଜାତୀୟ ଜୀବନର ଉତ୍କର୍ଷ ପ୍ରକାଶ ପାଇଲାବେଳେ ଆମେ ସୁଖରେ ମଜ୍‌ଗୁଲ ମାତ୍ର ପତନରେ ଆମ ଚେତନା ଉଦୟ ହୁଏ । ଏହି ପ୍ରସଙ୍ଗଟି ଆମ ନୌବାଣିଜ୍ୟ ପାଇଁ ଏକାନ୍ତ ପ୍ରଯୋଜ୍ୟ । ସାହସୀ

କଳିଙ୍ଗ ପୁଅ, ବୀରତ୍ୱ ତା'ର ଅମାପ, କୀର୍ତ୍ତି ମଧ୍ୟ ଦିଗଦିଗନ୍ତ ବ୍ୟାପୀ କିନ୍ତୁ ଆମ ନୌବାଣିଜ୍ୟର ସୁବର୍ଣ୍ଣମୟ ଯୁଗରେ ଇତିହାସ ମୌନ । କାଳ ଯେତେବେଳେ ତା' ଝୁଲିରେ ସବୁ ବାନ୍ଧିନିଏ, ଆମେ ଖୋଜିହେଉ ଅତୀତକୁ, ତାହାକି ଆଉ ମିଳେ ? ମାତ୍ର ସାହିତ୍ୟ ଏ କ୍ଷେତ୍ରରେ ଆମକୁ ନିରାଶ କରିନି ! କରିବା ମଧ୍ୟ ଅସମ୍ଭବ ।

ସାହିତ୍ୟ, ଇତିହାସ ଦୁଇ ଯମଜ ଭଗିନୀ । ଇତିହାସ, କିମ୍ବଦନ୍ତୀର ସାମାନ୍ୟ ଉତ୍ସାହରେ ସାହିତ୍ୟ ହୁଏ ରସୋତ୍ତୀର୍ଣ୍ଣ । ଠିକ୍ ସେମିତି ଆମ ସାହିତ୍ୟ ଅତୀତ ନୌବାଣିଜ୍ୟକୁ ପାଥେୟ କରି ଯଶସ୍ୱିନୀ, ତନ୍ମଧ୍ୟରେ ଲୋକଗୀତ ହିଁ ଅନ୍ୟତମ ଅଂଶୀଦାର । ଏଥିରେ ସାଧବ ପୁଅମାନଙ୍କର ବୋଇତ ବଣିଜ କଥାମାନ ପ୍ରକଟିତ ।

ସାଧବ ପୁଅର ବୋଇତ ସଜବାଜ, ସାଧବାଣୀ, ଧୂପଦୀପ, ନୈବେଦ୍ୟ ପ୍ରଦାନ ପୂର୍ବକ ମାତୃ ପ୍ରତିମାମାନଙ୍କୁ ସଭକ୍ତି ପୂଜା ଅର୍ଚ୍ଚନା କରନ୍ତି, ଯାତ୍ରାର ସମସ୍ତ ଶୁଭାଶୁଭ ମନାସନ୍ତି । ଏମିତି ବି ସମୟ ଆସେ, ଅଦିନିଆ ଝଡ଼ ତୋଫାନ ବୋଇତ ଅଝାଳ ଛିଡ଼େଇ ଦିଏ, ନାଆ ଟଳମଳ, ଏହି ପ୍ରାକୃତିକ ବିପର୍ଯ୍ୟୟରେ ସାଧବ ପୁଅମାନଙ୍କର ଦୁର୍ଦ୍ଦଶାର ଚିତ୍ର ଶଗଡ଼ିଆ ଗୀତରେ ବର୍ଣ୍ଣିତ । ଲୋକ କବିଟି ସେଇ ଅମଙ୍ଗଳ କଥା ଚିନ୍ତାକରି ଗାଇଥାଏ, 'ସାଧବାଣୀ ପୂଜଇ କାଳୀ ଖମ୍ବେଶ୍ୱରୀ/ ଶିମିଳି ଦୀପୁଁ ବୋଇତ ହୋ/ ଆସିବଣି ଫେରି/ ଲଙ୍କାଦ୍ୱୀପ ଅଝାଳ ଛିଣ୍ଡି ଯେ/ ବାଉଳା ବତାସ/ ଅମାପ ଦରିଆରେ ମୋ ସାଧବ ଅଣନିଶ୍ୱାସ ହୋ ।' ଏଥିରୁ ଶିମିଳିଦ୍ୱୀପ, ଲଙ୍କା ଦ୍ୱୀପରେ ଆମ ବାଣିଜ୍ୟ ଚାଲିଥିବା ସୂଚନା ମିଳେ । ସେହିପରି ବୋଇତରେ ଭାଇ ଯାଏ ଦରିଆପାରି, ବିଦାୟ କାଳରେ ଗେହ୍ଲୀ ଭଉଣୀର କେତେ କ'ଣ ଫାର୍ମାସୀ । ବିଭିନ୍ନ ସଉକର ଜିନିଷ ପାଇଁ ଅଳି, ଅର୍ଦ୍ଦଳି, ଭାଇ ମଧ୍ୟ ଭଉଣୀକୁ ଟିକେ ବିରକ୍ତ କରିଦିଏ । ସେଇ ଲଘୁଛଳ ସମ୍ପର୍କିତ ଲୋକଗୀତରୁ ପଦୁଟିଏ, 'ବୋଇତ ମେଲିଛି ହୋ ହାତୀ ଦ୍ୱୀପତଳେ/ ଭଉଣୀ ରଖିଛି ଗମ୍ଭାରୀ ଉହାଡ଼ରେ/ ନରୁଷ ନରୁଷ ଭଉଣୀ ଆଣିଛି ବର/ ସଳଖ ସୁନ୍ଦର ଭେଣ୍ଡା ଯେ/ କାଉଁରୀ ଦେଶେ ଘର ହୋ ।' କେତେକ ଗୀତରେ ଶିଙ୍ଗ, ହାତୀଦାନ୍ତ, ଝିନ ବସନ, ପାନିଆ ପ୍ରଭୃତି ଜାହାଜରେ ଯାଉଥିବା କଥାକୁ ଲୋକ କବି କହିବାକୁ ମଧ୍ୟ ଭୁଲି ନାହାନ୍ତି ।

ଏକଦା ଉତ୍କଳ ନୌବାଣିଜ୍ୟର କୀର୍ତ୍ତି ଏତେ ମନଛୁଆଁ ହୋଇଥିଲା ଯେ, ତାହା ଆମ ଜନଜୀବନକୁ ଏବେ ବି ବହୁଭାବରେ ଆଚ୍ଛନ୍ନ କରି ରଖିଛି । ଏଣୁ ଲୋକକବିଟି ମଧ୍ୟ ଦୋଳି ଗୀତରେ ଗାଏ ନୌବାଣିଜ୍ୟର କଥା । ଉଡ଼ୁଛି ଦୋଳି, ଝୁଲି ଯାଉଛି ଓଡ଼ିଆଣୀର ମନ କେଉଁ ଦୂର ଅତୀତକୁ । ମନେ ପଡ଼ିଯାଏ ଆମ ସାଧବପୁଅଙ୍କ କଥା । ଏଣୁ ସେ ଗାଇଥାଏ, 'ନଈରେ ଚାଲିଛି ନାଆ/ ନାଉରିଆ ଭାଇ ମଥାରେ ଟିକା / ସମଲେଇ ହେଲେ ସାହା/ ଦୋଳିରୁ ଖସିଲା ବତା / ବୋଇତରେ ଗଲେ ସାତ ଖୁଡୁତା/ ଝିଆରୀ ଅମର ମତା/ ଦୋଳିରୁ ଛିଡ଼ିଲା ଲତା / ବୋଇତରେ ଗଲେ ସପତ ଭାଇ/ ବଣେ କାନ୍ଦେ ତଅପୋଇ ।' ଏହି କଥାଟି ମଧ୍ୟ ତଅପୋଇ ଓଷାକଥାରେ ବର୍ଣ୍ଣିତ ।

ଲୋକକଥାରେ ମଧ୍ୟ ଅତୀତ ନୌବାଣିଜ୍ୟ ସମ୍ପର୍କିତ ନମୁନା ମାନ ଭରପୂର । ବିଶେଷ କରି ଚାରି ସଙ୍ଗାତ କଥାରେ ଦେଶ ଶାସନ ବ୍ୟବସ୍ଥାର ଚାରିଗୋଟି ଦିଗ ଆଲୋକିତ । ରାଜାପୁଅ, ଶାସନ ଦାୟିତ୍ୱରେ, ମନ୍ତ୍ରୀପୁଅ ପରାମର୍ଶ ଦାତା, କଟୁଆଳ ପୁଅ ରାଜ୍ୟ ରକ୍ଷକ, ଶେଷରେ ତାଙ୍କ ସହ ଥାନ୍ତି ସାଧବପୁଅ ସେହି ହିଁ ବିଭବର ନିଦର୍ଶନ, ଆର୍ଥନୀତିକ ବ୍ୟବସ୍ଥାର ଦୃଢ଼ତା ସେଇମାନଙ୍କ ଉପରେ ନିର୍ଭର କରେ । ଏଣୁ ଅତୀତରେ ଦେଶର ଖଜଣାର ଉତ୍ସ ଥିଲେ ସାଧବମାନେ, ସେମାନେ ହିଁ ନିର୍ଭରଶୀଳ ନୌବାଣିଜ୍ୟ ଉପରେ । ଠିକ୍ ସେମିତି 'କୁହୁକମଣ୍ଡଳ ଚଢ଼େଇ' ଗପଟିଏ । ବଡ଼ ଦି ଭାଇ ବୋଇତରେ ଗଲେ ବାଣିଜ୍ୟ ପାଇଁ । ସାନଭାଇର ଇଚ୍ଛା କୁହୁକ ଚଢ଼େଇଟିଏ ପାଇଁ । ଭାଇମାନଙ୍କର ଲେଉଟାଣି ବେଳେ ମନେ ପଡ଼ିଲା ସାନଭାଇ କଥା । ରାଜାଙ୍କ ନିକଟରେ କୁହୁକ ଚଢ଼େଇ କଥା ପ୍ରକାଶ କଲାପରେ ରାଜ୍ୟସାରା କେଳାମାନଙ୍କୁ ସେଇ ଅଦ୍ଭୁତ ଚଢ଼େଇଟିଏ ପାଇଁ ରାଜା ଆଦେଶ ଦିଅନ୍ତି । ନଚେତ୍ ମୁଣ୍ଡକାଟ ଶାସ୍ତି । ବହୁ କଷ୍ଟରେ ଅଗ୍ନାଅଗ୍ନି ବନସ୍ତ ଗଛ କୋରଡ଼ରୁ ମିଳିଲା ସେଇ ଚଢ଼େଇ । ରାଜା ଭେଟିଦେଲେ ସାଧବମାନଙ୍କୁ । ସେ ସମୟରେ ଆମ ବଣିକମାନେ ବିଦେଶରୁ ନୂଆନୂଆ ଦ୍ରବ୍ୟ ସ୍ୱଦେଶ ଆଣୁଥିଲେ । ଏହା ସହିତ ଆମ ପଣ୍ୟ ଦ୍ରବ୍ୟର କାଟତି ମଧ୍ୟ ବିଦେଶୀ ବିପଣୀରେ ଖୁବ୍‌ଥିଲା । ତା' ନହୋଇଥିଲେ ଜଣେ ସାଧବ ପାଇଁ ରାଜ୍ୟ ଯାକର କେଳାଙ୍କ ମୁଣ୍ଡ କାଟିବାକୁ ରାଜା ଆଦେଶ ଦେବାକୁ ପଛାଇ ନଥାନ୍ତେ ! ସାଧବଙ୍କ ମନରେ କଷ୍ଟଦେଲେ କାଳେ ତାଙ୍କ ସହ ରାଜ୍ୟର ବାଣିଜ୍ୟ କାରବାର ବନ୍ଦ ହୋଇଯିବ ଏହା ହିଁ ଥିଲା ରାଜାଙ୍କର ଆଶଙ୍କା । ତେଣୁ ଯେନତେନ ପ୍ରକାରେ ଆମ ସାଧବମାନଙ୍କ ଇଚ୍ଛା ପୂରଣ ପାଇଁ ଅନ୍ୟ ଦେଶମାନେ ବିଶେଷ ଯତ୍ନଶୀଳ ଥିଲେ ।

ଅତୀତ ଉତ୍କଳ ନୌବାଣିଜ୍ୟ ସମ୍ପର୍କିତ କେତେ ଓଷା କଥାମାନ ଆମ ଜନଜୀବନକୁ ରସସିକ୍ତ କରିଛି । ତନ୍ମଧ୍ୟରୁ ବୃହତ୍ ତଅପୋଇ ବା ଖୁଦୁରୁକୁଣୀ ଓଷା, ଖୁଲଣା ସୁନ୍ଦରୀ କଥା ବେଶ୍ ଜନପ୍ରିୟ । ଏହାର ଉପଜୀବ୍ୟ ହିଁ ନୌବାଣିଜ୍ୟ । କଳିଙ୍ଗର

ସାଧବମାନେ କାର୍ତ୍ତିକ ମାସ ପୂର୍ଣ୍ଣିମାରେ ବେପାରକୁ ବାହାରନ୍ତି । କାର୍ତ୍ତିକ ମାସ ହିଁ ପୁଣ୍ୟ ମାସ, ମାସଟାଯାକ ସାତ୍ତ୍ୱିକ ଜୀବନଧାରା, ତତ୍ ସହିତ ଏହି ସମୟରୁ ହିଁ ଅନୁକୂଳ ପାଗଯୋଗ। ତେଣୁ ସାଧବପୁଅ ବାଛି ନେଇଥିଲେ ଏଇମାସ ପୂର୍ଣ୍ଣିମାକୁ ଶୁଭଯାତ୍ରା ପାଇଁ। ଯାତ୍ରା ସମୟରେ ବୋଇତ ମଙ୍ଗରେ ଥିବା ମା' ମଙ୍ଗଳାଙ୍କ ଚରଣରେ ପ୍ରଣତି ବାଢ଼େ ସାଧବାଣୀ, ଯାତ୍ରାର ଶୁଭାଶୁଭ କାମନା କରେ। ତେଣୁ ଖୁଦୁରୁକୁଣୀ ଓଷା, ଖୁଲଣାସୁନ୍ଦରୀ ଉପାଖ୍ୟାନରେ ବିଜଡ଼ିତ ମା' ମଙ୍ଗଳା ଓଷାରେ ହିଁ ସେହି ସାଧବମାନଙ୍କର ସୁଖଦୁଃଖର କଥା । ସାତଭାଇଙ୍କର ବୋଇତ ଯାତ୍ରା ପରେ ଅଲିଅଳୀ ତଅପୋଇକୁ ଛ' ଭାଉଜଙ୍କର ଅବହେଳା, ନିର୍ଯ୍ୟାତନା । ଏଥିରୁ ମୁକ୍ତି ପାଇବା ସହିତ ଭାଇମାନଙ୍କ ସାକ୍ଷାତ ପାଇଛି ସାଗରକୂଳ ଘଞ୍ଚ ଜଙ୍ଗଲରେ ତଅପୋଇ। ତା' ସମ୍ଭବ ହେଲା କୃପାମୟୀ ମା' ମଙ୍ଗଳାଙ୍କ ଆଶୀର୍ବାଦରୁ। ସେମିତି ଧନେଶ୍ୱର ସାଧବର ବୋଇତ ଯାତ୍ରା କାଳୀନ ଦୁଃଖ ଦୁର୍ଦ୍ଦଶା, ଘରେ ଖୁଲଣା ସୁନ୍ଦରୀଙ୍କୁ କଷଣ ଦିଅନ୍ତି ନୟନାସୁନ୍ଦରୀ। ଖୁଲଣାଙ୍କ ପୁଅ ଶ୍ରୀଧର ମା' ମଙ୍ଗଳାଙ୍କ କୃପାରୁ ପିତାଙ୍କୁ ବିଦେଶରୁ ବନ୍ଦୀମୁକ୍ତ କରେ। ପୁନଶ୍ଚ ସୁଖଶାନ୍ତି ଫେରିଆସେ ସେଇ ମା'ଙ୍କ କରୁଣାରୁ। ଏଠାରେ ଉଲ୍ଲେଖନୀୟ କଥା ହେଲା ତଅପୋଇ ଭାଦ୍ରବ ମାସରେ ହିଁ ବିଦେଶ ଫେରନ୍ତା ଭାଇଙ୍କୁ ପାଇଛି। କାରଣ ଶ୍ରାବଣ ଭାଦ୍ରବ ବେଳକୁ ଦକ୍ଷିଣପୂର୍ବ ମୌସୁମୀ ବାୟୁର ତୀବ୍ରତା ଝଡ଼ ତୋଫାନ ସୃଷ୍ଟି କରେ। ବୋଇତର ମଧ୍ୟ ପ୍ରଭୁତ କ୍ଷତି ଘଟେ। ଆମ ସାଧବମାନେ ଏହି ସମୟରେ ଫେରି ଆସିବା କଥା ଉକ୍ତ ଓଷାକଥାରେ ବର୍ଣ୍ଣିତ ଘଟଣାରୁ ମଧ୍ୟ ଜଣାପଡ଼େ। ଖୁଲଣାସୁନ୍ଦରୀରେ ଲବଣ ସାଗର, ଜୋକ ସାଗର, ଚିଙ୍ଗୁଡ଼ିସାଗର କଥାରୁ ଆମ ସାଧବମାନେ ସାମୁଦ୍ରିକ ନୌବାଣିଜ୍ୟରେ ଏକଦା ଘଟୁଥିବା ସୂଚନା ମିଳେ। କଳିଙ୍ଗ ସାଧବମାନେ କେମିତି ବେପାର ବଣିଜ କରୁଥିଲେ, ଏହା ସୂଚନା ତଅପୋଇ ଉପାଖ୍ୟାନରେ ପ୍ରକଟିତ। 'ଜମ୍ବୁଦ୍ୱୀପ, ଦ୍ୱୀପଙ୍କ ମଧ୍ୟେ ଅଷ୍ଟଗିରି/ ବେଢ଼ିଛି ମେରୁକୁ ଆବୋରି।' ଏହି ଦ୍ୱୀପରେ ରାଜା ତିଳଧ୍ୱଜ। 'ତାଙ୍କରି ରାଜ୍ୟରେ ବହୁତ ସାଧବ ଅଛନ୍ତି/ ବୋଇତେ ବାଣିଜ୍ୟ କରନ୍ତି/ ସେହି ବାଣିଜ୍ୟ ପରସାଦେ/ କିଣନ୍ତି କୁବେରଙ୍କୁ ବାଦେ।' ଏମିତି ଓଷାକଥାମାନଙ୍କରୁ ଖିଅଧରି ଆମ ଗବେଷକମାନେ ଅତୀତ ନୌବାଣିଜ୍ୟ ସମ୍ପର୍କରେ ବହୁ ତଥ୍ୟ ପ୍ରଦାନ କରିଛନ୍ତି। ତଅପୋଇ ଓଷାକଥାର ସାତ ସାଧବମାନଙ୍କ ନାମାନୁଯାୟୀ ବଙ୍ଗୋପ ସାଗର ତଟସ୍ଥ ସାତଭାୟା ଗାଁ ନାମିତ ବୋଲି ମତବ୍ୟକ୍ତ କରନ୍ତି। ଏଥି ସହିତ ଆମ ପୁରାଣ ସାହିତ୍ୟ ମଧ୍ୟ ବିଭବଶାଳିନୀ ନୌବାଣିଜ୍ୟର ଚିତ୍ର ବହନ କରେ।

ପଞ୍ଚଦଶ ଶତାବ୍ଦୀର କବି ସାରଳା ଦାସ ଆପଣାର ମହାଭାରତ ଗ୍ରନ୍ଥରେ ଓଡ଼ିଶାର ନୌବାଣିଜ୍ୟ କଥା କେତେକ ସ୍ଥାନରେ ଉଲ୍ଲେଖ କରିଛନ୍ତି । ପାରସ୍ୟ ଦେଶର ଘୋଡ଼ାମାନଙ୍କୁ ଓଡ଼ିଆ ବୀରମାନଙ୍କୁ ଉପହାର ଦିଆଯାଉଥିବା ଆମ ନୌବାଣିଜ୍ୟ ପାରସ୍ୟ, ସିଂହଳ, ସୁବର୍ଣ୍ଣ ଦ୍ୱୀପ ଆଦି ସ୍ଥାନରେ ଚାଲୁଥିବା କଥା ବିଶେଷ ଭାବରେ ମହାଭାରତରେ ବର୍ଣ୍ଣିତ। ଦ୍ରୌପଦୀଙ୍କର ସ୍ୱୟମ୍ବର ସଭାରେ ବିଭିନ୍ନ ଦେଶରୁ ରାଜକୁମାରମାନେ ଆପଣାର ସୈନ୍ୟବାହିନୀ ସହ ଉପସ୍ଥିତ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ଓଡ଼ିଶାର ଯାଜନଗର, ଓଡ୍ର, କଳିଙ୍ଗ, କନକବତୀ ପାଟଣାର ରାଜା, ତନ୍ମଧ୍ୟରୁ କନକବତୀ ପାଟଣାର ରାଜାଙ୍କର ଥିଲା ନୌକାବଳ। ଏହା ସାରଳାଙ୍କର ଆଦିପର୍ବରେ ଉଲ୍ଲେଖ ଅଛି, 'କନକବତୀ ପାଟଣାର ନୀଳରାମ ଦଣ୍ଡଧର/ ଅଶୀ ସହସ୍ର ନାବଘେନି ଆସି ସ୍ୱୟେଂବର ।' ପୁନଶ୍ଚ ସେ କାର୍ତ୍ତିକ ମାସକୁ ଆକାମାବଇର ସ୍ନାନ ଆଖ୍ୟା ଦେଇଛନ୍ତି। କାର୍ତ୍ତିକ ମାସ ଶୁକଳ ପକ୍ଷ ବୁଧବାର ଯେ ପୂର୍ଣ୍ଣମୀ/ ଆକାମା' ବଇ ସ୍ନାହାନ ଦିନ ଗଙ୍ଗାକୁ ଗଲେ କୁନ୍ତ ଭୋଜ ସ୍ୱାମୀ(ମହାଭାରତ–ଆଦିପର୍ବ)। କାର୍ତ୍ତିକ ପୂର୍ଣ୍ଣିମାରେ ଡଙ୍ଗା ଭସା ପରମ୍ପରା ପ୍ରସଙ୍ଗ ବିଭିନ୍ନ ସାହିତ୍ୟରେ ସ୍ଥାନିତ। ପଞ୍ଚସଖା ଯୁଗର ଅଚ୍ୟୁତାନନ୍ଦଙ୍କ 'କୈବର୍ତ୍ତଗୀତା', କାବ୍ୟଯୁଗର କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ', 'ପ୍ରେମ ସୁଧାନିଧି', ଦୀନକୃଷ୍ଣଙ୍କ 'ପ୍ରସ୍ତାବସିନ୍ଧୁ' ସହିତ ବିଭିନ୍ନ ସମୟରେ କବିମାନେ ଉତ୍କଳ ନୌବାଣିଜ୍ୟ କଥା ସେମାନଙ୍କର କାବ୍ୟ କବିତାରେ ଚିତ୍ରଣ କରିବାର ଲୋଭ ମଧ୍ୟ ସମ୍ବରଣ କରିପାରି ନାହାନ୍ତି। ତନ୍ମଧ୍ୟରୁ ବାସୁଦେବ ରଥଙ୍କ ଲିଖିତ 'ଗଙ୍ଗବଂଶାନୁଚରିତ', ଶିଶୁ ଶଙ୍କର ଦାସଙ୍କ 'ଉଷାଭିଳାସ'ରେ ମଞ୍ଜୁଳ ନୌବାଣିଜ୍ୟର ରସୋତ୍ତୀର୍ଣ୍ଣ ବର୍ଣ୍ଣନାମାନ ବହୁ ସମାଲୋଚକଙ୍କ ଦୃଷ୍ଟି ଆକର୍ଷଣ କରେ।

ବ୍ୟାସକବି ଫକୀରମୋହନ ସେନାପତିଙ୍କ 'କମଳା ପ୍ରସାଦ ଗୋରାପ ଗଳ୍ପ'ରେ ବାବୁ ରାମହରି ନାମକ ଜଣେ କ୍ଷୁଦ୍ର ମହାଜନଙ୍କ କଥା ବର୍ଣ୍ଣିତ । ସେଇ ମହାଜନଙ୍କ ଜାହାଜ ମାନ୍ଦ୍ରାଜ, ରେଙ୍ଗୁନ୍, କଲମ୍ବୋ ଆଦି ବନ୍ଦରକୁ ଯାଉଥିଲା । ଜାହାଜର ମାଲିକ ସ୍ୱରୂପ ନାୟକ। ପ୍ରଥାନୁଯାୟୀ ତା'ର ଦୁଇପଣି ପାଲ ନେବାର ଅଧିକାର ଥିଲା। ତା'ଠାରୁ ମହାଜନ ପଇସା ନେଉ ନଥିଲା। ମାତ୍ର ତା' ପାଖରେ ପୁଞ୍ଜି ଅଭାବରୁ ମାଲିକର ଅନ୍ୟାନ୍ୟ ଚାକର, ଗୁମାସ୍ତା, ପାଇକମାନଙ୍କଠାରୁ କିଛି କିଛି ଟଙ୍କା ରଣନିଏ । ଏହି ଟଙ୍କାକୁ ବଟମୀ କୁହାଯାଏ। ଏସବୁ ଲବ୍ଧ ଲାଭାଂଶକୁ ସମସ୍ତେ ବାଣ୍ଟି ନିଅନ୍ତି, ଏହି ବଟମୀ ଶବ୍ଦ ଇଂରାଜୀ 'ବଟମରୀ' ଶବ୍ଦରୁ ଗୃହୀତ । ଏମିତି

ଟଙ୍କା ଲଗାଣ, ଉହ୍ୟ ସୁଧ ବ୍ୟବସ୍ଥା ତତ୍କାଳୀନ ବାଣିଜ୍ୟ ବ୍ୟବସାୟର ନମୁନାଟିଏ ମାତ୍ର ।

ଫକୀର ମୋହନଙ୍କ ଆତ୍ମଜୀବନ ଚରିତରେ ଅତୀତ ଓଡ଼ିଶା, ବିଶେଷ କରି ବାଲେଶ୍ୱରରୁ ଚାଲୁଥିବା ବାଣିଜ୍ୟ ଚିତ୍ର ଖୁବ୍ ସ୍ପଷ୍ଟ । ବାଲେଶ୍ୱର ତିଆରି ସୂକ୍ଷ୍ମ କପାସ, ରେଶମୀ ଶାଢ଼ୀ ବିଦେଶିନୀଙ୍କର ଖୁବ୍ ପସନ୍ଦ ଥିଲା । ସେହିପରି ବାଲେଶ୍ୱରୀ ଲୁଣର ଚାହିଦା ମଧ ବେଶ୍‌ଥିଲା । ଏ ସମସ୍ତ ପ୍ରସଙ୍ଗ ତାଙ୍କ ଆତ୍ମଜୀବନ ଚରିତରେ ପ୍ରାଞ୍ଜଳ ଭାବେ ବର୍ଣ୍ଣିତ । ଏପରିକି ବଣିକମାନଙ୍କର ଶୁଭ ମନାସୀ ସରକାରୀ ଖର୍ଚ୍ଚରୁ ମଧ ପୂଜାର୍ଚ୍ଚନା କରାଯାଉଥିଲା । ତେଣୁ ଫକୀରମୋହନ ଉଲ୍ଲେଖ କରିଛନ୍ତି, ଜାହାଜ ସବୁ ସମୁଦ୍ର ମଧରେ କୁଶଳରେ ଯାତାୟାତ କରିବା ନିମନ୍ତେ ସହରର ସମସ୍ତ ଦେବତାମାନଙ୍କର ପୂଜା ଏବଂ ଚଣ୍ଡୀପାଠ ସକାଶେ ଶତଶତ ବ୍ରାହ୍ମଣ ପଣ୍ଡିତ ନିଯୁକ୍ତ ଥିଲେ । ପ୍ରତିବର୍ଷ କାର୍ତ୍ତିକ ମାସ ଲୁଣ ପୋକ୍ତାନ ଆରମ୍ଭ ପୂର୍ବରୁ ପୋକ୍ତାନ କାର୍ଯ୍ୟ ସୁସାରରେ ସମାଧାନ ନିମନ୍ତେ ସରକାର ତରଫରୁ କଚେରୀ ନିକଟବର୍ତ୍ତୀ ଝାଡ଼େଶ୍ୱର ମହାଦେବଙ୍କୁ ପୂଜା ଦିଆଯାଉଥିଲା। ପୂଜାର ସମସ୍ତ ଖର୍ଚ୍ଚ ସରକାରୀ ଖଜଣା ଖାନାରୁ ଦିଆଯାଉଥିଲା । ସମସ୍ତଙ୍କ ଧାରଣା ଥିଲା ଜାହାଜ ଧର୍ମଡଙ୍ଗା, ଧର୍ମାନୁଷ୍ଠାନ ନକଲେ ଡଙ୍ଗା ବୁଡ଼ିଯିବ। ହାୟ ! ହାୟ ! ବାଲେଶ୍ୱରରେ କେଉଁ ମହାପାପ ଯୋଗୁଁ ସେହି ଡଙ୍ଗାଗୁଡ଼ିକ ଚିରକାଳ ପାଇଁ ବୁଡ଼ିଯାଇଛି । ସମୟକ୍ରମେ ଲୁଣ ପୋକ୍ତାନ ଉଠିଯିବା ସହିତ ବାଲେଶ୍ୱରର ଯେମନ୍ତ ଲକ୍ଷ୍ମୀ ଚାଲିଯାଇଛନ୍ତି । ଏମିତି ଅତୀତ କଳିଙ୍ଗ, ଓଡ଼ିଶା ନୌବାଣିଜ୍ୟର ଉନ୍ନତି, ବିଲୟର ଜାତିଜାତିକା ପ୍ରସଙ୍ଗ ଆମ ସାହିତ୍ୟରେ ଭାରି ରସସିକ୍ତ ।

ବିଦେଶୀ ବଣିକଙ୍କର ଏକଚାଟିଆ ଆଧିପତ୍ୟ, ବିଶେଷ କରି ଇଂରେଜ ବଣିକମାନଙ୍କର ସ୍ୱର୍ଦ୍ଧିତ ବାଣିଜ୍ୟ ଲିପ୍‌ସା ତଥା କ୍ଷମତା ବିସ୍ତାରରେ ୟୁରୋପର ବଣିକମାନଙ୍କ ସହ ଆମ ପାଲଟଣା ବୋଇତମାନେ ସମ୍ପୂର୍ଣ୍ଣ ବିଲୟ ଭଜିଲେ। ତତ୍‌ସହିତ ଓଡ଼ିଶାର ନଦୀ ମୁହାଣମାନ ପୋତିହେବା, ବିଦେଶୀ ଯନ୍ତ୍ରଚାଳିତ ଜାହାଜର ବର୍ଷକ ବାରମାସୀ ବେପାର ନିକଟରେ ଆମ ସାଧବପୁଅଙ୍କ ଅନୁକୂଳ ପାଗଯୋଗ ବଣିଜ କାରବାର ନ୍ୟୂନ ପଡ଼ିବା ଆଦି କାରଣ ମାନ ଓଡ଼ିଶା ନୌବାଣିଜ୍ୟର ପତନର କାରଣ। ଏଇ କଥାଟା ନାହିଁ ନଥିବା ଖେଦ ସୃଷ୍ଟି କରିଛି, ଓଡ଼ିଆ ପ୍ରାଣରେ ପ୍ରଚଣ୍ଡ ଶେଳାଘାତ କରିଛି। ତେଣୁ ଫକୀର ମୋହନ ଲେଖିଲେ, ମୁଁ ବାଲ୍ୟକାଳରେ ଦେଖିଥିଲି ପ୍ରାୟ ସେଠାରେ ଶତାଧିକ ତନ୍ତୀଘର ଥିଲା। ସେମାନଙ୍କର ସ୍ତ୍ରୀଲୋକମାନେ ସୁନା ରୂପା ଅଳଙ୍କାରରେ ଭୂଷିତା ଥିଲେ। ବର୍ତ୍ତମାନ ସେହି ଗ୍ରାମ କ୍ରମଶଃ ପଡ଼ିଆ ପଡ଼ିଗଲାଣି। ସମସ୍ତେ ପ୍ରାୟ ଭିକାରି...। ଫକୀରମୋହନଙ୍କ ବାଲେଶ୍ୱରସ୍ଥିତ ଗ୍ରାମ ସମୀପ ମାକଲପୁର ଗାଁର ଏ ଦୁରବସ୍ଥା କେବଳ ବାଲେଶ୍ୱର ନୁହେଁ ସାରା ଓଡ଼ିଶାରେ ଧ୍ୱସ୍ତ ବିଧ୍ୱସ୍ତ ନୌବାଣିଜ୍ୟର ପତନ ଜନିତ ଆର୍ଥନୀତିକ ଚିତ୍ର ଏଥିରୁ ଅନୁମେୟ ।

ଦିନ ଚାଲିଯାଏ ଚିହ୍ନମାନ ରହିଯାଏ ବହୁ ସମୟକୁ । ଆମ ନୌବାଣିଜ୍ୟର ବିଭବର ସ୍ମୃତି ଏବେ ବିସ୍ମୃତି ମୁହାଁ । ତଥାପି ଏକ ଗୌରବାବହ ପରମ୍ପରା, ଐତିହ୍ୟର ଅବସାନରେ କେଉଁ ଜାତି ପ୍ରେମୀଟି ବା ଦେହ ଧରିବ ? ସମୟର ଚହଲା ପାଣିରେ ହଜିଗଲେ ଆମ ଅଝାଲଟଣା ବୋଇତମାନେ ଆଉ ଅତୀତ ନୌବାଣିଜ୍ୟ ଏବେ କିମ୍ବଦନ୍ତୀଟିଏ ଯାହା !

ଆମ ନୌବାଣିଜ୍ୟ ସ୍ମୃତି ଚହଟିଲା ଆମ କବି, ଲେଖକ, ଭାବୁକଙ୍କ ପ୍ରାଣରେ । ବେଶ୍ କିଛିଦିନ ମଧ ଆଚ୍ଛନ୍ନ କରି ରଖିଲା ସେମାନଙ୍କୁ। ତେଣୁ ଅତୀତ କିମ୍ବଦନ୍ତୀ, ଲୋକକଥା, ଇତିହାସର ଛାୟାରେ ଲେଖାଗଲା ନାନାଦି ରସାଳ ସାହିତ୍ୟ । ତାହା ତ' ସ୍ମୃତିକୁ ବାନ୍ଧି ରଖିବ କାଳକାଳକୁ। ସେଇ ନୌବାଣିଜ୍ୟକୁ ନେଇ ପ୍ରେମ ପ୍ରଣୟର କଥା ଡକ୍ଟର ମାୟାଧର ମାନସିଂହଙ୍କର 'ସାଧବ ଝିଅ'। ପ୍ରତୀକ୍ଷା ତା'ର ପ୍ରିୟ ପୁରୁଷ ସାଧବ ପାଇଁ । ମନରେ ଅସରନ୍ତି ଭାବନା, 'ହୋଇଛି ରଜନୀ, ଉଠିଛି ଚାନ୍ଦ/ ନାଚେ ଦରିଆ/ କାହାପାଇଁ ମୁହିଁ ସାଧବ ଝିଅ/ ଏକାକୀ ତୋ ତୀରେ ହୋଇଛି ଠିଆ ?' ଏମିତି ଶହଶହ ସାଧବାଣୀଙ୍କର ମାସମାସର ପ୍ରତୀକ୍ଷା, ସାଧବପୁଅଙ୍କ ଲେଉଟାଣି ପାଇଁ, ମାତ୍ର ଆଉ ନାହିଁ ସେ ଦିନ, ନାହାନ୍ତି ସାଧବମାନେ, ତଥାପି ସେଇ ଚହଲା ସ୍ମୃତିରୁ ଖିଏ । ହସୁଛି ଚାନ୍ଦ, ନାଚୁଚି ଦରିଆ, ବହୁଛି ଅନୁକୂଳ ବାୟୁ, ନାହିଁ ଗହଳ ଚହଳ, ନିଶ୍ଚଳ ବେଳାଭୂମି । କବି ଆତୁରେ ଗାଇଛନ୍ତି, 'ନିଜନ ବେଳା / ନିଜନ ବେଳା/ କହୁନାହିଁ କାହିଁ ବୋଇତ ଗଲା', ବୋଇତ ଗଲା। ନାହିଁ ବୋଇତ, ଭାସୁଛି ତା' ସ୍ଥାନରେ ହଜାର, ହଜାର କାଗଜ ଡଙ୍ଗା । ଓଡ଼ିଆଣୀ ସେଥିରେ ବାଢ଼ି ଦେଇଛି ପାନ, ଗୁଆ, ଖଇର, ଜଳୁଛି ମହମବତୀ ଦିକିଦିକି । ଶୁଭୁଛି, ଆକାମାବଇ, ସତେ ଯେମିତି ଆମ ନୌବାଣିଜ୍ୟ ସ୍ମୃତିମାନେ ଭାସି ଯାଉଛନ୍ତି ମଝି ଦରିଆରେ, ପୁନଶ୍ଚ ସ୍ମୃତିର ରୋମନ୍ଥନ, ଅପେକ୍ଷା ଆରସନ ଏଇ କାର୍ତ୍ତିକ ପୂନେଇଁ ରାତି ପାହାନ୍ତିକୁ !

ସା/ପୋ: ପୁରୁଷୋତ୍ତମପୁର
ଜି: କେନ୍ଦ୍ରାପଡ଼ା–୭୫୪୨୨୩

# କୀର୍ତ୍ତିମୟ କାର୍ତ୍ତିକ

**ଡକ୍ଟର ଶରତ ଚନ୍ଦ୍ର ପରିଡା**

ଭାରତୀୟ ଧାର୍ମିକ ପରମ୍ପରାରେ କାର୍ତ୍ତିକ ଏକ ପବିତ୍ର ମାସ । ଆମ ସଂସ୍କୃତିର ଏହା ପ୍ରତୀକ । ଏହା ମାନବ ଧର୍ମ ଉପରେ ଆଧାରିତ । ସୁସ୍ଥ ଓ କଲ୍ୟାଣମୟ ଜୀବନ ଯାତ୍ରା ନିମନ୍ତେ କାର୍ତ୍ତିକ ମାସ ଆମକୁ ସୁଦୂରପ୍ରସାରୀ ପ୍ରେରଣା ଯୋଗାଇଥାଏ । ପରୋପକାରକ ତଥା ଆତ୍ମକଲ୍ୟାଣମୂଳକ କାର୍ଯ୍ୟର ଅନ୍ୟନାମ ହେଉଛି ଧର୍ମ । ତା' ବଳରେ ଧରଣୀରେ ମାନବର ସ୍ଥିତି ସୁଦୃଢ଼, ସୁସ୍ଥ ତଥା ସୁଖପ୍ରଦ ହୋଇଥାଏ । ଧରା ବକ୍ଷରେ ଶ୍ରେଷ୍ଠ ସୃଷ୍ଟି ହୋଇଛି ମଣିଷ । ସେହି ଜୀବନ ଧର୍ମ ଅର୍ଜନ ଦ୍ୱାରା ସାର୍ଥକ ଏବଂ ପାପମୁକ୍ତ ହୋଇଥାଏ । ତେଣୁ ଯୁଗ ଯୁଗ ଧରି ଆମ ଚିନ୍ତା ଓ ଚେତନାରେ ଧର୍ମ ପ୍ରତି ସ୍ୱତନ୍ତ୍ର ଶ୍ରଦ୍ଧା ଓ ସମ୍ମାନ ରହିଛି । ଅନ୍ୟ ମାସର ତିଥିମାନଙ୍କରେ ପର୍ବପର୍ବାଣି ପାଳନ ଗୋଟିଏ ବା ଦୁଇଦିନ କିମ୍ବା ଦଶହରା ପରି ପର୍ବ ଅତି ବେଶୀରେ ପାଞ୍ଚ ଦିନ ମଧ୍ୟରେ ସୀମିତ ଥାଏ । ମାତ୍ର କାର୍ତ୍ତିକ ମାସରେ ଅନୁଷ୍ଠିତ ହେଉଥିବା ପୁଣ୍ୟକାରକ ଓ ପାପନାଶକ କାର୍ଯ୍ୟାବଳି ମାସକ ଯାକ ପରିବ୍ୟାପ୍ତ ହୋଇଥାଏ । କାର୍ତ୍ତିକ ବ୍ରତ ପାଳନରେ ତିରିଶ ଦିନ ଯାକ ଯେତେ ନିଷ୍ଠାର ସହ ଦିନଚର୍ଯ୍ୟା ଓ ଦେବବିଧି କରାଯାଏ, ତାହା ଅନ୍ୟ କୌଣସି ମାସରେ କରାଯାଇନଥାଏ ।

**ପରମ ପବିତ୍ର ଧର୍ମ ମାସ କାର୍ତ୍ତିକ:** ହିନ୍ଦୁ ଧର୍ମରେ କାର୍ତ୍ତିକ ମାସକୁ ପରମ ପବିତ୍ର ଧର୍ମ ମାସ କୁହାଯାଏ । ଆମ ଶାସ୍ତ୍ରରେ ଅଛି, ଧର୍ମେଣ ହୀନାଃ ପଶୁଭିଃ ସମାନାଃ । ଅର୍ଥାତ୍ ଆହାର, ନିଦ୍ରା, ଭୟ ଓ ମୈଥୁନ ଏହା ମନୁଷ୍ୟ ତଥା ପଶୁକ୍ଷେତ୍ରରେ ସମାନ । କିନ୍ତୁ ଧର୍ମ ହେଉଛି ଏକମାତ୍ର ବିଶେଷତ୍ୱ ଯାହା ପଶୁଠାରୁ ମନୁଷ୍ୟକୁ ପୃଥକ୍ କରେ । ଶୁଦ୍ଧ ବିଚାର ଓ ସଦାଚାର ସମୁଦାୟକୁ ଧର୍ମ କୁହାଯାଏ । ଧର୍ମ ଅର୍ଜନରେ କାଳକ୍ଷେପଣ ନୀତି ବର୍ଜନୀୟ । ତେଣୁ କୁହାଯାଇଛି, 'ଗୃହୀତ ଇବ କେଶେଷୁ ମୃତ୍ୟୁନା ଧର୍ମମାଚରେତ୍' । ଅର୍ଥାତ୍ ମୃତ୍ୟୁଦେବତା ଯମ ଆସି କେଶ ଆକର୍ଷଣ କଲେ ମଧ୍ୟ ମଣିଷ ଧର୍ମକାର୍ଯ୍ୟ ସମ୍ପାଦନରୁ ନିଃବୃତ୍ତ ହେବା ଉଚିତ ନୁହେଁ । ଆତ୍ମକଲ୍ୟାଣମୂଳକ ଓ ଜନହିତକାରକ କାର୍ଯ୍ୟକୁ କୌଣସି ପରିସ୍ଥିତିରେ ହାତଛଡା କରିବା ଅବିଧେୟ । ମୃତ୍ୟୁ ପର୍ଯ୍ୟନ୍ତ ଧନପୁତ୍ରଦାରା ସଖାସହୋଦର ସାଙ୍ଗରେ ଥା'ନ୍ତି । ମୃତ୍ୟୁ ପରେ କେହି ସାଙ୍ଗରେ ଯା'ନ୍ତି ନାହିଁ । ଧର୍ମ କିନ୍ତୁ ଏକମାତ୍ର ସଖା ଯିଏ ମୃତ୍ୟୁ ପରେ ମଧ୍ୟ ସାଙ୍ଗରେ ଯାଇଥାଏ । କାର୍ତ୍ତିକ ବ୍ରତ ଆଚରଣ କରିବା ଦ୍ୱାରା ମନୁଷ୍ୟର ଧର୍ମବଳ ବଢେ ।

ହିନ୍ଦୁ ଧର୍ମରେ ବର୍ଷକୁ ବାରଟି ମାସରେ ବିଭକ୍ତ କରାଯାଇଛି । ପ୍ରତିପଦା ଠାରୁ ପୂର୍ଣ୍ଣମୀ ପର୍ଯ୍ୟନ୍ତ ତିରିଶ ଦିନକୁ ଚନ୍ଦ୍ରର ଚଳନ ଅନୁସାରେ ମାସ ରୂପେ ଗ୍ରହଣ କରାଯାଇଛି । ବୈଶାଖଠାରୁ ଆରମ୍ଭ କରି ଚୈତ୍ର ପର୍ଯ୍ୟନ୍ତ ଗୋଟିଏ ବର୍ଷ ବା ବାରମାସ । ବିଭିନ୍ନ ପୁରାଣ ଅନୁସାରେ ପ୍ରତ୍ୟେକ ମାସର ସ୍ୱତନ୍ତ୍ର ଧାର୍ମିକ ମହତ୍ତ୍ୱ ରହିଛି । ତନ୍ମଧ୍ୟରୁ ସପ୍ତମ ମାସ ହେଉଛି କାର୍ତ୍ତିକ ମାସ । ବିଭିନ୍ନ ଉତ୍ସବ ଦୃଷ୍ଟିରୁ ବୈଶାଖ, ଆଷାଢ଼, ଆଶ୍ୱିନ ଓ ଫାଲ୍‌ଗୁନ୍ ମାସର ମହତ୍ତ୍ୱ ରହିଛି । କିନ୍ତୁ ନିଷ୍ଠା ଓ ବ୍ରତ ଆଚରଣ ଦୃଷ୍ଟିରୁ କାର୍ତ୍ତିକ ମାସର ବିଶେଷତ୍ୱ ସମଧିକ । ଏହି ମର୍ମରେ ସ୍କନ୍ଦ ପୁରାଣରେ କାର୍ତ୍ତିକ ମାସର ଶ୍ରେଷ୍ଠତ୍ୱ ପ୍ରତିପାଦିତ ହୋଇଛି ।

କାର୍ତ୍ତିକ ସମ ମାସ ନାହିଁ । ସତ୍ୟ ଯୁଗ ପରି ଯୁଗ ନାହିଁ । ବେଦ ସମାନ ଶାସ୍ତ୍ର ନାହିଁ । ଗଙ୍ଗା ସଦୃଶ ତୀର୍ଥ ନାହିଁ । ଅନ୍ନ ଦାନ ପରି ଦାନ ନାହିଁ । ପତ୍ନୀସୁଖ ଠାରୁ ସୁଖ ନାହିଁ । ତେଣୁ କାର୍ତ୍ତିକ ମାସ ଶ୍ରେଷ୍ଠ । ଦେବ ଆରାଧନା ଓ ଉପାସନା ଦୃଷ୍ଟିରୁ ଏହା ସର୍ବୋତ୍ତମ । ବାସ୍ତବରେ ଅନ୍ନ ଦାନର ମହତ୍ତ୍ୱ ଅବର୍ଣ୍ଣନୀୟ । କନ୍ୟାଦାନ ସବୁଠୁ ବଡଦାନ । ତା'ଠୁ ଅଧିକ ବିଦ୍ୟାଦାନ । ବିଦ୍ୟାଦାନଠୁ ଅଧିକ ଗୋ'ଦାନ ଏବଂ ଗୋଦାନଠାରୁ ଅନ୍ନ ଦାନର ମହତ୍ତ୍ୱ ସର୍ବାଧିକ । କାରଣ ଏ ସମସ୍ତ ସଂସାର ଅନ୍ନ ଆଧାରରେ

ଜୀବିତ । ଏହି ମାସର ପ୍ରତିଟି ମୁହୂର୍ତ୍ତ ଆଧ୍ୟାତ୍ମିକ ଭାବନାରେ ରଞ୍ଜିମନ୍ତ ।

ଏହି ମାସର ସାଂସ୍କୃତିକ ମହତ୍ତ୍ୱ ଅତୁଳନୀୟ । ପରମ ପୁଣ୍ୟ ସ୍ୱରୂପ । ଏହା ବାର ମାସମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଶ୍ରୀହରିଙ୍କର ଅତୀବ ପ୍ରିୟ । କାର୍ତ୍ତିକରେ ଭଗବାନ୍ ବିଷ୍ଣୁଙ୍କ ଉଦ୍ଦେଶ୍ୟରେ ଯେଉଁ ପୁଣ୍ୟକାର୍ଯ୍ୟ କରାଯାଏ, ତାହାଦ୍ୱାରା ଦେବତାମାନେ ମନୁଷ୍ୟମାନଙ୍କର ନିକଟବର୍ତ୍ତୀ ହୁଅନ୍ତି । ସ୍ନାନ ଦାନ ବ୍ରତ ଆଦି ପବିତ୍ର କର୍ମ ଦ୍ୱାରା ମନୁଷ୍ୟ ଅକ୍ଷୟ ଫଳ ଲାଭ କରେ । ସ୍ନାନ କର୍ମ ଦ୍ୱାରା ଦେହ ନିର୍ମଳ ହୁଏ ଓ ଦାନକର୍ମ ଦ୍ୱାରା ମନର ପବିତ୍ରତା ଓ ଶୁଦ୍ଧତା ବଢେ । ଭର୍ତ୍ତୃହରି ତାଙ୍କ ଶତକ ତ୍ରୟରେ ଲେଖନ୍ତି: ଯେଉଁମାନଙ୍କର ତପ, ଦାନ, ଗୁଣ, ଧର୍ମ ପ୍ରଭୃତି ନାହିଁ ସେମାନେ ପୃଥିବୀର ଭାର ସଦୃଶ । ସେମାନେ ରୂପରେ ମନୁଷ୍ୟ ହେଲେ ମଧ୍ୟ ଗୁଣରେ ପଶୁ ଅଟନ୍ତି । (ଭାରତୀୟ ପରମ୍ପରାରେ ଦାନର ବିଶେଷତ୍ୱ ଗୀତା ପ୍ରେସ୍ ପ୍ରକାଶିତ 'ଦାନ ଅଙ୍କ' ଆଲୋଚନା ଯୋଗ୍ୟ ଅଟେ ।)

ଦେବ ଦେବ ମହାଦେବ ପୁତ୍ର କାର୍ତ୍ତିକେୟଙ୍କୁ କାର୍ତ୍ତିକ ମାସର ମହିମା ବୁଝାଇ କହିଛନ୍ତି ଗୋଟିଏ ପକ୍ଷରେ ସମ୍ପୂର୍ଣ୍ଣ ତୀର୍ଥ, ସମସ୍ତ ଦାନ ଦକ୍ଷିଣା ସହିତ ଯଜ୍ଞ, ପୁଷ୍କର, କୁରୁକ୍ଷେତ୍ର, ହିମାଳୟ, ଅକ୍ରୂରତୀର୍ଥ, କାଶୀ ଏବଂ ଶୂକର କ୍ଷେତ୍ରରେ ନିବାସ କରିବା ଓ ଅନ୍ୟ ପକ୍ଷରେ କେବଳ କାର୍ତ୍ତିକ ମାସ ଯଦି ରହେ, କାର୍ତ୍ତିକ ମାସ ହିଁ ଭଗବାନ୍ କେଶବଙ୍କର ସର୍ବଦା ପ୍ରିୟ ଅଟେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଯାହାର ହାତ, ପାଦ, ବାଣୀ ଓ ମନ ବଶରେ ଥାଏ, ତାହା ଯାହାଠାରେ ବିଦ୍ୟା, ତପ ଓ କୀର୍ତ୍ତି ବିଦ୍ୟମାନ ରହିଛି କେବଳ ସେହିଭଳି ବ୍ୟକ୍ତି ତୀର୍ଥର ପୂର୍ଣ୍ଣ ଫଳ ପ୍ରାପ୍ତ ହେବାକୁ ସମର୍ଥ । ଶ୍ରଦ୍ଧାରହିତ, ନାସ୍ତିକ, ସଂଶୟାଳୁ ଓ ତର୍କବୁଦ୍ଧିର ସହାୟତା ନେଉଥିବା ମନୁଷ୍ୟ ତୀର୍ଥସେବନର ଫଳଭାଗୀ ହୁଏ ନାହିଁ । ସେହିପରି କାର୍ତ୍ତିକଠାରୁ ବଡ ମାସ ନାହିଁ ।

କାର୍ତ୍ତିକ ମାସ ଏକ ପ୍ରବର ମାସ । ବୈଷ୍ଣବମାନଙ୍କର ସର୍ବଦା ପ୍ରିୟ । ଏହି ମାସ ଯାକ ଯିଏ ବିଷ୍ଣୁଙ୍କ ପୂଜା ଉପାସନା କରେ, ସେ ନରକରେ ବାସ କରୁଥିବା ତା'ର ପିତୃପୁରୁଷମାନଙ୍କୁ ଉଦ୍ଧାର କରିଦିଏ ।

**ସାତ୍ତ୍ୱିକ ଭାବନାର ଉଦ୍ରେକ କରେ କାର୍ତ୍ତିକ:** ବହୁ ଅଭାବ ଅସୁବିଧା ସତ୍ତ୍ୱେ ବ୍ରତୀମାନେ ଆଜିର ଭୋଗ ସର୍ବସ୍ୱ ବୈଜ୍ଞାନିକ ଯୁଗରେ କାର୍ତ୍ତିକ ମାସର ପୂଜା ଉପାସନା ବିଧିଗୁଡିକ ଅତି ଶ୍ରଦ୍ଧାର ସହ ପାଳନ କରିଥା'ନ୍ତି । କଳି ଯୁଗରେ ମାନବୀୟ ଚେତନାକୁ ରାଜସିକ ଭାବରୁ ଉତ୍ତୀର୍ଣ୍ଣ କରାଇ ସାତ୍ତ୍ୱିକ ଭାବରେ ପହଞ୍ଚାଇବା ନିମିତ୍ତ କାର୍ତ୍ତିକ ମାସର ସୃଷ୍ଟି । ଉପନିଷଦୀୟ ବାର୍ତ୍ତା 'ତ୍ୟାଗ ଦ୍ୱାରା ଭୋଗ' ଏହି କାର୍ତ୍ତିକ ମାସରେ ହିଁ ସାକାର ହୋଇଥାଏ । ଏହାହିଁ ଓଡ଼ିଶୀ ବୈଷ୍ଣବ ଧର୍ମର ସାରମର୍ମ । ଅତଏବ କାର୍ତ୍ତିକ ମାସରେ ଗଗନ ପବନ ସାତ୍ତ୍ୱିକ ଭାବନାରେ ତରଙ୍ଗାୟିତ ହେଉଥାଏ ।

**କାର୍ତ୍ତିକ ବ୍ରତ ଭଗବାନ୍‌ଙ୍କର ପ୍ରିୟ ବ୍ରତ:** ପଦ୍ମ ପୁରାଣରେ କୁହାଯାଇଛି– କାର୍ତ୍ତିକଃ କୃଷ୍ଣବଲ୍ଲଭଃ । ଶ୍ରୀହରିଙ୍କର ଅତୀବ ପ୍ରିୟ ହୋଇଥିବାରୁ ମହାକାର୍ତ୍ତିକ ବ୍ରତ ପାଳନରେ ଅଶେଷ କଲ୍ୟାଣ ସାଧିତ ହୋଇଥାଏ ।

ବିଷ୍ଣୁର ଅତିପ୍ରିୟ ବ୍ରତ । ମହାକାର୍ତ୍ତିକ ଯଥା କୃତ୍ୟ ।
ଅଶେଷ ଜନଙ୍କ କଲ୍ୟାଣେ । ମନୁ ଯେ କହିଲେ ପୁରାଣେ ।

ସଂସାରରେ ଚାରିଗୋଟି ଧର୍ମର ମାର୍ଗ ଭଗବାନ୍‌ଙ୍କର ପ୍ରିୟ ମାର୍ଗ ରୂପେ ବିବେଚିତ ହୋଇଥାଏ । ସେଗୁଡିକ ହେଲା– ତୁଳସୀସେବା, ଏକାଦଶୀ ପାଳନ, ଦ୍ୱାରାକାପୁର ଗମନ ଓ କାର୍ତ୍ତିକ ମାସରେ ବ୍ରତ ପାଳନ ।

**କାର୍ତ୍ତିକରେ ସବୁ ଦେବଦେବୀଙ୍କ ଉପାସନା:** ଖାଲି ବିଷ୍ଣ ନୁହଁନ୍ତି ବ୍ରହ୍ମା, ଶିବ ଓ ଦଶଦିଗପାଳ ମଧ୍ୟ କାର୍ତ୍ତିକ ବ୍ରତ ପାଳନ ଦ୍ୱାରା ସନ୍ତୁଷ୍ଟ ହୋଇଥା'ନ୍ତି । ଏହି ପ୍ରସଙ୍ଗରେ ମହାଦେବ ଦାସ ଉଲ୍ଲେଖ କରିଛନ୍ତି:

ବିଷ୍ଣୁ ଅତି ଅନ୍ତ ପ୍ରୀତି । ଯହିଁ ପ୍ରସନ୍ନ ବେଦପତି ।
ଶିବ ସହିତେ ଦିଗପାଳେ । ସନ୍ତୋଷ ଯହିଁ ବ୍ରତ ଫଳେ ।

ସ୍କନ୍ଦ ପୁରାଣ ଅନୁସାରେ ଶ୍ରୀଜଗନ୍ନାଥଙ୍କ ଆଦେଶରେ ଶିବ କାର୍ତ୍ତିକ ବ୍ରତ ପାଳନ କରିଥିଲେ । ଶିବଙ୍କଠାରୁ ନିର୍ଦ୍ଦେଶ ପାଇ ସ୍ୱାୟମ୍ଭୁବ ମନୁ ଓ ଅଗସ୍ତି ମୁନି ଏହି ବ୍ରତ ପାଳନ କରି ଅଶେଷ ପୁଣ୍ୟ ଅର୍ଜନ କରିଥିଲେ । ସ୍କନ୍ଦ ପୁରାଣ ଉତ୍କଳଖଣ୍ଡ ଅନୁସାରେ କାର୍ତ୍ତିକ ମାସରେ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କୁ ପ୍ରୀତ କରିବା ନିମନ୍ତେ ବ୍ରତ ପାଳନ କରିବା ବିଧି ।

କାର୍ତ୍ତିକ ମାସଟିର ପବିତ୍ରତାରେ ପ୍ରଭାବିତ ହୋଇ ଦେବତା ଋଷି ଓ ପିତୃଗଣ କାର୍ତ୍ତିକକୁ ଭାରି ଆଦର କରନ୍ତି । କାର୍ତ୍ତିକ ବ୍ରତ ପାଳିଲେ ପାପନାଶ ହୁଏ । ଜୀବନରେ କୃତ ସମସ୍ତ ପାପ କାର୍ତ୍ତିକ ବ୍ରତ ପାଳନରେ ନାଶ ଯାଏ ଓ ଅପୂର୍ବ ପୁଣ୍ୟ ଲାଭ ହୁଏ ବୋଲି ଧର୍ମଶାସ୍ତ୍ରର ପ୍ରମାଣ ରହିଛି । କାର୍ତ୍ତିକ ମାସରେ ଭକ୍ତ ସମସ୍ତ ପ୍ରକାର ଆଳସ୍ୟ ବିଳାସ ଖାଦ୍ୟଲାଳସା ଓ ଇନ୍ଦ୍ରିୟ ଲାଳସା ତ୍ୟାଗ କରେ ।

କାର୍ତ୍ତିକ ବ୍ରତ ଆଚରଣ କରୁଥିବା ବ୍ୟକ୍ତି ତୃଣ ଶଯ୍ୟାରେ ଶୟନ କରିବା ଦ୍ୱାରା ସମସ୍ତ ପାପ ପୁଣ୍ୟ– ଅଗ୍ନିରେ ଧ୍ୱଂସ ପାଇଯାଏ :

ସକଳ ପାପ ଯହିଁ ହରି । ମୁକ୍ତି ଲଭନ୍ତି ନରନାରୀ ।
ଯେ ବ୍ରତେ ହୁଏ ରୋଗନାଶ । ସକଳ ପାପ ଯାଏ ଧ୍ୱଂସ ।
ମିଳେ ଉତ୍ତମ ପୁତ୍ର ନାତି । ବଢଇ ଆବର ସମ୍ପତ୍ତି ।
ଯେ ପୁଣ୍ୟ ଥାଇ ତା'ର ସଙ୍ଗେ । ପାପ ନରହେ ତାର ଅଙ୍ଗେ ।
ଅଶେଷ ଜନ୍ମ ପାପ ହରେ । ନିଶ୍ଚିନ୍ତେ ବସେ ବିଷ୍ଣୁପୁରେ ।
ବିଷ୍ଣୁର ଅତି ପ୍ରିୟ ଯେଣୁ । କାର୍ତ୍ତିକ ମହାପୁଣ୍ୟ ତେଣୁ ।
ଅଙ୍ଗେ ଯେ ପାପ ବିଘ୍ନ । କାର୍ତ୍ତିକ ସଂକଳ୍ପରେ ଯାନ୍ତି ।
କେଶରୀ ଆଗମନ ପଥେ । ଯେହ୍ନେ ପଳାନ୍ତି ଗଜଯୁଥେ ।

**କାର୍ତ୍ତିକ ବ୍ରତ ପାଳନରେ ଯମଦଣ୍ଡରୁ ମୁକ୍ତି:** କେବଳ କାର୍ତ୍ତିକ ବ୍ରତାଚାରୀ ନରନାରୀମାନେ ନୁହେଁ ଏପରିକି କାର୍ତ୍ତିକ ବ୍ରତ ଆଚରଣ କରୁଥିବା ଭକ୍ତଙ୍କ ସହିତ ଗୋଟିଏ ମାତ୍ର ଦିନ ଅତିବାହିତ କରିଥିବା ବ୍ୟକ୍ତି ମଧ୍ୟ ଯମ ଦଣ୍ଡରୁ ନିଷ୍କୃତି ପାଇଥାନ୍ତି ବୋଲି କାର୍ତ୍ତିକେୟ ପୁରାଣରେ ଉଲ୍ଲେଖ ଅଛି ।

**କାର୍ତ୍ତିକ ବ୍ରତରେ ବୈକୁଣ୍ଠ ବାସ:** ବାରାଣାସୀ, କୁରୁକ୍ଷେତ୍ର, ନୈମିଷ୍ୟ ଓ ପୁଷ୍କର ଆଦି ତୀର୍ଥକ୍ଷେତ୍ରରେ ସ୍ନାନ କଲେ ଯେଉଁ ଫଳ ମିଳେ, କାର୍ତ୍ତିକ କୃତ୍ୟ ଆଚରଣ କଲେ ତଦନୁରୂପ ଫଳ ମିଳିଥାଏ । କୌଣସି ପ୍ରକାର ଯଜ୍ଞ ନକରି କେବଳ କାର୍ତ୍ତିକ ବ୍ରତ କଲେ ଭକ୍ତ ବିଷ୍ଣୁପଦ ପ୍ରାପ୍ତ ହୋଇଥାଏ । ନିୟମପୂର୍ବକ ଲୋଭନୀୟ ଖାଦ୍ୟରେ ପ୍ରବୃତ୍ତ ନହୋଇ ଭଗବଦ୍ ସ୍ମୃତିରେ କାଳ ବ୍ୟୟ କଲେ ବ୍ରତୀ କୃଷ୍ଣଙ୍କ ସାନ୍ନିଧ ଲାଭ କରି ମୁକ୍ତିପଥର ଯାତ୍ରୀ ହୁଏ ।

ଓଡ଼ିଶାର ଆଦିକବି ଶୂଦ୍ରମୁନି ସାରଳା ଦାସ ସ୍ୱରଚିତ ମହାଭାରତର ଆଦିପର୍ବରେ କାର୍ତ୍ତିକମାସର ପବିତ୍ରତା ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ଏହି ପର୍ବରେ ବର୍ଣ୍ଣିତ କାର୍ତ୍ତିକ ପୂର୍ଣ୍ଣିମା ଦିନ ଭୋଜରାଜ ଓ ଭୀଷ୍ମଙ୍କ ଗଙ୍ଗାସ୍ନାନ ଯାତ୍ରା ପ୍ରସଙ୍ଗରୁ ଜଣାଯାଏ ଯେ ଯେଉଁ ଜନ ତା' ଜୀବନ କାଳରେ ହରିଙ୍କୁ ଗଣ୍ଠିଧନ କରି ତାଙ୍କ ସେବା କରୁ କରୁ କାର୍ତ୍ତିକ ମାସରେ ମୃତ୍ୟୁବରଣ କରେ ସେହି ମୃତକର ସମସ୍ତ ଦୁର୍ଗତି ବିଦୂରିତ ହୋଇଯାଏ । ଶେଷରେ ସେ ଆଉ ଜନ୍ମମରଣର ଚକ୍ରରେ ପଡେନାହିଁ :

କାର୍ତ୍ତିକ ବ୍ରତ ମନେ ଧରି । ଯେ ମୋତେ ସେବେ ମୂଳକରି ।
ତା'ର ଦୁର୍ଗତି ଦୂରେ ଯାଇ । ଏକେ ସେ ଅନ୍ତେ ମୋତେ ପାଇ ।

ବ୍ରହ୍ମପୁରାଣରେ ଏହି ପ୍ରସଙ୍ଗରେ କୁହାଯାଇଛି ଯେ କାର୍ତ୍ତିକ ମାସରେ ଯେଉଁ ବ୍ୟକ୍ତି ବ୍ରତ ଉପବାସ ଆଦି ନିୟମର ସହିତ ପାଳନ କରି କାଳଯାପନ କରେ, ସେ ଦେବତ୍ୱ ଲାଭ କରେ ।

**କାର୍ତ୍ତିକରେ ଆଚରଣୀୟ ବିଧି:** ଏହି ମାସ ସୂର୍ଯ୍ୟଙ୍କର ଅୟନାନ୍ତ କାଳ । ଧର୍ମ ଦୃଷ୍ଟିରୁ ଶୁଭପ୍ରଦ । ଦେବଦେବୀ ଉପାସନା କରି ଆତ୍ମବିକାଶ ପାଇଁ ଏହି ମାସର ପରିବେଶ ଅତ୍ୟନ୍ତ ଅନୁକୂଳ । ସଂକ୍ଷେପରେ କହିବାକୁ ଗଲେ ସାଧାରଣତଃ ପ୍ରାତଃସ୍ନାନ, ଅର୍ଘ୍ୟଦାନ, କାର୍ତ୍ତିକ ମାହାତ୍ମ୍ୟ ଶ୍ରବଣ, ନାରାୟଣ ମନ୍ତ୍ର ଉଚ୍ଚାରଣ, ଗୋପାଳ ମନ୍ତ୍ର ଉଚ୍ଚାରଣ, ଶ୍ରୀବିଷ୍ଣୁ ସହସ୍ରନାମ ପଠନ ଓ ଶ୍ରବଣ, ବହିର୍ଜପ, ସାତ୍ତ୍ୱିକ ଆହାର ରୂପ ହବିଷ୍ୟାନ୍ନ ଗ୍ରହଣ, ରାଧାଦାମୋଦର ପୂଜା, ପିତୃଶ୍ରାଦ୍ଧ, ତୁଳସୀ ବୃକ୍ଷ ପୂଜା, ସଂଧ୍ୟା ସମୟରେ ଦୀପ ଦାନ ମାସ ସାରା କରି ବ୍ରତଧାରୀ ସକଳ ସୌଭାଗ୍ୟ କାମନା କରିଥାଏ । ଏହି ମାସରେ ଦାନ ଓ ଦେବ ଦର୍ଶନ ମହନୀୟ ପୁଣ୍ୟକର୍ମ ରୂପେ ବିବେଚିତ ହୋଇଥାଏ । ଏହାକୁ ଧର୍ମ ବା ନିସ୍ତାର ମାସ ରୂପେ ଅଭିହିତ କରାଯାଇଛି ।

**କାର୍ତ୍ତିକ ବ୍ରତର ଅଧିକାରୀ:** ବହୁ ସଂଖ୍ୟାରେ ବିଧବାମାନେ କାର୍ତ୍ତିକ ବ୍ରତ ପାଳନ କରୁଥିବାର ଦେଖି ଏକ ସାଧାରଣ ଧାରଣା ସୃଷ୍ଟି ହୁଏ ଯେ ବୋଧହୁଏ ଏହା ବିଧବାମାନଙ୍କ ଦ୍ୱାରା ଆଚରଣ ଯୋଗ୍ୟ ଏକ ବ୍ରତ । ଯେଉଁ ବିଧବାମାନେ କାର୍ତ୍ତିକ ବ୍ରତ ପାଳନ ନକରନ୍ତି ସେମାନେ ନରକ ଭୋଗ କରନ୍ତି ବୋଲି ଶାସ୍ତ୍ର ତାଗିଦ ରହିଲେ ମଧ୍ୟ ଏହା ଆବାଳବୃଦ୍ଧବନିତାଙ୍କ ଦ୍ୱାରା ପାଳନୀୟ ଏକ ସାର୍ବଜନୀନ ବ୍ରତ । ନାରଦୀୟ ପୁରାଣ, ମତରେ ଏହି ପବିତ୍ର ବ୍ରତ କେବଳ ବିଧବାମାନେ କରନ୍ତି ତାହା ନୁହେଁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର– ଏହି ଚାରି ଜାତି, ବ୍ରହ୍ମଚାରୀ, ଗୃହସ୍ଥ, ବାନପ୍ରସ୍ଥୀ ଓ ସନ୍ନ୍ୟାସୀ– ଏହି ଚାରି ଆଶ୍ରମୀ, ସର୍ବୋପରି ମନୁଷ୍ୟ ମାତ୍ରକେ ଏହି କାର୍ତ୍ତିକ ବ୍ରତ ପାଳନ କରିବା ସର୍ବସମ୍ମତ ଅଟେ ।

**କାର୍ତ୍ତିକ ବ୍ରତ ଅପାଳନରେ ଦୋଷ:** ଜନ୍ମଭୂମି ହେଉଛି କର୍ମଭୂମି । ଯିଏ ବିନା ବ୍ରତରେ କାର୍ତ୍ତିକର କାଳଯାପନ କରେ ତା' ପ୍ରତି ବିଷ୍ଣୁ ପରାଙ୍ମୁଖ ହୁଅନ୍ତି । ତା'ର ଗତି କୁଆଡେ ହୁଏ ବୋଲି କେହି ଜାଣିପାରନ୍ତି ନାହିଁ । ସେ ହାତରେ ଚିନ୍ତାମଣି ଧରି କାଦୁଆ ପାଣିରେ ତାକୁ ନିକ୍ଷେପ କଲା ସଦୃଶ ହୋଇଥାଏ ।

ସେଭଳି ବ୍ୟକ୍ତିକୁ ନରାଧମ ବୋଲି ଆଖ୍ୟା ଦିଆଯାଇଛି । ଯେଉଁମାନେ କାର୍ତ୍ତିକ ମାସରେ ପ୍ରାତଃ ସ୍ନାନ କରନ୍ତି ନାହିଁ, ଦାନ ଦିଅନ୍ତି ନାହିଁ, ଦାମୋଦର ନାମ ଜପ କରନ୍ତି ନାହିଁ, କି ବ୍ରତ କରନ୍ତି

ନାହିଁ ସେମାନେ ଅଧମ ନର ଅଟନ୍ତି । ସେମାନେ ପ୍ରାର୍ଥିତ ଫଳ ପା'ନ୍ତି ନାହିଁ । ଆତ୍ମାଚ୍ୟୁତ ହୁଅନ୍ତି ।

ଉକ୍ତ ପୁରାଣରେ ମଧ୍ୟ କୁହାଯାଉଛି ଯେ କାର୍ତ୍ତିକ ମାସରେ ଯେଉଁମାନେ ବିଷ୍ଣୁଙ୍କଠାରେ ମଗ୍ନ ନହୁଅନ୍ତି ସେମାନେ ପିତୃପୁରୁଷମାନଙ୍କ ସହିତ ସୌରିପୁରରେ ବାସ କରନ୍ତି । କାର୍ତ୍ତିକ ମାସରେ କେଶବଙ୍କୁ ପୂଜା କରି ନଥିବା ଲୋକମାନେ ଯମଦୂତମାନଙ୍କ ଦ୍ୱାରା ଯନ୍ତ୍ରଣା ପାଇ ନରକ ଗମନ କରନ୍ତି । କୋଟି ସହସ୍ର ଜନ୍ମ ପରେ ପ୍ରାଣୀ ଦୁର୍ଲ୍ଲଭ ନର ଜନ୍ମ ପାଇଥାଏ । କାର୍ତ୍ତିକରେ ଯଦି ବିଷ୍ଣୁଙ୍କୁ ଅର୍ଚ୍ଚନା ନକରେ ତେବେ ତାର ମନୁଷ୍ୟ ଜନ୍ମ ଅପହୃତ ହୋଇଯାଏ । ଯିଏ ଏହି ମାସରେ ବିଷ୍ଣୁଙ୍କ ପୂଜା ନକରି ବୈଷ୍ଣବମାନଙ୍କୁ ଦର୍ଶନ କରେନାହିଁ ଦଶ ଶତାବ୍ଦୀରେ ପୁଣ୍ୟ ତାର ନଷ୍ଟ ହୋଇଯାଏ ।

ଯେଉଁ ବ୍ୟକ୍ତି ଏହି ବ୍ରତ ନକରେ ସେ ମନୁଷ୍ୟୋତର ପଶୁ ପକ୍ଷୀ ଯୋନିରେ ଜନ୍ମଗ୍ରହଣ କରେ । ଅବ୍ରତାଚାରୀ ନରକ ବାସ କରେ । ଯିଏ କାର୍ତ୍ତିକରେ ବୈଷ୍ଣବ ବ୍ରତ ନକରେ ସେ କରିଥିବା ବେଦ ଅଧ୍ୟୟନ ଓ ପୁରାଣପଠନ ବ୍ୟର୍ଥ ହୁଏ । ଜନ୍ମ ଜନ୍ମ ଧରି ସେ ବିଧିବଦ୍ଧ ଭାବରେ ଅର୍ଜନ କରିଥିବା ପୁଣ୍ୟସଂଚୟ କାର୍ତ୍ତିକ ବ୍ରତ ଅପାଳନରେ ଭସ୍ମ ହୋଇଯାଏ ।

କାର୍ତ୍ତିକରେ ବ୍ରତ ନକଲେ ଦାନ କରାଯାଇଥିବା, ଜପ କରାଯାଇଥିବା, ତପ କରାଯାଇଥିବା ସମସ୍ତ ପୁଣ୍ୟ କର୍ମର ଫଳ ନାଶ ହୋଇଯାଏ । ଖାଲି ଏତିକି ନୁହେଁ ଉତ୍ତମ ବୈଷ୍ଣବ ବ୍ରତ ନକଲେ ସାତ ଜନ୍ମର ଉତ୍ତମ କର୍ମର ଫଳ ନଷ୍ଟ ହୋଇଯାଏ । ଶୁଭଙ୍କର କାର୍ତ୍ତିକ ବ୍ରତ ଯେଉଁମାନେ ନକରନ୍ତି ସେମାନେ ପାପର ଜୀବନ୍ତ ବିଗ୍ରହ ଅଟନ୍ତି ।

**ନିଜ ଶକ୍ତିସାମର୍ଥ୍ୟ ଅନୁସାରେ ବ୍ରତପାଳନ ବିଧି:** ଆଜିକାଲି ଧର୍ମରେ ଲୋକଦେଖାଣିଆ ଆଚରଣ ଅଧିକ । ପ୍ରକୃତ ଧର୍ମ ଭାବନା ଆଡମ୍ବରର ଖୋଳ ଭିତରେ ହଜିଯାଉଛି । ବ୍ୟକ୍ତିଗତ ସ୍ତରରେ ଧାର୍ମିକ ନୀତିନିୟମ ପାଇଁ ଅର୍ଥର ଆବଶ୍ୟକତାଠାରୁ ନିଷ୍ଠାକାଷ୍ଠାର ଆବଶ୍ୟକତା ଜରୁରୀ ଅଟେ । ବ୍ରତୀ ବିଧିବିଧାନ ଅନୁସାରେ ପୂଜା ଉପାସନା ନିଜ ଶକ୍ତିମତେ ସମ୍ପନ୍ନ କଲେ ମୁକ୍ତି ସୁନିଶ୍ଚିତ । ପିତୃପୁରୁଷ ଓ ଦେବତାମାନେ ସେବା ପାଉଥିବା ପୁଣ୍ୟମୟ କାର୍ତ୍ତିକ ମାସରେ ଅଳ୍ପ ବ୍ରତ କଲେ ମଧ୍ୟ ବିପୁଳ ଫଳ ପ୍ରାପ୍ତ ହୋଇଥାଏ ।

ଉଦ୍ଦେଶ୍ୟରେ ଯେଉଁ ସବୁ ଧର୍ମ କର୍ମ କରାଯାଏ ତାହା ଅକ୍ଷୟ ହୋଇ ରହେ । ସେଥିପାଇଁ କାର୍ତ୍ତିକ ମାସ ଅନ୍ୟସବୁ ମାସ ମଧ୍ୟରେ ଶ୍ରେଷ୍ଠ । ଏହା ପୁଣ୍ୟମାନଙ୍କ ମଧ୍ୟରେ ପରମ ପୁଣ୍ୟ । ପାବନମାନଙ୍କ ମଧ୍ୟରେ ପରମ ପାବନ । ଯେପରି ନଦୀମାନଙ୍କର, ପର୍ବତମାନଙ୍କର ଓ ସାଗରମାନଙ୍କର ବିନାଶ ନାହିଁ ସେହିଭଳି କାର୍ତ୍ତିକ ମାସରେ କରାଯାଇଥିବା ପୁଣ୍ୟର କ୍ଷୟ ନାହିଁ ।

ଅନ୍ୟସବୁ ବ୍ରତ କଲେ ମିଳୁଥିବା ଫଳ ଗୋଟିଏ ଜନ୍ମକୁ ଅନୁସରଣ କଲେ କିନ୍ତୁ କାର୍ତ୍ତିକରେ ବ୍ରତ କଲେ ଯେଉଁ ଫଳ ମିଳେ ତାହା ଶହେ ଜନ୍ମ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହେଉଥାଏ । ଅକ୍ରୁର ତୀର୍ଥରେ ସ୍ନାନ କରି ବାସ କଲେ ଯେଉଁ ପୁଣ୍ୟ ଅର୍ଜିତ ହୁଏ, ତାହା ବୈଷ୍ଣବ କାର୍ତ୍ତିକ ବ୍ରତଦ୍ୱାରା ହିଁ ମିଳିଥାଏ ।

କୀର୍ତ୍ତିମୟୀ କାର୍ତ୍ତିକର ଶେଷ ପାଞ୍ଚଦିନ ରାସପଞ୍ଚକ ରୂପେ ପ୍ରସିଦ୍ଧ । ମାସର ଅନ୍ତିମ ଦିବସଟି ରାସପୂର୍ଣ୍ଣମୀ ବା କାର୍ତ୍ତିକ ପୂର୍ଣ୍ଣମୀ ଭାବରେ ଭାରତୀୟ ଜନଜୀବନକୁ ଅନୁପ୍ରାଣିତ କରି ଆସିଛି । ହେମନ୍ତ ପ୍ରକୃତିର ମେଘମୁକ୍ତ ଆକାଶ ତଳେ ଧରଣୀରାଣୀ ଶିବପାର୍ବତୀଙ୍କ ଜ୍ୟେଷ୍ଠନନ୍ଦନ କାର୍ତ୍ତିକେୟନଙ୍କ ବନ୍ଦାପନାରେ ଆତ୍ମବିସ୍ମୃତ ହୋଇଉଠେ । ଓଡ଼ିଶାର ପୁରପଲ୍ଲୀରେ ଦେବସେନାପତି ଚିରକୁମାର କାର୍ତ୍ତିକେୟଙ୍କ ଆରାଧନା ଅତ୍ୟନ୍ତ ଉତ୍ସାହର ସହିତ ସମ୍ପାଦିତ ହୁଏ । କାର୍ତ୍ତିକେୟଙ୍କ ନାମାନୁସାରେ ଏହି ମାସ ଉତ୍ସର୍ଗୀକୃତ । ସେ ଯୁବଶକ୍ତିର ପ୍ରତୀକ ଓ ପରମ ପରାକ୍ରମୀ । ଅନୂଢା କନ୍ୟାମାନେ କାର୍ତ୍ତିକେୟଙ୍କ ପରି ସୁନ୍ଦର ଓ ପରାକ୍ରମୀ ବର ପ୍ରାପ୍ତ ହେବା ଆଶାରେ ତାଙ୍କର ପୂଜାର୍ଚ୍ଚନା କରିଥାନ୍ତି । ଭକ୍ତମାନେ ଶ୍ରଦ୍ଧାର ସହ ଶିବ ଓ ବିଷ୍ଣୁଙ୍କର ଉପାସନା କରି ଲକ୍ଷ୍ମୀନାରାୟଣଙ୍କର ଧ୍ୟାନ କରିଥାନ୍ତି । ଭକ୍ତମାନେ ପ୍ରଭୁଙ୍କର ନାମ ସଂକୀର୍ତ୍ତନ କରି ଗଗନ ପବନ ମୁଖରିତ କରିଥାନ୍ତି । ଇସ୍ଲାମ ସଂସ୍କୃତିର ରମ୍‌ଜାନ ମାସ ଓ ଖ୍ରୀଷ୍ଟିୟାନ୍ ସଂସ୍କୃତିର ବଡଦିନ ପରି ହିନ୍ଦୁ ସଂସ୍କୃତିରେ କାର୍ତ୍ତିକ ମାସ ବିଶେଷ ଧାର୍ମିକ ମହତ୍ତ୍ୱ ବହନ କରେ । ଉତ୍କଳୀୟମାନେ ଏହାକୁ ପବିତ୍ର ମାସ ରୂପେ ପାଳନ କରିଥାନ୍ତି ।

**କାର୍ତ୍ତିକ ମାସର ପୌରାଣିକ ମହତ୍ତ୍ୱ:** କାର୍ତ୍ତିକ ବ୍ରତ ପାଳନ ସମ୍ପର୍କରେ ବହୁ ପୌରାଣିକ ତଥ୍ୟ ରହିଛି । ନରକାସୁର ବଧ, ରକ୍ତବୀର୍ଯ୍ୟ ବଧ, ରାମଚନ୍ଦ୍ରଙ୍କର ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ, ବଳିରାଜାଙ୍କ ମର୍ତ୍ତ୍ୟ ଆଗମନ, ପିତୃପୁରୁଷମାନଙ୍କର ମର୍ତ୍ତ୍ୟଲୋକରେ ଅବସ୍ଥାନ, ନୌବାଣିଜ୍ୟ ଯାତ୍ରାରମ୍ଭ, ଗୋବର୍ଦ୍ଧନ ପୂଜା, ଯମଦ୍ୱିତୀୟା ପାଳନ, ବୃନ୍ଦାଙ୍କ ସତୀତ୍ୱହରଣ ଓ ଜଳନ୍ଧର

ବଧ, ଶଙ୍ଖଚୂଡ ବଧ ଗଂଗାସ୍ନାନ ଯାତ୍ରା ପ୍ରଭୃତି ଆଖ୍ୟାୟିକା କାର୍ତ୍ତିକ ମାସ ବ୍ରତ ସହିତ ସମ୍ପୃକ୍ତ ।

**ସର୍ବଧର୍ମ ସମନ୍ୱୟ ମାସ କାର୍ତ୍ତିକ:** ହିନ୍ଦୁ ଧର୍ମ ବ୍ୟତୀତ ଜୈନ ଓ ଶିଖ୍ ଧର୍ମାବଲମ୍ବୀମାନେ କାର୍ତ୍ତିକ ମାସକୁ ପବିତ୍ର ମାସ ଭାବରେ ପାଳନ କରି ଆସୁଛନ୍ତି । ଜୈନ ଧର୍ମର ଚବିଶିତମ ତୀର୍ଥଙ୍କର ମହାବୀରଙ୍କର ମହାପ୍ରୟାଣ କାର୍ତ୍ତିକ ପୂର୍ଣ୍ଣିମାଦିନ ହୋଇଥିଲା । ଏବେ ସେହି ଦିନକୁ ଦିବ୍ୟଜ୍ଞାନ ଦିବସରୂପେ ପାଳନ କରାଯାଉଛି । ଦୀପାବଳି ତିଥିରେ ଜୈନମାନେ ଜକ୍ଷରାତ୍ରି ଦିବସ ପାଳନ କରନ୍ତି । ଆର୍ଯ୍ୟ ସମାଜର ପ୍ରବର୍ତ୍ତକ ଦୟାନନ୍ଦ ସରସ୍ୱତୀ ଏହି ଦିବସରେ ଦେହତ୍ୟାଗ କରିଥିଲେ । ସନାତନ ହିନ୍ଦୁ ଧର୍ମର ମହାନ୍ ସଂରକ୍ଷକ ତଥା ଆଲୋକବର୍ତ୍ତିକା ଭଗବତ୍ ପାଦ ଜଗଦ୍‌ଗୁରୁ ଆଦ୍ୟା ଶଙ୍କରାଚାର୍ଯ୍ୟ ମହାରାଜଙ୍କର ମାତ୍ର ବତିଶି ବର୍ଷ ବୟସରେ ୮୨୦ ଖ୍ରୀଷ୍ଟାବ୍ଦରେ ଉତ୍ତରାଖଣ୍ଡର କେଦାରନାଥରେ ମହାପ୍ରୟାଣ ଘଟିଥିଲା । ସେହି ଦିନଟି ଥିଲା ପବିତ୍ର କାର୍ତ୍ତିକ ପୂର୍ଣ୍ଣିମା । ଶିଖ୍ ଧର୍ମର ପ୍ରତିଷ୍ଠାତା ଗୁରୁନାନକ କାର୍ତ୍ତିକ ପୂର୍ଣ୍ଣମୀ ଦିନ ଜନ୍ମ ଗ୍ରହଣ କରିଥିଲେ । ତେଣୁ ଶିଖ୍ ଧର୍ମାବଲମ୍ବୀମାନଙ୍କର ଏହା ପବିତ୍ର ଦିବସ ଓ ଉତ୍ସବର ଦିନ । କୃତିକା ଶବ୍ଦରୁ କାର୍ତ୍ତିକ ମାସ ଆସିଛି ।

**କାର୍ତ୍ତିକ ଦର୍ଶନ:** ପଦ୍ମ ପୁରାଣ ହେଉଛି ଭଗବାନ୍ ନାରାୟଣଙ୍କ ପଦ୍ମମୁଖରୁ ପ୍ରକାଶିତ । ସାଗରସୁତ ରାକ୍ଷସ ଜଳନ୍ଧରର ଅତ୍ୟାଚାରରେ ଅତିଷ୍ଠ ହୋଇ ଦେବକୁଳ ଶ୍ରୀହରିଙ୍କ ନିକଟରେ ଶରଣ ପଶିଲେ । ଚକ୍ରପାଣି ନରହରି ଦେବତାମାନଙ୍କୁ ପରାମର୍ଶ ଦେଇ କହିଥିଲେ– ଆଜିଠାରୁ ଏ ଦେବଗଣ କରିବେ ଯଜ୍ଞ ଆଚରଣ ।

କାର୍ତ୍ତିକ ମାସେ ପ୍ରାତଃ ସ୍ନାନ । ଆବର ତୁଳସୀ ସେବନ ।
ହୋଇବ ନିରାମିଷ ଭୋଜି । କ୍ରୋଧ ମତ୍ସ୍ୟର ମୋହ ତେଜି ।
ସକଳ ବିଘ୍ନ ଯିବ କ୍ଷୟ । ମରିବ ସେ ଦନୁଜ ତନୟ ।

ମହାକାର୍ତ୍ତିକ ବ୍ରତର ଏହା ହେଉଛି ମୂଳ ଉତ୍ସ । ଆଧାର । ଏହାକୁ ବିଶ୍ଳେଷଣ କଲେ ଜଣାପଡେ ଯେ ମଣିଷ ଯେତେବେଳେ ଦୁର୍ଗୁଣ ରୂପକ ଆସୁରିକ ବଳଦ୍ୱାରା ଅଭିଭୂତ ଓ ପୀଡିତ ହୁଏ କାର୍ତ୍ତିକ ବ୍ରତ ହେଉଛି ତା'ର ଏକମାତ୍ର ଶରଣ ଓ ଆଶ୍ରୟସ୍ଥଳ । ତାମସିକ ଓ ରାଜସିକ ପରାଭବକୁ କେବଳ ସାତ୍ତ୍ୱିକ ଶକ୍ତି ଦ୍ୱାରା ନିୟନ୍ତ୍ରଣ କରାଯାଇପାରେ । କାର୍ତ୍ତିକ ବ୍ରତ ମନୁଷ୍ୟର ଅନ୍ତକରଣକୁ ଭଗବତ୍ ପରାୟଣ କୃତ୍ୟ ଦ୍ୱାରା ସମସ୍ତ ପ୍ରକାର ଆବିଳତା ଦୂରୀଭୁତ କରେ । ତାର ଅନ୍ତରାତ୍ମାକୁ ଶୁଦ୍ଧ ନିର୍ମଳ କରେ ।

ଓଡ଼ିଆ ଭାଷାରେ କାର୍ତ୍ତିକ ମାହାତ୍ମ୍ୟ ଆଲୋଚନା କରୁଥିବା ବେଳେ ମହାଦେବ ଦାସଙ୍କ କଥା ଉଲ୍ଲେଖ ନକଲେ ତାହା ପୂର୍ଣ୍ଣାଙ୍ଗ ହୋଇ ନଥାଏ । ଉତ୍କଳ ଭାଷାର କବି ତଥା ପରମ ଭକ୍ତ ସେ ସଂସ୍କୃତ ଭାଷାର ପଦ୍ମପୁରାଣ ଓ ସ୍କନ୍ଦପୁରାଣକୁ ଓଡ଼ିଆ ଭାଷାରେ ଅନୁବାଦ କରି ଜିଜ୍ଞାସୁ ଭକ୍ତମାନଙ୍କର ଅଶେଷ କଲ୍ୟାଣ ସାଧନ କରିଛନ୍ତି । ଏହାଦ୍ୱାରା ସଂସ୍କୃତ ଅନଭିଜ୍ଞ ବ୍ୟକ୍ତିବିଶେଷ ପଠନ ଓ ଶ୍ରବଣ କରି ଅଶେଷ ପୁଣ୍ୟ ଅର୍ଜନ କରିଥାନ୍ତି । ଶ୍ରବଣ ମାତ୍ରେ ମନ କୃଷ୍ଣପ୍ରେମରେ ମନ୍ଦାକିନୀ ଧାରାରେ ସ୍ୱତଃ ଦ୍ରବୀଭୂତ ହୋଇଥାଏ । ଶ୍ରୋତା ନିଜକୁ ନିଷ୍ପାପ ମଣେ । କେବଳ ଉତ୍କଳ ନୁହେଁ ସମଗ୍ର ଭାରତବର୍ଷର ପ୍ରତିଟି ଭାଷାଭାଷୀ ମୋକ୍ଷପ୍ରାପ୍ତି ଆଶରେ କାର୍ତ୍ତିକ ବ୍ରତ ଆଚରଣ କରିଥାନ୍ତି ।

କ୍ୱାର୍ଟର.ନଂ–୨୨/୧, ନାଲ୍‌କୋ
ଦାମନଯୋଡି, କୋରାପୁଟ–୭୬୩୦୦୮



# ଓଡ଼ିଶାର ସାଂସ୍କୃତିକ ଅଭ୍ୟୁଦୟରେ ଗଣମାଧ୍ୟମର ଭୂମିକା

ରଂଜନ କୁମାର ଦାସ

ମାନବୀୟ ଯୋଗାଯୋଗ, ଭାବର ଆଦାନପ୍ରଦାନ ତଥା ବାର୍ତ୍ତା ପ୍ରେରଣର ଆବଶ୍ୟକତା ପ୍ରାଗୈତିହାସିକ କାଳରୁ ଅନୁଭୂତ ହୋଇ ଆସୁଛି । ଯୁଗେଯୁଗେ ମେଘ, ହଂସ, କପୋତ, ପବନ ଦୂତମାନେ ବାର୍ତ୍ତା ପ୍ରେରଣର ମାଧ୍ୟମ ରୂପେ ବର୍ଣ୍ଣିତ ହୋଇଆସିଛି । ଇଏ ତ ବ୍ୟକ୍ତିଗତ ଯୋଗାଯୋଗର କଥା । ମାତ୍ର ସାର୍ବଜନୀନ ଯୋଗାଯୋଗର ମାଧ୍ୟମର ରୂପେ ଇତିହାସରେ ଢେଙ୍ଗୁରାପିଟା ବ୍ୟବସ୍ଥା ମଧ୍ୟ ଥିଲା । କାଳକ୍ରମେ ବିଜ୍ଞାନ ଓ କଳା କୌଶଳର ବିକାଶ ଯୋଗୁଁ ଯୋଗାଯୋଗ ଆଉ ବ୍ୟକ୍ତିଗତ ସ୍ତରରେ ସୀମିତ ନରହି ଆନୁଷ୍ଠାନିକ ଭାବେ ଗଣମାଧ୍ୟମର ରୂପ ନେଲା । ହସ୍ତଲିଖିତ ଖବରକାଗଜମାନେ ପ୍ରଥମେ ଆସିଲେ ଓ ପରେ ଶିଳ୍ପ ବିକାଶ ହେବାରୁ ଛାପାଖାନାର ପ୍ରସାର ଯୋଗୁଁ ଛପା ଖବରକାଗଜମାନେ ମଧ୍ୟ ଆସିଲେ । ପରବର୍ତ୍ତୀ ସମୟରେ ଟେଲିଫୋନ୍, ଫ୍ୟାକ୍ସ, ଟେଲିପ୍ରିଣ୍ଟର, କମ୍ପ୍ୟୁଟର, ଟିଭି ଆଦିର ବିକାଶ ଯୋଗୁଁ ଗଣମାଧ୍ୟମ ତ୍ୱରିତ ମାଧ୍ୟମ ରୂପେ ବିବେଚିତ ହୋଇ ଗଣଆଦୃତି ପାଇଲା । ଏହାର ଅଭୂତପୂର୍ବ ସଫଳତା ଆମର ସାମାଜିକ, ରାଜନୈତିକ ଅର୍ଥନୈତିକ ଓ ସାଂସ୍କୃତିକ ସ୍ଥିତାବସ୍ଥା ଦ୍ୱାରା ପ୍ରଭାବିତ ହୋଇଛି ଏବଂ ଅପରପକ୍ଷରେ ତାକୁ ପ୍ରଭାବିତ କରିଛି ମଧ୍ୟ ।

ବିଶେଷକରି ଓଡ଼ିଶାରେ ଗଣମାଧ୍ୟମ ଏହି ଧାରାରେ କାର୍ଯ୍ୟକରି ଓଡ଼ିଶାର ସାମାଜିକ, ଅର୍ଥନୈତିକ, ରାଜନୈତିକ ତଥା ସାଂସ୍କୃତିକ ଅଭ୍ୟୁଦୟର ଏକ ସାକ୍ଷୀ ପାଲଟିଛି । ଓଡ଼ିଶାରେ ଗଣମାଧ୍ୟମର ୧୩୮ ବର୍ଷର ଇତିହାସ, ତାର ଅଭ୍ୟୁଦୟ ଓ କ୍ରମ ବିକାଶକୁ ଲକ୍ଷ୍ୟ କଲେ ଏହା ସ୍ପଷ୍ଟ ହୁଏ । ସମଗ୍ର ଭାରତବର୍ଷର ଗଣମାଧ୍ୟମର ଇତିହାସରେ ଓଡ଼ିଶା ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦଖଲ କରେ । ବ୍ରିଟିଶମାନଙ୍କ ଆଗମନ ପରେ ଉଇଲିଅମ୍ ବୋଲ୍‌ଟ ନାମକ ଜଣେ ଇଂରେଜ ୧୭୭୬ ମସିହାରେ ପ୍ରଥମ ବିଧିବଦ୍ଧ ସମ୍ବାଦପତ୍ର ପ୍ରକାଶନ ପାଇଁ ଉଦ୍ୟମ କରିଥିଲେ । ମାତ୍ର ତାତ୍କାଳିକ କାଇଦା କଟକଣା ଯୋଗୁଁ ତାହା ସମ୍ଭବ ହୋଇପାରି ନଥିଲା । ମାତ୍ର ଏହାର ସାତବର୍ଷ ପୂର୍ବରୁ ଅର୍ଥାତ୍ ୧୭୬୯ ମସିହା ବେଳକୁ ଓଡ଼ିଶାର ଚୌଦ୍ୱାର ନିକଟସ୍ଥ କୁଜିବର ଆଶ୍ରମରୁ ସାଧୁ ସୁନ୍ଦର ଦାସ ନାମକ ଜଣେ ମହାପୁରୁଷଙ୍କ ପ୍ରଚେଷ୍ଟାରେ ପ୍ରଥମ ହସ୍ତଲିଖିତ ସମ୍ବାଦପତ୍ର 'କୁଜିବର ପତ୍ର' ପ୍ରକାଶିତ ହୋଇଥିଲା । ସୁନ୍ଦର ହାତଲେଖା ଅକ୍ଷରରେ ଏହା ବହୁବର୍ଷ ଧରି କେବେ ଦୈନିକ, କେବେ ସାପ୍ତାହିକ ରୂପରେ ପ୍ରକାଶିତ ହେଉଥିଲା । ସେଥିରେ ଧର୍ମ, ସାହିତ୍ୟ, ନୃତ୍ୟ, ସଂଗୀତ ଓ ଶିକ୍ଷା ସମ୍ବନ୍ଧୀୟ ଅନେକ ପ୍ରସଙ୍ଗ ସ୍ଥାନ ପାଉଥିଲା । ଏପରିକି ମିଶନାରୀମାନେ ମଧ୍ୟ ତାକୁ ଇଂରେଜୀରେ ଅନୁବାଦ କରି ଅନ୍ୟ ଆଡେ ପଠାଉ ଥିଲେ । ପାଦ୍ରୀ ଆମୋସ୍ ସଟ୍ଟନ ଏହାର ଏକ ଅନୁବାଦ କରି ୧୯୨୭ ମସିହାରେ ଲଣ୍ଡନର ବାପ୍‌ଟିଷ୍ଟ ମିଶନକୁ ପଠାଇ ଥିଲେ ଏବଂ ଏହାର ଅନେକ ଅଂଶ ଏବେ ମଧ୍ୟ ଲଣ୍ଡନର ଇଣ୍ଡିଆ ହାଉସ୍ ଲାଇବ୍ରେରୀରେ ସଂରକ୍ଷିତ । ତେଣୁ ଭାରତର ସର୍ବ ପ୍ରଥମ ସମ୍ବାଦପତ୍ର ଓଡ଼ିଶାରୁ ପ୍ରକାଶିତ ହେବାର ଗୌରବମୟ ଇତିହାସ ଓଡ଼ିଶାକୁ ଅନ୍ୟ ରାଜ୍ୟମାନଙ୍କଠାରୁ ସାଂସ୍କୃତିକ କ୍ଷେତ୍ରରେ ଅଗ୍ରଗଣ୍ୟ ହେବାର ପ୍ରତିଷ୍ଠା ଦିଏ । ଇଂରେଜମାନଙ୍କ ଆଗମନ ଓ ପାଶ୍ଚାତ୍ୟ ଶିକ୍ଷା ଓ ଚିନ୍ତାଧାରାର ପ୍ରବର୍ତ୍ତନର ଯଥେଷ୍ଟ ପୂର୍ବରୁ ସାଧୁ ସୁନ୍ଦର ଦାସଙ୍କର ଏଭଳି ଏକ ବୈପ୍ଳବିକ ଚିନ୍ତାଧାରା ଓଡ଼ିଶାକୁ ମହିମା ମଣ୍ଡିତ କରିଛି । ତାଙ୍କର 'କୁଜିବର ପତ୍ର'ରେ ପ୍ରକାଶିତ ଲେଖା ସବୁ ଏକ ସୁସ୍ଥ ଧାର୍ମିକ ଆନ୍ଦୋଳନ ଓ ନବଜାଗରଣର ଅୟମାରମ୍ଭ କରିଥିଲା । ବଙ୍ଗଦେଶ ଯିଏ ଓଡ଼ିଶାଠାରୁ ସାଂସ୍କୃତିକ କ୍ଷେତ୍ରରେ ଯଥେଷ୍ଟ ଆଗୁଆ ବୋଲି ଡିଣ୍ଡିମ ପିଟନ୍ତି, ସେମାନେ ମଧ୍ୟ ସେତେବେଳେ ଖବରକାଗଜଟିଏ ବାହାର କରି ନଥିଲେ । ସେ

କାଳରେ ପ୍ରସ୍ତୁତ ହେଉଥିବା ହାତ ତିଆରି ହରିତାଳ କାଗଜରେ ଏହାକୁ ଲେଖାଯାଇ ହାଟ ମେଳା ଆଦିରେ ପ୍ରସାର କରାଯାଉଥିଲା ।

ତାର ବହୁବର୍ଷ ପରେ ୧୭୮୦ ମସିହାରେ ଜେମ୍ସ୍ ଅଗଷ୍ଟସ୍ ହିକି ବେଙ୍ଗଲ ଗେଜେଟ୍ ନାମକ ଏକ ସମ୍ବାଦପତ୍ର ପ୍ରକାଶ କଲେ । ଇଷ୍ଟଇଣ୍ଡିଆ କମ୍ପାନୀର ରାଜକର୍ମଚାରୀମାନଙ୍କର ଦୁଷ୍କର୍ମର ପର୍ଦ୍ଦାଫାସ୍ କରିବା ପାଇଁ ଜଣେ ବିତାଡିତ କର୍ମଚାରୀଙ୍କର ଏ ପ୍ରୟାସ ସରକାରୀ ଆକ୍ରୋଶ ଯୋଗୁଁ ସଫଳ ହୋଇପାରି ନଥିଲା । ୧୮୩୭ ବେଳକୁ କଟକରେ ମୁଦ୍ରଣ ଯନ୍ତ୍ର ପ୍ରତିଷ୍ଠା ପାଇଁ ଉଦ୍ୟମ ଆରମ୍ଭ ହେଲା । ୧୮୬୮ରେ ବାଲେଶ୍ୱରରେ ବସିଲା ଉତ୍କଳ ପ୍ରିଣ୍ଟିଂ କୋ, ୧୮୮୫ରେ କଟକରେ ବସିଲା ଭିକ୍ଟୋରିଆ ପ୍ରେସ୍ । ୧୮୪୯ ମସିହାରେ ରେଭରେଣ୍ଡ ସି.ଲେସି ପ୍ରକାଶ କଲେ ଜ୍ଞାନାରଣ ନାମକ ଏକ ସାମୟିକ ପତ୍ରିକା । ଏହାର ମୃତ୍ୟୁ ପରେ ୧୮୫୫ରେ ସେ ପ୍ରକାଶ କଲେ ଆଉ ଏକ ମିସ୍‌ନାରୀ ପତ୍ରିକା 'ପ୍ରବୋଧ ଚନ୍ଦ୍ରିକା' । ୧୮୬୧ରେ ଖ୍ରୀଷ୍ଟିଆନ୍ ଭର୍ଣ୍ଣାକୁଲାର ଲିଟରେଚର ସୋସାଇଟିର ଉଦ୍ୟମରେ ପ୍ରକାଶ ହେଲା 'ଅରୁଣୋଦୟ' । ଏସବୁ ଖ୍ରୀଷ୍ଟିୟ ଭାବନାର ପ୍ରସାର ପାଇଁ ମୁଖ୍ୟତଃ ଉଦ୍ୟମରତ ଥିଲେ । ୧୮୬୧ ମସିହାରେ ବାଲେଶ୍ୱରରୁ ପ୍ରକାଶିତ ହେଲା ପ୍ରଥମ ଓଡ଼ିଆ ପତ୍ରିକା 'ବୋଧଦାୟିନୀ' । ଓଡ଼ିଆ ସାହିତ୍ୟର ବିକାଶ ତଥା ସରକାରଙ୍କ ଅନ୍ୟାୟ ଅବହେଳା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଥିଲା ତାର ମୁଖ୍ୟ ଉଦ୍ଦେଶ୍ୟ । ୧୮୬୬ ମସିହାରେ ଦାରୁଣ ନଅଙ୍କ ଦୁର୍ଭିକ୍ଷ ସମୟରେ ଉତ୍କଳ ପ୍ରିଣ୍ଟିଂ ପ୍ରେସ୍ ପ୍ରକାଶ କଲେ 'ଉତ୍କଳ ଦୀପିକା' । ଓଡ଼ିଆ ଜାତିର ସ୍ୱାଭିମାନ ଓ ଅସ୍ମିତାର ପ୍ରତିଷ୍ଠା ପାଇଁ ଏହାର ଅବଦାନ ଅନସ୍ୱୀକାର୍ଯ୍ୟ । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଭାଷା ଓ ସଂସ୍କୃତିର ସୁରକ୍ଷା ତଥା ନଅଙ୍କ ଦୁର୍ଭିକ୍ଷ ସମୟର ଲୋକଙ୍କ ଦୁଃଖକଷଣ ଉପସ୍ଥାପନ କରି ଉତ୍କଳ ଦୀପିକା ଜନସାଧାରଣଙ୍କୁ ସଚେତନ କଲା ଏବଂ ଏହାର ପ୍ରଭାବରେ ଏକ ନୂତନ ଶିକ୍ଷିତ, ବୌଦ୍ଧିକ ଗୋଷ୍ଠୀର ଆବିର୍ଭାବ ହେଲା ।

୧୮୬୮ରେ ଫକୀର ମୋହନ ଓ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ ସମ୍ପାଦନାରେ ପ୍ରଥମେ ମାସିକ ଓ ପରେ ସାପ୍ତାହିକ ଭାବେ ପ୍ରକାଶିତ ହେଲା ବାଲେଶ୍ୱର ସମ୍ବାଦ ବାହିକା । ଫକୀରମୋହନ ନିଜେ ନବଯୁଗର ଓଡ଼ିଆ ସାହିତ୍ୟର ଜନକ ରୂପେ ପରିଗଣିତ ହେଉଥିବାରୁ ତାଙ୍କ ପ୍ରକାଶିତ ଖବର କାଗଜରେ ମଧ୍ୟ ସାହିତ୍ୟର ପ୍ରସାର ଓ ତଦ୍ୱାରା ଅନ୍ଧବିଶ୍ୱାସ ଓ କୁସଂସ୍କାରର ଦୂରୀକରଣ ପାଇଁ ପ୍ରଚେଷ୍ଟା କରିଥିଲେ । ସେହିବର୍ଷ କାଳିପଦ ବାନାର୍ଜୀଙ୍କ ସମ୍ପାଦନାରେ 'ଉତ୍କଳ ହିତୈଷିଣୀ' କଟକରୁ ପ୍ରକାଶିତ ହେଲା । ୧୮୬୯ରେ ଭଗବତୀ ଚରଣ ଦାସ ପ୍ରକାଶ କଲେ 'ଉତ୍କଳ ଶୁଭଙ୍କରୀ', 'କଟକ ଷ୍ଟାର' ଓ 'କଟକ ଷ୍ଟାଣ୍ଡାର୍ଡ' । ୧୮୭୩ରେ ବାଲେଶ୍ୱର ରାଜା ବୈକୁଣ୍ଠନାଥ ଦେଙ୍କ ପ୍ରେରଣା ଯୋଗୁଁ 'ଉତ୍କଳ ଦର୍ପଣ' ଆରମ୍ଭ ହେଲା । ୧୮୭୯ରେ ବାରିପଦାର ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଦେଓଙ୍କ ସହଯୋଗରେ ପ୍ରତିଷ୍ଠିତ ହେଲା ମୟୂରଭଞ୍ଜ ପାକ୍ଷିକ ପତ୍ରିକା ୧୮୭୪ରେ ଧର୍ମବୋଧିନୀ, ୧୮୮୩ରେ ସେବକ, ୧୮୮୪ରେ ନବବିଧାନ ଆଦି ଧାର୍ମିକ ଓ ସମାଜ ସଂସ୍କାର ମୂଳକ ପତ୍ରପତ୍ରିକା ପ୍ରକାଶିତ ହୋଇଥିଲା । ସାମାଜିକ ପରିବର୍ତ୍ତନ ଆଣିବା ଥିଲା ଏମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ । ୧୮୮୬ରେ 'ତାରକା' ଓ 'ଶୁଭବାର୍ତ୍ତା' ନାମରେ କିଛି ଖ୍ରୀଷ୍ଟିୟ ପତ୍ରିକା ମଧ୍ୟ ଆତ୍ମପ୍ରକାଶ କରିଥିଲେ । ୧୮୮୮ରେ ସାଧୁଚରଣ ରାୟଙ୍କ ସମ୍ପାଦନାରେ 'ଆଶା' ନାମକ ଏକ ସାହିତ୍ୟ ପତ୍ରିକା ମଧ୍ୟ ପ୍ରକାଶିତ ହୋଇ ୧୯୯୦ରେ ବନ୍ଦ ହୋଇଗଲା । ୧୮୯୨ରେ ଏହା ସୁଲେଖିକା ରେବା ରାୟଙ୍କ ସମ୍ପାଦନାରେ ଏହା ଏକ ନାରୀ ପତ୍ରିକା ରୂପେ ଆତ୍ମପ୍ରକାଶ କଲା । ସେହିଭଳି ବାମଣ୍ଡା ରାଜା ସାର୍ ସୁଢଳ ଦେବଙ୍କ ସାହଚର୍ଯ୍ୟରୁ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନରେ ୧୮୮୯ରେ ପ୍ରକାଶିତ ହେଲା ସମ୍ବଲପୁର ହିତୈଷିଣୀ । ପଶ୍ଚିମ ଓଡ଼ିଶାରେ ହିନ୍ଦୀଭାଷା ପ୍ରଚଳନ ବିରୁଦ୍ଧରେ ଜନଜାଗରଣ ତଥା ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ଉତ୍କଳ ଦୀପିକା, ସମ୍ବାଦ ବାହିକା ଓ ସମ୍ବଲପୁର ହିତୈଷିଣୀଙ୍କର ମିଳିତ ଉଦ୍ୟମ ଥିଲା ଅପ୍ରତିହତ । ୧୮୯୧ରେ ମୟୂରଭଞ୍ଜର ସାହିତ୍ୟପ୍ରେମୀ ମହାରାଜ ଶ୍ରୀ ରାମଚନ୍ଦ୍ର ଦେବଙ୍କ ସୌଜନ୍ୟରୁ 'ଉତ୍କଳପ୍ରଭା' ନାମକ ଏକ ପତ୍ରିକା ଆତ୍ମପ୍ରକାଶ କରିଥିଲା । ସେସମୟରେ ମଧ୍ୟ ସାହିତ୍ୟ ବିଜ୍ଞାନ, ଦର୍ଶନ, ରାଜନୀତି ଓ ଧର୍ମ ଆଦି ବିଷୟରେ ପ୍ରବନ୍ଧମାନ ଆହ୍ୱାନ କରି ଲେଖକମାନଙ୍କୁ ପାରିତୋଷିକ ଦେବାର ପ୍ରଚେଷ୍ଟା କରାଯାଇଥିଲା । ଏଥିରେ ପ୍ରାଚୀନ ସାହିତ୍ୟିକ କୃତୀଗୁଡ଼ିକ ବିଷୟରେ ଆଲୋଚନା ପ୍ରକାଶ ହେଉଥିଲା । ୧୮୯୩ରେ ବିଜୁଳି ଓ ଇନ୍ଦ୍ରଧନୁ ନାମରେ ଆଉ ଦୁଇଟି ସାହିତ୍ୟ ପତ୍ରିକା ଆତ୍ମପ୍ରକାଶ କରିଥିଲେ । ୧୮୯୭ରେ ପ୍ରକାଶିତ ଉତ୍କଳ ସାହିତ୍ୟ ବାଗ୍ମୀ ବିଶ୍ୱନାଥ କରଙ୍କ ଦ୍ୱାରା ସମ୍ପାଦିତ ହୋଇ ବହୁ ପୁରାତନ ଲେଖକଙ୍କୁ ଉତ୍ସାହିତ କରିବା ସହ ବହୁ ନୂତନ ସାହିତ୍ୟିକ ସୃଷ୍ଟି କରିବାରେ ସହାୟକ ହୋଇଥିଲା ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ହେଉଛି ନବ ଯୁଗ ଓଡ଼ିଆ ସାହିତ୍ୟର ଅୟମାରମ୍ଭ ପର୍ବ । ତାଳପତ୍ର ପୋଥି ଲେଖାରୁ ଉନ୍ନୀତ ହୋଇ ଛାପାକାଗଜରେ ଲେଖା ପ୍ରକାଶ ପାଇବା ଆରମ୍ଭ ହେଲା ।

ଇଂରେଜ ସଭ୍ୟତାର ପ୍ରସାର ଯୋଗୁଁ ମତବ୍ୟକ୍ତ କରିବାର ସ୍ୱାଧୀନତା ବିଷୟରେ ଲୋକେ ଜାଣିବାକୁ ପାଇଲେ । ପାଶ୍ଚାତ୍ୟ ଶିକ୍ଷା, ସଂସ୍କୃତି ଓ ସଭ୍ୟତାର ସ୍ପର୍ଶ ପାଇ ଆରମ୍ଭ ହେଲା ନବଜାଗରଣ ବା ରେନାସାଁ । ଛାପା ପୁସ୍ତକର ପ୍ରଚାର ସହଜ ସାଧ୍ୟ ଓ ସୁଲଭ ହୋଇଥିବାରୁ ଲେଖକ ଓ ପାଠକମାନେ  ସାହିତ୍ୟ ସାଧନା ପ୍ରତି ଆଗ୍ରହୀ ହେଲେ । ଆଙ୍ଗିକ ଓ ଆତ୍ମିକ ଦୃଷ୍ଟିରୁ ସାହିତ୍ୟର ନବକଳେବର ସଂଘଟିତ ହେଲା । ସ୍ୱାଧୀନ ଚିନ୍ତନ ଓ ମତବ୍ୟକ୍ତ କରିବା ପାଇଁ ବୁଦ୍ଧିଜୀବୀ ଗୋଷ୍ଠୀ ତତ୍ପର ହେଲେ । ଜାତୀୟତାବାଦ ଓ ସ୍ତ୍ରୀ ଶିକ୍ଷା ଆଦି ଦିଗରେ ନୂତନ ପ୍ରେରଣା ସଂଚାର ହେଲା । ପତ୍ରିକାମାନେ ପ୍ରଚଳିତ କୁସଂସ୍କାର ଓ ଅନ୍ଧବିଶ୍ୱାସ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ଏକ ମଞ୍ଚ ପାଇଲେ । ସଚେତନତାର ବୃଦ୍ଧି ଯୋଗୁଁ ଭାରତୀୟ ତଥା ଓଡ଼ିଆ ଛାତ୍ରଛାତ୍ରୀମାନେ ସାହିତ୍ୟ ବ୍ୟତୀତ ବିଜ୍ଞାନ ଇତିହାସ, ଅର୍ଥନୀତି, ରାଜନୀତି, ସମାଜତତ୍ତ୍ୱ , ଇଂଜିନିୟରିଂ, ଡାକ୍ତରୀ ତଥା ଆଇନ୍ ଆଦି ବିଭାଗରେ ପଢିବାକୁ ଆଗ୍ରହୀ ହେଲେ । ପାଶ୍ଚାତ୍ୟ ତତ୍ତ୍ୱ  ସବୁ ଉନ୍ମୋଚିତ ହୋଇ ଆମ ଲୋକଙ୍କର ଜ୍ଞାନଚକ୍ଷୁ, ଉନ୍ମୀଳିତ ହେଲା ।

ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଯେତେବେଳେ ଜାତୀୟତାବାଦ ଚେର ମେଲାଇବା ଆରମ୍ଭ କରିଥାଏ ବାଲେଶ୍ୱରରୁ 'ନବ ସମ୍ବାଦ' ନାମକ ଏକ ପତ୍ରିକା ଆତ୍ମପ୍ରକାଶ କଲା । ଉତ୍କଳ ଦୀପିକା ସହ ମିଶି ନବସମ୍ବାଦ ସ୍ୱଦେଶୀ ଆନ୍ଦୋଳନକୁ ଏକ ନୂଆ ମୋଡ ଦେଲା ଏବଂ ଓଡ଼ିଶାରେ ଏହାର ଜଡବିସ୍ତାର କରିବାରେ ସହାୟତା ପ୍ରଦାନ କଲା । ୧୯୦୫ରେ ବାବୁ କ୍ଷିରୋଦ ଚନ୍ଦ୍ର ଚୌଧୁରୀ କଟକରୁ 'ଷ୍ଟାର ଅଫ୍ ଉତ୍କଳ' ନାମରେ ଏକ ଇଂରାଜୀ ପତ୍ରିକା ପ୍ରକାଶ କଲେ । ତାହା ତତ୍କାଳୀନ ବଙ୍ଗ ସରକାରଙ୍କର ଖାଦ୍ୟ ନୀତିକୁ ତୀବ୍ର ଭାବେ ସମାଲୋଚନା କରି ଓଡ଼ିଶାରେ ଘଟିଥିବା ଅନାହାର ମୃତ୍ୟୁ ପାଇଁ  ତାକୁ ଦାୟୀ କରିଥିଲା । ସେହି ସମୟରେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ଗଞ୍ଜାମରୁ 'ପ୍ରଜାବନ୍ଧୁ' ନାମକ ଏକ ପତ୍ରିକା ଆରମ୍ଭ କଲେ । ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ପ୍ରଜାବନ୍ଧୁ  ଏବଂ ସମ୍ବଲପୁର ହିତୈଷିଣୀ ଉଭୟ ପତ୍ରିକାରେ ସଂପାଦନା କଲାବେଳେ ଓଡ଼ିଆ ଭାଷା ଆନ୍ଦୋଳନ, ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣର ସୂତ୍ରପାତ କରିଥିଲେ । ଗଙ୍ଗାଧର ମେହେର ଓ ରାଧାନାଥ ରାୟଙ୍କ ପରି ବିଶିଷ୍ଟ କବିମାନଙ୍କୁ ସମ୍ବାଦପତ୍ରର ପୃଷ୍ଠରେ ସାହିତ୍ୟଚର୍ଚ୍ଚା ପାଇଁ ସୁଯୋଗ ଦେଉଥିଲେ । ଗଞ୍ଜାମ ଅଞ୍ଚଳରେ ସେହି ସମୟରେ ଦୁଇ ତିନୋଟି ପତ୍ରିକା ଏକ ସମୟରେ ଆତ୍ମପ୍ରକାଶ କରିଥିଲେ । ସେଗୁଡ଼ିକ ମଧ୍ୟରେ ପାରଳାଖେମୁଣ୍ଡିରୁ 'ଗଞ୍ଜାମ ନ୍ୟୁଜ' ବରହମପୁରରୁ 'ଓଡ଼ିଆ ହିତବାଦିନୀ' ଦିଗପହଣ୍ଡିରୁ 'ଗଞ୍ଜାମ ଗୁଣଦର୍ପଣ' ଏବଂ ଇଚ୍ଛାପୁରରୁ 'ଉତ୍କଳବାସୀ' ଅନ୍ୟତମ ଥିଲେ । ସେତେବେଳେ ମାଡ୍ରାସ୍ ପୋଭିନ୍ସରେ ଲୋପ ପାଇବାକୁ ବସିଥିବା ଓଡ଼ିଶାକୁ ବଞ୍ଚାଇବା ଓ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଏମାନଙ୍କ ଉଦ୍ୟମ ପ୍ରଶଂସନୀୟ ।

୧୯୧୩ ମସିହାରେ ଓଡ଼ିଆ ସାମ୍ବାଦିକତା ଓ ପ୍ରକାଶନ କ୍ଷେତ୍ରରେ ଆଉ ଏକ ଯୁଗାନ୍ତକାରୀ ପଦକ୍ଷେପ ସ୍ୱରୂପ ଶଶିଭୂଷଣ ରଥଙ୍କ ଉଦ୍ୟମରେ ଆରମ୍ଭ ହେଲା 'ଆଶା' ନାମକ ଏକ ସାପ୍ତାହିକ ପତ୍ରିକା । ପଣ୍ଡିତ ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର ଆଦି ସାହିତ୍ୟିକ ଦେଶପ୍ରେମୀ ତଥା ବାଗ୍ମୀମାନେ ସେଥିରେ ନିୟମିତ ଲେଖୁଥିଲେ । ପଣ୍ଡିତ ଗୋପବନ୍ଧୁ ସେହି ସମୟରେ ପ୍ରସିଦ୍ଧ ସମ୍ବାଦପତ୍ର 'ସମାଜ'ର ଆଦିରୂପ 'ସତ୍ୟବାଦୀ'କୁ ମାସିକ ରୂପରେ ଆଶା ପ୍ରେସ୍‌ରୁ ସଂଚାଳନ କରୁଥିଲେ । ଓଡ଼ିଆ ଜନମାନସର ପ୍ରତୀକ ରୂପେ ଏହି ପତ୍ରିକାଦ୍ୱୟ ବୁଦ୍ଧିଜୀବୀ ମହଲରେ ଅନେକ ଆଶାର ସଂଚାର କରିଥିଲା । ୧୯୧୭ ମସିହାରେ 'ସମାଜ ମିତ୍ର' ନାମକ ଏକ ସାପ୍ତାହିକ ପତ୍ରିକା କଟକରୁ ପ୍ରକାଶିତ ହେଲା । ସେଇ ସମୟକୁ ଗୋପାଳଚନ୍ଦ୍ର ପ୍ରହରାଜ ସତ୍ୟ ସମାଚାର ଓ ଉତ୍କଳଗୌରବ ମଧୁସୁଦନ, ଦି ଓଡ଼ିଆ, ଦିବ୍ୟପ୍ରସନ୍ନ ରାୟ ଚୌଧୁରୀ ନବ୍ୟଭାରତ ପ୍ରକାଶନର ଦାୟିତ୍ୱ ନେଇ ସାରିଥିଲେ । ୧୯୨୧ରେ କଟକରୁ ସ୍ୱରାଜ ନାମକ ଏକ ସାପ୍ତାହିକ ପତ୍ରିକା ପ୍ରକାଶ ହେଲା ଯାହା ପରବର୍ତ୍ତୀ ସମୟରେ ଦୈନିକ ଭାବେ ପ୍ରକାଶ ପାଇଲା ।

୧୯୧୯ରେ ପଣ୍ଡିତ ଗୋପବନ୍ଧୁ ଦାଶ ପ୍ରତିଷ୍ଠା କଲେ 'ସମାଜ' । ପଣ୍ଡିତ ଗୋପବନ୍ଧୁ ଦାସ କେବଳ ଜଣେ ପ୍ରତିଷ୍ଠିତ ସାମ୍ବାଦିକ ଓ ସମ୍ପାଦକ ନଥିଲେ, ସେ ଥିଲେ ଜଣେ ରାଷ୍ଟ୍ରବାଦୀ ନେତା, ସମାଜସେବୀ ତଥା ବିଶିଷ୍ଟ ସାହିତ୍ୟିକ ଓ ସଂସ୍କାରକ । ତାଙ୍କ ବିଚାରଧାରାର ପ୍ରଭାବରେ ସତ୍ୟବାଦୀର ବନବିଦ୍ୟାଳୟ, ଉତ୍କଳ ସମ୍ମିଳନୀ ଓ ସମାଜ ପରିଚାଳିତ ହେଉଥିଲା । ତେଣୁ 'ସମାଜ' ତତ୍କାଳୀନ ସମାଜରେ ସାହିତ୍ୟ, ସାମାଜିକ ବିଚାରଧାରା, ରାଜନୀତି, ଆଦିକୁ ପ୍ରଭାବିତ କରିଥିଲା ।

୧୯୨୮ରେ ଶଶିଭୂଷଣ ରଥ ଏକ ବୈପ୍ଳବିକ ପଦକ୍ଷେପ ନେଇ ପୂର୍ବରୁ ପ୍ରକାଶିତ 'ଆଶା'କୁ 'ଦୈନିକ ଆଶା'ରେ ପରିବର୍ତ୍ତିତ କଲେ । ଏ ଉଭୟ ପତ୍ରିକା ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରସାରଣ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ୧୯୩୧ରେ ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ଓ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ସହଯୋଗରେ ସମାଜ ଦୈନିକ ଖବରକାଗଜ

ହେଲା । ସେଇ ସମୟରେ ନବ ଭାରତ ଓ ଲୋକମତ ନାମରେ ଆଉ ଦୁଇଟି ପତ୍ରିକା ମଧ୍ୟ ଆତ୍ମପ୍ରକାଶ କରିଥିଲେ । ୧୯୩୩ରେ ଶଶିଭୂଷଣ ରଥଙ୍କ ପ୍ରଚେଷ୍ଟାରେ ବ୍ରହ୍ମପୁରର 'ଆଶା' ପ୍ରେସ୍‌ରୁ ଆରମ୍ଭ ହେଲା ରାଜ୍ୟର ପ୍ରଥମ ଇଂରାଜୀ ଦୈନିକ ଦିନ ନ୍ୟୁ ଓଡ଼ିଶା, ପରେ ପରେ ଦି ଓଡ଼ିଶା ଫାଷ୍ଟ ଓ ଅବଜରଭର ନାମରେ ଦୁଇଟି ଇଂରାଜୀ ପତ୍ରିକା ପ୍ରକାଶ ପାଇ ଶିକ୍ଷିତ ମହଲରେ ବେଶ୍ ଆଦୃତ ହେଲା । ୧୯୩୮ ବେଳକୁ ଗୋଦାବରୀଶ ମହାପାତ୍ରଙ୍କ ପ୍ରତିଷ୍ଠିତ ସମାଲୋଚନା ପତ୍ରିକା ନିଆଁଖୁଣ୍ଟା ଆତ୍ମପ୍ରକାଶ କରି ଚମକ ଖେଳାଇଦେଲା । ସେସମୟକୁ ଗଡ଼ଜାତ ଗାନ୍ଧୀ ସାରଙ୍ଗଧର ଦାସଙ୍କ ପ୍ରକାଶିତ 'କୃଷକ' ମଧ୍ୟ ସ୍ୱାଧୀନତା ଓ ପ୍ରଜା ଆନ୍ଦୋଳନର ବାର୍ତ୍ତା ପ୍ରସାର କରୁଥାଏ । ପ୍ରାକ୍ ସ୍ୱାଧୀନତା ସମୟରେ ସମ୍ବାଦପତ୍ରମାନଙ୍କର ମୁଖ୍ୟ ଆଭିମୁଖ୍ୟ ଥିଲା ଜାତୀୟତାବାଦ ଓ ଭାରତୀୟ ଅସ୍ମିତାର ବାର୍ତ୍ତା ପ୍ରସାରଣ କରିବା । ତା ଭିତରେ ସମ୍ୟକ ସାହିତ୍ୟ ଓ ସାମାଜିକ ପରିବର୍ତ୍ତନର ବାର୍ତ୍ତା ମଧ୍ୟ ରହୁଥିଲା । ୧୯୦୩ ରୁ ୧୯୩୬ ମସିହା ମଧ୍ୟରେ ଓଡ଼ିଶାରେ ଯେତେବେଳେ ଭାଷା ଆନ୍ଦୋଳନର ଦାବି ଜୋର୍ ଧରୁଥାଏ, ସମ୍ବାଦପତ୍ରମାନେ ଭାଷା ଆନ୍ଦୋଳନକୁ ଜୋରଦାର କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ସ୍ୱାଧୀନତା ପରବର୍ତ୍ତୀ ସମୟରେ ଓଡ଼ିଶାର ସାମ୍ବାଦିକତା କ୍ଷେତ୍ରରେ ନୂତନ ମାଇଲ୍‌ଖୁଣ୍ଟମାନ ପ୍ରତିଷ୍ଠା ହେଲା । ୧୯୨୩ ମସିହାରେ ବାଲେଶ୍ୱରରୁ କ୍ଷୁଦ୍ର ସାପ୍ତାହିକୀ ରୂପରେ ଆରମ୍ଭ ହୋଇଥିବା ପ୍ରଜାତନ୍ତ୍ର ୧୯୪୭ ଅଗଷ୍ଟ ୮ରୁ ଦୈନିକ ରୂପରେ ପୁନଃ ଆତ୍ମପ୍ରକାଶ କଲା । ୧୯୪୮ରେ ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ଆଉ ଏକ ଇଂରାଜୀ ଦୈନିକ 'ଦି ଇଷ୍ଟର୍ଣ୍ଣ ଟାଇମସ୍' ପ୍ରକାଶିତ ହେଲା ।

ଡଃ ହରେକୃଷ୍ଣ ମହତାବ କେବଳ ଜଣେ ଦକ୍ଷ ରାଜନୀତିଜ୍ଞ ନଥିଲେ, ସେ ଜଣେ ବିଶିଷ୍ଟ ସାହିତ୍ୟିକ ମଧ୍ୟ ଥିଲେ । ତାଙ୍କ ସମୟରେ ପ୍ରଜାତନ୍ତ୍ରରେ ଗାଁ ମଜଲିସ୍‌ଠାରୁ ଆରମ୍ଭ କରି ଅନ୍ୟାନ୍ୟ ଅନେକ ସାହିତ୍ୟିକ ବିଷୟକ ଲେଖା ପ୍ରକାଶ ପାଉଥିଲା । ପରେ ତାଙ୍କ ଉଦ୍ୟମରେ ଝଙ୍କାର ଓ ମୀନାବଜାର ଭଳି ସାହିତ୍ୟ ଓ ଶିଶୁ ପତ୍ରିକା ମଧ୍ୟ ଆରମ୍ଭ ହେଲା, ଯାହା ଓଡ଼ିଆ ସାହିତ୍ୟରେ ଗୋଟିଏ ଗୋଟିଏ କୀର୍ତ୍ତିସ୍ତମ୍ଭ । ଏହା ମାଧ୍ୟମରେ ଅନେକ ନବୀନ ସାହିତ୍ୟିକ ପ୍ରବୀଣ ହେବାର ସୁଯୋଗ ପାଇଛନ୍ତି । ସେଇ ସମୟରେ ବିଜୁ ପଟ୍ଟନାୟକଙ୍କ କଟକ ତୁଳସୀପୁରସ୍ଥିତ ଘରୁ କୋଲକାତାର ଖବରକାଗଜ 'ଅମୃତ ବଜାର ପତ୍ରିକାର'ର ଗୋଟିଏ ସଂସ୍କରଣ ମଧ୍ୟ ବାହାରିବା ଆରମ୍ଭ ହେଲା । ମାତ୍ର ତାହା ଦୁଇବର୍ଷ ପରେ କୌଣସି କାରଣରୁ ବନ୍ଦ ହେଇଗଲା । ୧୯୪୭ରେ ସାପ୍ତାହିକୀ ଭାବେ ଆରମ୍ଭ ହୋଇଥିବା ବାଳକୃଷ୍ଣ କରଙ୍କ ପ୍ରତିଷ୍ଠିତ ମାତୃଭୂମି ୧୯୫୧ରେ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ସହାୟତାରେ ଦୈନିକ ହେଲା । ମାତୃଭୂମି ପ୍ରତିଷ୍ଠାନ ପକ୍ଷରୁ ସହକାର ନାମକ ଏକ ସାହିତ୍ୟ ପତ୍ରିକା ମଧ୍ୟ ସେ ସମୟରେ ଆରମ୍ଭ ହେଲା । ସେହି ସମୟରେ ଝଙ୍କାର ଓ ସହକାର ପ୍ରମୁଖ ସାହତ୍ୟ ପତ୍ରିକା ରୂପେ ପରିଗଣିତ ହେଉଥିଲେ । ବିଜୁ ପଟ୍ଟନାୟକ ମଧ୍ୟ ୧୯୬୦ରେ 'କଳିଙ୍ଗ' ନାମକ ଏକ ଦୈନିକ ବାହାର କଲେ । ପରେ ପରେ ୧୯୬୬ରେ 'ଜନଶକ୍ତି' ବୀରେନ୍ ମିତ୍ରଙ୍କ ସହାୟତାରେ ପ୍ରକାଶିତ ହେଲା । ୪ର୍ଥ ସାଧାରଣ ନିର୍ବାଚନ ପରେ ରାଜେନ୍ଦ୍ର ନାରାୟଣ ସିଂହଦେଓ 'ସ୍ୱରାଜ୍ୟ' ନାମରେ ଏକ ସମ୍ବାଦପତ୍ର ବାହାର କଲେ । ୧୯୭୪ ବେଳକୁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ 'ଧରିତ୍ରୀ' ନାମରେ ଏକ ସମ୍ବାଦପତ୍ର ପ୍ରକାଶ କଲେ । ଶ୍ରୀମତୀ ଶତପଥୀ ଓ ତାଙ୍କ ବାପା ସ୍ୱର୍ଗତ କାଳନ୍ଦୀଚରଣ ପାଣିଗ୍ରାହୀ ଉଭୟ ଉଚ୍ଚମାନର ସାହିତ୍ୟିକ ହୋଇଥିବାରୁ ଧରିତ୍ରୀ ଏକ ବୌଦ୍ଧିକ ଆନ୍ଦୋଳନରେ ପରିଣତ ହୋଇପାରିଥିଲା । ଏବେ ଧରିତ୍ରୀ ପ୍ରକାଶନ ତରଫରୁ 'ଓଡ଼ିଶା ପୋଷ୍ଟ' ନାମକ ଏକ ଇଂରାଜୀ ଦୈନିକ ମଧ୍ୟ ପ୍ରକାଶ ପାଉଛି । ପରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ପୃଷ୍ଠପୋଷକତାରେ ତାଙ୍କ ଜାମାତା ସୌମ୍ୟରଂଜନ ପଟ୍ଟନାୟକ ଇଷ୍ଟର୍ଣ୍ଣ ମେଡିଆ ଲିମିଟେଡ୍ ପ୍ରତିଷ୍ଠା କରି ୧୯୮୪ରେ ଆରମ୍ଭ କଲେ 'ସମ୍ବାଦ' । ଏହା ଓଡ଼ିଶାର ପ୍ରକାଶନ ଶିଳ୍ପ କ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲା । ସୌମ୍ୟବାବୁ ନିଜେ ନିଜେ ଜ୍ଞାନୀ ଗୁଣୀ ଲୋକ ହୋଇଥିବାରୁ ସମ୍ବାଦ ସହିତ 'କଥା' ଭଳି ମର୍ଯ୍ୟାଦାଜନକ ଗଳ୍ପ, ପତ୍ରିକା, ସିନେ ସମ୍ବାଦ ଭଳି ଚଳଚ୍ଚିତ୍ର ପତ୍ରିକା ମଧ୍ୟ ଆରମ୍ଭ କଲେ । ସେ ଏକ ଦୈନିକ ଇଂରାଜୀ 'ସନ୍ ଟାଇମ୍' ମଧ୍ୟ ପ୍ରତିଷ୍ଠା କରିଥିଲେ । ସାହିତ୍ୟ କ୍ଷେତ୍ରରେ 'କଥା' ଅନେକ ଯୁବ ଗାଳ୍ପିକଙ୍କୁ ପ୍ରତିଷ୍ଠା ଦେଇଛି । ଏହା ପରେ ପରେ ୧୯୯୬ରେ ତତ୍କାଳୀନ ଉପମୁଖ୍ୟମନ୍ତ୍ରୀ ବସନ୍ତ କୁମାର ବିଶ୍ୱାଳଙ୍କ ଦ୍ୱାରା ପ୍ରଥମ କଲର ସମ୍ବାଦ ପତ୍ର 'ସମୟ' ଆରମ୍ଭ ହେଲା । ପରେ ପରେ ପ୍ରଗତିବାଦୀ, ଅନୁପମ ଭାରତ, ସୂର୍ଯ୍ୟପ୍ରଭା, ପ୍ରମେୟ, ଓଡ଼ିଶା ଭାସ୍କର, ନକ୍ଷତ୍ରଜ୍ୟୋତି, ଓସ୍କାର ଆଦି ଅନେକ ଉଲ୍ଲେଖଯୋଗ୍ୟ ସମ୍ବାଦପତ୍ର ଆତ୍ମପ୍ରକାଶ କରି ଓଡ଼ିଶାର ପ୍ରକାଶନ ଶିଳ୍ପକୁ ସମୃଦ୍ଧ କରିଛନ୍ତି । ୧୩୮ ବର୍ଷର ସାମ୍ବାଦିକତାର ଇତିହାସ ଭିତରେ ଆଦ୍ୟଭାଗରେ ସମ୍ବାଦପତ୍ରଗୁଡ଼ିକ ମିଶନାରୀ ଧର୍ମପ୍ରଚାର ପାଇଁ

ବ୍ୟବହୃତ ହେଉଥିଲା ବେଳେ ପରବର୍ତ୍ତୀ କାଳରେ ଏହା ସଂସ୍କାର ମୂଳକ ସ୍ୱଦେଶୀ ଓ ଜାତୀୟତାବାଦୀ ମନୋଭାବରେ ପ୍ରତିଫଳନ କଲେ । ଏବେ ତ ଅଧିକାଂଶ ସମ୍ବାଦପତ୍ର ଅର୍ଥାଗମର ଏକ ଶିଳ୍ପ ପାଲଟି ସାରିଲାଣି । ଶିଳ୍ପପତି ଓ ରାଜନେତାମାନଙ୍କ ଦ୍ୱାରା ଏହା ନିୟନ୍ତ୍ରିତ । ତଥାପି ତା' ଭିତରେ ଆଖୁ ଯୋଗୁଁ କାନ୍ଶିରି ପାଣି ପାଇଲା ଭଳି ସାହିତ୍ୟ, ସଂସ୍କୃତି, ପର୍ଯ୍ୟଟନ ଆଦି ବଞ୍ଚି ରହିଛନ୍ତି ।

ତା'ପରେ ୨୦୦୦ ମସିହା ବେଳକୁ ବିଶ୍ୱାୟନର ଯୁଗ ଆରମ୍ଭ ହୋଇଗଲା । ଗୋଟିଏ ପରେ ଗୋଟିଏ ଅନେକ ସାହିତ୍ୟ ପତ୍ରିକା ଓ ସମ୍ବାଦପତ୍ର ଆତ୍ମପ୍ରକାଶନ କଲେ । ବର୍ତ୍ତମାନ ୨୦୧୦ ମସିହା ସୁଦ୍ଧା ଓଡ଼ିଶାରେ ୬ଟି ଇଂରାଜୀ, ଗୋଟିଏ ହିନ୍ଦୀ ଏବଂ ୩୬୬ଟି ଓଡ଼ିଆ ସମ୍ବାଦପତ୍ର ପ୍ରକାଶିତ ହେଉଛି । ଏମାନଙ୍କ ମଧ୍ୟରୁ ୧୦୭ଟି ଦୈନିକ, ୨୪୭ଟି ସାପ୍ତାହିକୀ ଓ ୧୨ଟି ପାକ୍ଷିକ । ଏମାନଙ୍କ ବ୍ୟତୀତ ପ୍ରାୟ ଶହେଟି ସାହିତ୍ୟ, ଫିଚର, ପାରିବାରିକ, ମହିଳା ତଥା ଯୁବ ପତ୍ରିକା ବିଭିନ୍ନ ପ୍ରକାଶନ ସଂସ୍ଥାମାନଙ୍କ ଦ୍ୱାରା ପ୍ରକାଶିତ ହେଉଛି । ଏମାନଙ୍କ ମଧ୍ୟରୁ ଅନେକେ ଯେତେ ଶୀଘ୍ର ଆବିର୍ଭାବ ହୋଇଛନ୍ତି, ସେତେ ଶୀଘ୍ର ତାଙ୍କର ତିରୋଧାନ ମଧ୍ୟ ହେଇଛି । ଏଥିରେ ସାହିତ୍ୟ ବ୍ୟତୀତ, ଜ୍ଞାନ ବିଜ୍ଞାନ, ଚଳଚ୍ଚିତ୍ର ସଂଗୀତ ସଂସ୍କୃତି, କଳା ଫ୍ୟାସନ୍ ଚିତ୍ତ ବିନୋଦନ, ରୋଷେଇ, କ୍ରୀଡା, କୃଷି, ସ୍ୱାସ୍ଥ୍ୟ, ପର୍ଯ୍ୟଟନ ଆଦି ବିଭିନ୍ନ ବିଷୟ ଉପରେ ଆଲୋକପାତ କରାଯାଏ । ଆଜି ଯଦି ଓଡ଼ିଶାର ଦେବତା ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଓ ତାଙ୍କ ରଥଯାତ୍ରା ବିଶ୍ୱବିଦିତ ହୋଇଛି, ଯଦି କୋଣାର୍କ ଓ ଚିଲିକାକୁ ବିଶ୍ୱର ବିଭିନ୍ନ ପ୍ରାନ୍ତରୁ ପର୍ଯ୍ୟଟକମାନେ ଆସୁଛନ୍ତି, ତାହା ଗଣମାଧ୍ୟମରେ ପ୍ରସାରଣ ଯୋଗୁଁ ସମ୍ଭବ ହୋଇପାରିଛି । ଓଡ଼ିଶାର ପ୍ରସିଦ୍ଧ ଓଡ଼ିଶୀ , ଗୋଟିପୁଅ, ଛଉ ଆଦି ନୃତ୍ୟ, ଗୀତଗୋବିନ୍ଦ ଭଳି ସଂଗୀତ ଆଦି ବିଶ୍ୱ ଦରବାରରେ ସମ୍ମାନିତ ହୋଇପାରିଛି । କେବଳ ଗଣମାଧ୍ୟମ ଅବଦାନରୁ ରଘୁରାଜପୁରର ପଟ୍ଟଚିତ୍ର, ପିପିଲିର ଚାନ୍ଦୁଆ, ସମ୍ବଲପୁରୀ ଶାଢୀ, ସୋନପୁରର ବମକେଇ ପାଟ, ମାଣିଆବନ୍ଧ ଶାଢୀ ବରହମପୁରର ପାଟ, ଓଡ଼ିଶାର ଏହି ସକ୍ରିୟ ଗଣମାଧ୍ୟମ ଯୋଗୁଁ । ସେହିଭଳି ଓଡ଼ିଶାରେ ନେତାଜୀଙ୍କ ଜନ୍ମସ୍ଥାନ ପ୍ରସିଦ୍ଧ ଜୟଦେବଙ୍କ ସାଧନା ପୀଠ ତଥା ବୌଦ୍ଧ ପରମ୍ପରା ଓ ଐତିହ୍ୟ ବିଷୟରେ ବିଶ୍ୱରେ ଜନମତ ସୃଷ୍ଟି କରିବାରେ ଗଣମାଧ୍ୟମ ପ୍ରମୁଖ ଭୂମିକା ଗ୍ରହଣ କରିଛି । ଓଡ଼ିଶା ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବା ପାଇଁ ଯେଉଁ ଉଦ୍ୟମ ୨୦୦୬ ମସିହାରୁ ଆରମ୍ଭ ହୋଇ ୨୦୧୩ ଫଳବତୀ ହେବାକୁ ଯାଉଛି, ସେଥିରେ ବିଭିନ୍ନ ଗଣମାଧ୍ୟମର ଅବଦାନ ଯଥେଷ୍ଟ । ବ୍ୟାପକ ଲୋକମତ ସୃଷ୍ଟି କରିବାରେ ଏହା ସହାୟକ ହୋଇଥିଲା ।

୧୯୬୧ ମସିହାରେ ଓଡ଼ିଶାର ୨୦%, ୧୯୭୧ରେ ୨୬%, ୧୯୮୧ ଓ ୧୯୯୧ରେ ୪୧% ଲୋକ ସାକ୍ଷର ଥିଲେ । ସେସମୟରେ ଓଡ଼ିଆ ଦୈନିକ ସମ୍ବାଦପତ୍ରମାନଙ୍କର ମୋଟ୍ ପ୍ରସାରଣ ସଂଖ୍ୟା ଯଥାକ୍ରମେ ୬୦୦୦୦, ୯୦୦୦୦, ୧,୭୮,୦୦୦ ଏବଂ ୬,୯୭,୦୦୦ ଥିଲା । ଏହି ଦଶନ୍ଧି ମାନଙ୍କରେ ସମ୍ବାଦପତ୍ରଗୁଡ଼ିକର ପ୍ରସାରଣ ବଢ଼ିଛି । ୧୯୬୧ରେ ପ୍ରତି ହଜାର ଲୋକସଂଖ୍ୟାରେ ୩ଜଣ ଖବର କାଗଜ ପଢୁଥିଲା ବେଳେ, ତାହା ୧୯୭୧ରେ ୪ଜଣ, ୧୯୮୧ରେ ୭ଜଣ ଓ ୧୯୯୧ରେ ୨୨ଜଣରେ ପହଞ୍ଚିଥିଲା । ତେଣୁ ସାକ୍ଷରତା ବୃଦ୍ଧିରେ ମଧ୍ୟ ଗଣମାଧ୍ୟମ ସହାୟକ ହୋଇଛି ।

୨୦୧୧ ମସିହାରେ ହୋଇଥିବା ଜାତୀୟ ପାଠକ ସର୍ଭେ ରିପୋର୍ଟ ଅନୁଯାୟୀ ଓଡ଼ିଶାରେ ପାଠକ ସଂଖ୍ୟା ୧ କୋଟିରୁ ଊର୍ଦ୍ଧ୍ୱ ହୋଇଛି । ସମ୍ବାଦ, ସମାଜ ଓ ଧରିତ୍ରୀ ତିନୋଟି ମୁଖ୍ୟ ସମ୍ବାଦପତ୍ରର ମୋଟ ପାଠକ ସଂଖ୍ୟା ୪୪ ଲକ୍ଷ ପାରିହୋଇଛି । ତଦନୁଯାୟୀ ସମ୍ବାଦର ପାଠକ ସଂଖ୍ୟା ୧୫.୦୪ ଲକ୍ଷ, ସମାଜର ୧୩.୭୮ ଓ ଧରିତ୍ରୀର ପାଠକ ସଂଖ୍ୟା ୧୪.୫୫ ଲକ୍ଷ ଏବଂ ସମୟର ୧.୮୫ ଲକ୍ଷ । ଏମାନଙ୍କ ମଧ୍ୟରୁ ଅନେକ ପତ୍ରିକା ବିଭିନ୍ନ ସ୍ଥାନରୁ ଏକ ସଂଗେ ସଂସ୍କରଣ ବାହାର କରୁଛନ୍ତି । ତେଣୁ ସେମାନେ ସ୍ଥାନୀୟ ଖବରକୁ ପ୍ରାଧାନ୍ୟ ଦେଇପାରୁଛନ୍ତି । ଏତଦ୍ୱାରା ସେମାନେ ଜନସାଧାରଣଙ୍କ ଦ୍ୱାରା ଅଧିକ ଗ୍ରହଣୀୟ ହୋଇପାରିଛନ୍ତି । ଗ୍ରାହକ ଓ ପାଠକମାନଙ୍କ ରୁଚିକୁ ଆଖି ଆଗରେ ରଖି ସେମାନେ ତାଙ୍କ ବିଷୟବସ୍ତୁ ଚୟନରେ ପରିବର୍ତ୍ତନ ମଧ୍ୟ ଆଣୁଛନ୍ତି । ୧୯୮୦ ମସିହା ବେଳକୁ କୌଣସି ସମ୍ବାଦପତ୍ରରେ ଖେଳ ଖବର, ବଣିଜ ବେପାର, ଫ୍ୟାସନ୍, ଆଦି ବିଷୟ ସ୍ଥାନ ପାଉ ନଥିଲା । ମାତ୍ର ଏବେ କେତେକ ଖବର କାଗଜ 'ପେଜ୍ – ଥ୍ରୀ' ସଂସ୍କୃତି ମଧ୍ୟ ଆରମ୍ଭ କଲେଣି, ଯେଉଁଥିରେ ବ୍ୟକ୍ତି ବିଚିତ୍ରା, ଉପଭୋକ୍ତାବାଦ, ଷ୍ଟାଇଲ୍, ଫେସନ୍ ଟ୍ରେଣ୍ଡ ଆଦି ଖବର ପ୍ରକାଶ ପାଉଛି । ପିଲାଙ୍କ ପାଇଁ, ମହିଳାଙ୍କ ପାଇଁ, ଛାତ୍ରଛାତ୍ରୀ, ବ୍ୟବସାୟୀ ସମସ୍ତଙ୍କ ପାଇଁ ସ୍ୱତନ୍ତ୍ର ପୃଷ୍ଠା ସବୁ ବାହାରିବା ଆରମ୍ଭ ହେଲାଣି । ସମ୍ପାଦକୀୟ ପୃଷ୍ଠାରେ ବାହାରୁଥିବା ବୌଦ୍ଧିକ ତଥା ସାମୟିକ ପ୍ରସଙ୍ଗଗୁଡ଼ିକର ମଧ୍ୟ ବିପୁଳ ପାଠକୀୟ ଆଦୃତି ରହୁଛି । ଜନମତ ସୃଷ୍ଟି କରିବାରେ ଏଗୁଡ଼ିକ ଖୁବ୍ ଫଳପ୍ରଦ । ଜନମତ ବ୍ୟତୀତ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଏଇ ସମ୍ବାଦପତ୍ରଗୁଡ଼ିକର ଭୂମିକା

ଗୁରୁତ୍ୱପୂର୍ଣ୍ଣ । ଆମର ବର୍ତ୍ତମାନର ପିଢି ଯେଉଁଭଳି ଇଂରାଜୀ ଶିକ୍ଷା ପ୍ରତି ଆକୃଷ୍ଟ ଓ ବାପା ମା' ମାନେ ଯେଉଁଭଳି ଇଂରାଜୀ ମିଡିଅମ୍ ସ୍କୁଲ୍‌ରେ ତାଙ୍କ ପିଲାମାନଙ୍କୁ ପଢାଇବାକୁ ବ୍ୟଗ୍ର, ତା'ର କୁଫଳ ଆମେ ପାଇବା ଆରମ୍ଭ କଲେଣି । ଅନେକ ପିଲା ଶୁଦ୍ଧ ଓଡ଼ିଆ ଲେଖିବା ଦୂରର କଥା, କହି ମଧ୍ୟ ପାରୁନାହାନ୍ତି । ମୋର ମନେ ପଡୁଛି ଥରେ ଜଣେ ଘରୋଇ ଶିକ୍ଷକ ତାଙ୍କର ଇଂରାଜୀ ମିଡିୟମ ଛାତ୍ରକୁ ଓଡ଼ିଆରେ ଲେଖିବା ପାଇଁ ପାରାଗ୍ରାଫ୍‌ଟିଏ ଡାକିଲେ । ଶ୍ରୁତଲିଖନଟି ଥିଲା– 'ଲଙ୍କାର ରାଜା ରାବଣ ପାଖକୁ ରାମଚନ୍ଦ୍ର ହନୁମାନଙ୍କୁ ପଠାଇଲେ ସୀତାକୁ ଫେରାଇ ଆଣିବା ପାଇଁ । ହନୁମାନ ରାମଙ୍କର ଦୂତ ଥିଲେ । ମାତ୍ର ପିଲାଟି ଲେଖିଲା ଲେଙ୍କାର ରେଜା ରୋବଣ ପାଖକୁ ରାମଚନ୍ଦ୍ର ହନୁମାଙ୍କୁ ପଠାଇଲେ ସିତାଙ୍କୁ ଫେରାଇ ଆଣିବା ପାଇଁ । ହନୁମାଙ୍କ ରୋମର ଭୂତ ଥିଲେ ।' ଏଥିରୁ ସ୍ଥିତି କେତେ ଦୁଃସହ ହେଲାଣି ଅନୁମେୟ । ଏବେ ଓଡ଼ିଆ ଖବରକାଗଜ ଘରକୁ ଆସୁଥିବାରୁ ବାଧ୍ୟବାଧକତାରେ କି ଅନିଚ୍ଛାସତ୍ତ୍ୱେ ହଉ ପଛେ କିଛି କିଛି ଓଡ଼ିଆ ଆମ ଲୋକେ ପଢୁଛନ୍ତି । ନଚେତ୍ ଓଡ଼ିଆ ଭାଷା, ଓଡ଼ିଆ ଲିପି, ଓଡ଼ିଆ ଚାଲିଚଳଣି, ଖାଦ୍ୟପେୟ ପରମ୍ପରା, ପର୍ବପର୍ବାଣି, ଇତିହାସ ସବୁ ଭୁଲି ସାରନ୍ତେଣି । ସାକ୍ଷରତାର ଅଭିବୃଦ୍ଧି ଓ ଜନସାଧାରଣଙ୍କ ମଧ୍ୟରେ ତଥ୍ୟାଭିଜ୍ଞ ହେବାର ପ୍ରବୃତ୍ତିକୁ ସମ୍ବାଦପତ୍ର ସଠିକ୍ ଭାବେ ପୂରଣ କରିପାରିଛି । ଓଡ଼ିଆ ଭାଷା ଆନ୍ଦୋଳନକୁ ଦୃଢୀଭୂତ କରିଛି । ଏତଦ୍‌ବ୍ୟତୀତ ସୁଲଭ ମୂଲ୍ୟରେ ଏହା ତଥ୍ୟ ପହଞ୍ଚାଇ ପାରୁଥିବାରୁ ଜନାଦୃତ ହୋଇଛି । ଅପରପକ୍ଷରେ କମ୍ପ୍ୟୁଟର ବା ଇଣ୍ଟରନେଟ୍ ତଥ୍ୟର ଅସରନ୍ତି ଭଣ୍ଡାର ହୋଇଥିଲେ ମଧ୍ୟ କମ୍ପ୍ୟୁଟର ସାକ୍ଷରତାର ଅଭାବରୁ ଅନେକ ଲୋକ ଖବରକାଗଜ ଉପରେ ହିଁ ନିର୍ଭରଶୀଳ ।

ଓଡ଼ିଆ ଖବରକାଗଜମାନଙ୍କର ଏ ବିପୁଳ ଅବଦାନ ପରେ ବିଭିନ୍ନ ଜାତୀୟ ଇଂରାଜୀ ଖବର କାଗଜମାନେ ମଧ୍ୟ ଓଡ଼ିଶା ବଜାରରେ ପ୍ରବେଶ କରିଛନ୍ତି । ସେମାନଙ୍କ ମଧ୍ୟରେ ଇଣ୍ଡିଆନ୍ ଏକସ୍‌ପ୍ରେସ୍, ଟେଲିଗ୍ରାଫ୍ ଆଦି ଅଗ୍ରଗଣ୍ୟ । ହିନ୍ଦୀ ପତ୍ରିକା ସନ୍ମାର୍ଗ ମଧ୍ୟ ଭୁବନେଶ୍ୱରରେ ତାର ପ୍ରକାଶନ ଆରମ୍ଭ କରିଛି ।

ଗଣମାଧ୍ୟମର ଆଉ ଏକ ଶକ୍ତିଶାଳୀ ଅଙ୍ଗ ହେଲା ବେତାର ଓ ଦୂରଦର୍ଶନ । ଓଡ଼ିଶାର ପ୍ରଥମ ବେତାର କେନ୍ଦ୍ର ପ୍ରତିଷ୍ଠା ହୁଏ କଟକରେ ୧୯୪୮ ମସିହାରେ । ପରେ ପରେ ସମ୍ବଲପୁର, ଜୟପୁର, ରାଉରକେଲା, ଢେଙ୍କାନାଳ, ପୁରୀ, ସୋର, ବାରିପଦା, ବ୍ରହ୍ମପୁର, ଭବାନୀପାଟଣା, ବଲାଙ୍ଗୀର, ଦେବଗଡ, ଯୋରନ୍ଦା, କେଉଁଝର ଆଦି ସ୍ଥାନରେ ଆକାଶବାଣୀର କେନ୍ଦ୍ର ପ୍ରତିଷ୍ଠା ହେଲା । ପରବର୍ତ୍ତୀ ସମୟରେ ଘରୋଇ ଉଦ୍ୟୋଗରେ ବିଗ୍, ରେଡିଓ ଚକ୍‌ଲେଟ୍, ରେଡ, ଜ୍ଞାନବାଣୀ, ନମସ୍କାର, ଆକାଶବାଣୀର ରେନ୍‌ବୋ ଆଦି ଏଫ୍.ଏମ୍. ରେଡିଓ ଚ୍ୟାନେଲ୍ ମଧ୍ୟ ଖୋଲିଛି । ଏତଦ୍‌ବ୍ୟତୀତ କୋଣାର୍କର ରେଡିଓ ନମସ୍କାର ଓ ରେଭେନ୍ସା କଲେଜର ରେଭେନ୍ସା ରେଡିଓ ନାମକ ନିଜସ୍ୱ କମ୍ୟୁନିଟି ରେଡିଓ ସେଣ୍ଟର ମଧ୍ୟ କାର୍ଯ୍ୟକ୍ଷମ ହୋଇଛି । ଆକାଶବାଣୀର କେନ୍ଦ୍ର ସବୁ ସରକାରଙ୍କ ଦ୍ୱାରା ପ୍ରତିଷ୍ଠିତ ଓ ଏହାର ପରିଚାଳନା ସରକାରୀ । ଏଥିରେ ସମ୍ବାଦ ପରିବେଷଣ ଠାରୁ ଆରମ୍ଭ କରି ବିଭିନ୍ନ ଆଲୋଚନା, ସୂଚନା, ପାଲା, ଦାସକାଠିଆ, ନାଟକ, ସାହିତ୍ୟ କାର୍ଯ୍ୟକ୍ରମ, କୃଷି ଯୁବ ମହିଳା ଓ ଶିଶୁମାନଙ୍କ ପାଇଁ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ସବୁ ଅନୁଷ୍ଠିତ ହୋଇଥାଏ । ଏଥିରେ ଚିତ୍ତବିନୋଦନ ସହିତ ଜନସଚେତନତା ଉପରେ ଗୁରୁତ୍ୱାରୋପ କରାଯାଏ । ମାତ୍ର ଏଫ୍.ଏମ୍. ରେଡିଓ ଗୁଡ଼ିକ ବିଶୁଦ୍ଧ ମନୋରଂଜନ କାର୍ଯ୍ୟକ୍ରମ ପରିବେଷଣ କରି ବିଶେଷ କରି ଯୁବବର୍ଗଙ୍କ ମଧ୍ୟରେ ଲୋକପ୍ରିୟ ହୋଇପାରିଛନ୍ତି । ଏଗୁଡ଼ିକରେ ଓଡ଼ିଶାର ସ୍ଥାନୀୟ ପର୍ବପର୍ବାଣି, ଖାଦ୍ୟ, ସାଂସ୍କୃତିକ ଉତ୍ସବ, ଲୋକକଥା, ଲୋକଗୀତ, ସାହିତ୍ୟ ନାଟକ, ଗୀତିନାଟ୍ୟ, ପର୍ଯ୍ୟଟନସ୍ଥଳୀ, ସ୍ଥାନୀୟ କଳାକାରମାନେ ଉପସ୍ଥାପିତ ହୋଇ ଜନସାଧାରଣଙ୍କ ପାଖରେ ଆଦୃତ ହୋଇଛନ୍ତି । ଏଫ.ଏମ୍ ରେଡିଓ ସବୁ ବର୍ତ୍ତମାନ ମୋବାଇଲ୍ ଫୋନ୍‌ରେ ଉପଲବ୍ଧ ହେଉଥିବାରୁ ତାର ସେବା ମଧ୍ୟ ସଦାସର୍ବଦା ଉପଲବ୍ଧ ହୋଇପାରୁଛି । ତେଣୁ ମନୋରଂଜନର ଏକ ମାଗଣା ଓ ସହଜଲଭ୍ୟ ମାଧ୍ୟମ ରୂପେ ଯୁବବର୍ଗ ତାକୁ ଗ୍ରହଣ କରିଛନ୍ତି । ଏହା ଓଡ଼ିଶାର ସାଂସ୍କୃତିକ ପରମ୍ପରାକୁ ପିଢି ପରେ ପିଢି ସମସ୍ତଙ୍କ ପାଖରେ ପହଞ୍ଚାଇ ପାରୁଛି ।

ରେଡିଓ ପରେ ଆହୁରି ଏକ ଶକ୍ତିଶାଳୀ ଦୃଶ୍ୟ ତଥା ଶ୍ରାବ୍ୟ ମାଧ୍ୟମ ହେଲା ଟି.ଭି. । ଦୂରଦର୍ଶନର ପ୍ରଥମ କେନ୍ଦ୍ର ୧୯୭୩ ମସିହାରେ ପ୍ରତିଷ୍ଠା ହୁଏ କଟକରେ । ବର୍ତ୍ତମାନ କେବଳ ଭୁବନେଶ୍ୱର, ସମ୍ବଲପୁର ଓ ଭବାନୀପାଟଣାଠାରେ ତିନୋଟି ଦୂରଦର୍ଶନ କେନ୍ଦ୍ର କାର୍ଯ୍ୟରତ । ଏହା ଅଧୀନରେ ବିଭିନ୍ନ ଜିଲ୍ଲାରେ ୯୫ଟି ଉଚ୍ଚ ତଥା ସ୍ୱଳ୍ପ ଶକ୍ତି ସଂପନ୍ନ ଟ୍ରାନ୍ସମିଟର କାର୍ଯ୍ୟ କରୁଛି । ଓଡ଼ିଶାର ମୋଟ୍ ଭୌଗଳିକ ଏରିଆର ୮୮.୭% ଓ ଲୋକସଂଖ୍ୟାର ୯୩.୩% ଦୂରଦର୍ଶନ ସେବା ଉପଭୋଗ କରନ୍ତି । ଏତଦ୍‌ବ୍ୟତୀତ ଘରୋଇ ଉଦ୍ୟୋଗରେ ୧୬ଟି ଓଡ଼ିଆ ମନୋରଂଜନ ଟିଭି ଚ୍ୟାନେଲ୍ ବର୍ତ୍ତମାନ କାର୍ଯ୍ୟରତ । ସେଗୁଡିକ ହେଲେ ଏମ୍‌ପିଏକ୍ସ, ସାର୍ଥକ, ତରଙ୍ଗ, ଇଟିଭି, ଏମ୍–ଏକ୍ସପ୍ରେସ୍,

ନାଗେଶ୍ୱର, ଏକାମ୍ର, ନୀଳଚକ୍ର, ମୁନ୍ ସତ୍ୟ ଯୋଶ, କାମୟାବ, ଉତ୍କଳ, ଡ୍ରିମ୍‌ସ, ଏ ୱାନ ଏବଂ ଓଡ଼ିଶା ଟାଇମ୍ । ଆଧାତ୍ମିକ ଚ୍ୟାନେଲ ମଧ୍ୟରେ ପ୍ରାର୍ଥନା ଟିଭି ଓ ସମ୍ବାଦ ଭିତ୍ତିକ ଚ୍ୟାନେଲ୍‌ଗୁଡ଼ିକ ହେଲା ଓଟିଭି, ନକ୍ଷତ୍ର ନ୍ୟୁଜ, କନକ ଟିଭି, ଏମ୍.ବି.ସି., ଏସ୍.ଟି.ଭି । ଏସବୁକୁ ମିଶାଇଲେ ମୋଟ୍ ୨୮ଟି ଚ୍ୟାନେଲ୍ । ଏତଦ୍‌ବ୍ୟତୀତ ଆହୁରି କିଛି ଟିଭି ଚ୍ୟାନେଲ୍ ବିଭିନ୍ନ ସ୍ଥାନୀୟ କ୍ଷେତ୍ରରେ ମଧ୍ୟ କାର୍ଯ୍ୟରତ । ଦୂରଦର୍ଶନ ପ୍ରଥମେ ଏ କ୍ଷେତ୍ରରେ ପଦାର୍ପଣ କରିଥିଲେ ହେଁ ଇଟିଭି ଓ ପରେ ପରେ ଓଟିଭି ଏ କ୍ଷେତ୍ରରେ ପଦାର୍ପଣ କରି ବୈପ୍ଳବିକ ପରିବର୍ତ୍ତନ ଆଣିଥିଲେ । ନୂତନ ଜ୍ଞାନ କୌଶଳର ପ୍ରୟୋଗ ତଥା ବହୁ ସଂଖ୍ୟାରେ ସିରିଆଲ୍ ପ୍ରସ୍ତୁତ କରି ସେମାନେ ସ୍ଥାନୀୟ କଳାକାରମାନଙ୍କ ପାଇଁ ପ୍ରଭୂତ ସୁଯୋଗ ସୃଷ୍ଟି କରିଥିଲେ । ଇଟିଭିର ଆଗମନ ପରେ ବିଶେଷକରି ଓଡ଼ିଶାର ମନୋରଂଜନ ଶିଳ୍ପ ନୂଆ ମୋଡ ନେଲା । ଅନେକ ନୂତନ ପ୍ରଯୋଜକ ନିର୍ଦ୍ଦେଶକ, କାହାଣୀକାର, ଅଭିନେତା, ସଙ୍ଗୀତକାର, ଗୀତିକାର, ଗାୟକ ସୃଷ୍ଟି ହେଲେ । ଏହା ଓଡ଼ିଆ ଚଳଚ୍ଚିତ୍ର ଶିଳ୍ପକୁ ମଧ୍ୟ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ପ୍ରଭାବିତ କଲା । ସୃଷ୍ଟି ହେଉଥିବା ଅନେକ ନୂତନ କଳାକାର ସିରିଆଲ୍ ଓ ରିଅଲିଟି ସେଗୁଡ଼ିକରେ ସଫଳତା ପାଇବା ପରେ ଚଳଚ୍ଚିତ୍ର କ୍ଷେତ୍ରକୁ ମୁହାଁଇଲେ । ଟିଭି ପ୍ରଦର୍ଶନରେ ସଫଳତା ଅର୍ଜନ କରିଥିବା ଓଡ଼ିଶାର ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍, ସୋହିନୀ ମିଶ୍ର, ଆଯ୍ୟାନ ଆଦି କଳାକାରମାନେ ପରବର୍ତ୍ତୀ କାଳରେ ଜାତୀୟ ସ୍ତରରେ ସ୍ୱୀକୃତ ହୋଇଛନ୍ତି । ଘରୋଇ କ୍ଷେତ୍ରରେ ଏ ସୁଯୋଗ ସୃଷ୍ଟି ହୋଇ ନଥିଲେ ସେମାନେ ଏତେବାଟ ଯିବା ସମ୍ଭବ ହୋଇନଥାନ୍ତା । ତେଣୁ ଓଡ଼ିଶାର ଚଳଚ୍ଚିତ୍ର କ୍ଷେତ୍ରରେ ଅନେକ ପ୍ରତିଭାବାନ୍ କଳାକାର ସାମ୍ନାକୁ ଆସିଲେ । ଏହି ଟିଭି ଚ୍ୟାନେଲ୍‌ଗୁଡ଼ିକ ପ୍ରତିଯୋଗିତା ମୂଳକଭାବେ ବିଭିନ୍ନ ସିରିଆଲ୍, ଯାତ୍ରା, ନୃତ୍ୟଗୀତର ରିଅଲିଟି ସୋ, ଯୋଗ, ହାସ୍ୟ ଧାରାବାହିକ ପ୍ରବଚନ ଆଦି କାର୍ଯ୍ୟକ୍ରମ ପ୍ରଦର୍ଶନ କରୁଛନ୍ତି । ଆମ ସଂସ୍କୃତିର ଅନେକ ସ୍ୱଳ୍ପାଲୋଚିତ ପ୍ରସଙ୍ଗ ଯଥା ଭାଗବତ ଚର୍ଚ୍ଚା, ମାଳିକା ଚର୍ଚ୍ଚା ଆଦି ସତ୍‌ସଙ୍ଗ କାର୍ଯ୍ୟକ୍ରମ ମଧ୍ୟ ପ୍ରସାରିତ ହେଉଛି । ରଥଯାତ୍ରା ସମୟରେ ପ୍ରାୟ ସବୁ ଓଡ଼ିଆ ଟିଭି ତାର ଧାରା ବିବରଣୀ ପ୍ରଦାନ କରନ୍ତି । ସମଗ୍ର ବିଶ୍ୱରେ ବସବାସ କରୁଥିବା ଅନେକ ଓଡ଼ିଆ ଏ ସବୁ କାର୍ଯ୍ୟକ୍ରମ ଦେଖିବାର ସୁଯୋଗ ପାଆନ୍ତି ଏବଂ ତାଙ୍କ ସଂସ୍ପର୍ଶରେ ଆସୁଥିବା ଅନେକ ଅଣଓଡ଼ିଆ ତଥା ବିଦେଶୀମାନେ ମଧ୍ୟ ଆମ ଓଡ଼ିଶାର ଏ ସାଂସ୍କୃତିକ ବୈଭବ ବାହାରେ ଦେଖିପାରୁଥିବେ । ଏଥିରୁ ଅନେକ ଚ୍ୟାନେଲ୍ ଏବେ ଡିଜିଟାଲ୍ ହୋଇଥିବାରୁ ତାହା ସମଗ୍ର ବିଶ୍ୱରେ ବିଭିନ୍ନ ସ୍ଥାନରେ ଲୋକେ ଦେଖି ପାରୁଛନ୍ତି । ଅନେକ ଚ୍ୟାନେଲ୍ ଏବେ ଅନ୍‌ଲାଇନ୍‌ରେ ମଧ୍ୟ ଦେଖିହେଉଛି । ଏସବୁ ଚ୍ୟାନେଲ୍‌ରେ ପ୍ରଦର୍ଶିତ ତଥା ଆଦୃତ ହୋଇଥିବା ବିଭିନ୍ନ ସୋ'ର ନାମ ଦେବା ଯଦିଓ ଏଠାରେ ସମ୍ଭବ ନୁହେଁ ତଥାପି ଏଗୁଡ଼ିକ କେବଳ ଆମର ମନୋରଂଜନ ନୁହେଁ ବରଂ ସାମାଜିକ ସଚେତନତା ବୃଦ୍ଧି, ଜନମତ ସୃଷ୍ଟି, ବୌଦ୍ଧିକ ବିକାଶ, ଓଡ଼ିଶାର ବିପୁଳ ସାଂସ୍କୃତିକ ପରମ୍ପରା ଓ ଐତିହ୍ୟର ବ୍ୟାପକ ପ୍ରଚାର, ଓଡ଼ିଶାରେ ଥିବା ବିଭିନ୍ନ ସମ୍ଭାବନାର ଉନ୍ମୋଚନ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିଭାଉଛନ୍ତି ।

ସମ୍ବାଦପତ୍ରମାନେ ଯେଉଁଭଳି ଭାବେ ଓଡ଼ିଶାର ପ୍ରକାଶନ ଶିଳ୍ପକୁ ସମୃଦ୍ଧ କରି ଜାତୀୟ ସ୍ତରରେ ଓଡ଼ିଶାକୁ ଏକ ସମ୍ମାନନୀୟ ସ୍ଥିତିରେ ପହଞ୍ଚାଇଛନ୍ତି, ସେଇଭଳି ରେଡିଓ ଓ ଟିଭି ଭଳି ଦୃଶ୍ୟଶ୍ରାବ୍ୟ ମାଧ୍ୟମଗୁଡ଼ିକ ମଧ୍ୟ ଜାତୀୟ ସ୍ତରରେ ଓଡ଼ିଶାର ଭାବମୂର୍ତ୍ତି ବୃଦ୍ଧିରେ ସହାୟକ ହୋଇଛନ୍ତି । ଓଡ଼ିଶା ଜାତୀୟ ସ୍ତରରେ ଏକ ଅନାଲୋଚିତ ଅନ୍ଧକାର ରାଜ୍ୟ ହୋଇ ରହିନାହିଁ । ଏହାର ସାଂସ୍କୃତିକ ବୈଭବ, କଳା କ୍ଷେତ୍ରରେ ଉତ୍କର୍ଷ, ପର୍ଯ୍ୟଟନ କ୍ଷେତ୍ରରେ ସମ୍ଭାବନା ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠା, ଭାଷା କ୍ଷେତ୍ରରେ ଶାସ୍ତ୍ରୀୟତା, ପୁଞ୍ଜି ବିନିଯୋଗ କ୍ଷେତ୍ରରେ ବ୍ୟାପକ ସମ୍ଭାବନା ବିଷୟରେ ସମଗ୍ର ବିଶ୍ୱ ଅବଗତ ହୋଇପାରିଛି । ଏହା କେବଳ ଆମ ଓଡ଼ିଆମାନଙ୍କର ବିଶ୍ୱଦର୍ଶନରେ ସହାୟକ ହୋଇନାହିଁ, ବରଂ ସମଗ୍ର ବିଶ୍ୱର ଓଡ଼ିଶା ଦର୍ଶନରେ ମଧ୍ୟ ଅନୁରୂପ ଭାବେ ସହାୟକ ହୋଇଛି । ଏସବୁ ଅଗ୍ରଗତି ଆମକୁ ବିଶ୍ୱସ୍ତରରେ ପହଞ୍ଚାଇଛି ଓ ସମଗ୍ର ବିଶ୍ୱର ଦୃଷ୍ଟି ଆମ ଆଡକୁ ଆକର୍ଷିତ କରିବାରେ ସହାୟକ ହୋଇଛି । ଓଡ଼ିଶାରେ ଗଣମାଧ୍ୟମର ବିକାଶର ଇତିହାସ ଓଡ଼ିଶାର ସାଂସ୍କୃତିକ ବିକାଶର ଇତିହାସ ସହିତ ଓତଃପ୍ରୋତ ଭାବେ ଜଡ଼ିତ । ପରସ୍ପର ପରସ୍ପରର ଅନୁପୂରକ ଓ ପରିପୂରକ ହୋଇ ବିକଶିତ ଓ ଋଦ୍ଧିମନ୍ତ ହୋଇଛନ୍ତି ଏବଂ ସାମଗ୍ରିକ ଭାବେ ଓଡ଼ିଶାର ଭାବମୂର୍ତ୍ତି ଉଜ୍ଜ୍ୱଳ କରିଛନ୍ତି ।

୨୮୮/୨୬୮୩, ବଜରଙ୍ଗ ନଗର
ଝାରପଡା, ଭୁବନେଶ୍ୱର



# ପଦ୍ମବିଭୂଷଣ ମୀରାବେନ୍

**ନିର୍ମଳା କୁମାରୀ ମହାପାତ୍ର**

'ବୈଷ୍ଣବ ଜନ ତୋ ତେନେ କହୀୟେ
ଜୋ ପୀଡ ପରାଇ ଜାଣେ ରେ
ପର ଦୁଃଖେ ଉପକାର କରେ ତୋୟେ
ମନ ଅଭିମାନ ନଆଣେ ରେ...

ପ୍ରୋକ୍ତ ପଦଟିରେ 'ବୈଷ୍ଣବଜନ'ର ଲକ୍ଷଣ ସ୍ପଷ୍ଟ କରାଯାଇଅଛି । ମନେହୁଏ ସତେ ଯେପରି ପ୍ରତିଟି ଲକ୍ଷଣ ମୀରାବେନ୍‌ଙ୍କର ଚରିତ୍ରରେ ପ୍ରତିଫଳିତ ହୋଇଛି । ବ୍ରିଟିଶ୍ ମହିଳା ହେଲେ ହେଁ ସମଗ୍ର ଜୀବନର ସାରବତ୍ତା ଯେପରି ଭାରତ ପାଇଁ ଥିଲା ଉତ୍ସର୍ଗୀକୃତ । ବସ୍ତୁତଃ ସେ ଥିଲେ ସାଧ୍ୱୀ, ବୈଷ୍ଣବୀ, ପରମ ବୈଷ୍ଣବୀ ।



ରକ୍ତ-ଚର୍ମରେ ବିଦେଶୀ ହେଲେ ହେଁ ଆଲାନ୍ ଅକ୍ଟୋଭିଆନ୍ ହ୍ୟୁମ୍ ଥିଲେ ଭାରତୀୟମାନଙ୍କର ପରମ ହିତୈଷୀ । ଆର୍ୟଲାଣ୍ଡର ଜଣେ ଧର୍ମଯାଜକଙ୍କର ଝିଅ ମାର୍ଗାରେଟ୍ ଏଲିଜାବେଥ୍ ନୋବେଲ୍ ଭାରତରେ ଭଗ୍ନୀ ନିବେଦିତା ନାମରେ ପରିଚିତା ହୋଇ ସ୍ତ୍ରୀଶିକ୍ଷା, ସେବା, ସାମ୍ବାଦିକତା ଓ ଭାଷାର ଅଶେଷ ଉନ୍ନତି କରିଥିଲେ । ଗୋରାଚର୍ମର ପାଦ୍ରୀ ଚାର୍ଲସ୍ ଫ୍ରେଡ୍‌ରିକ୍ ଆଣ୍ଡ୍ରୁଜ୍ ଆମ ଦେଶର ସେବା କରି ଦୀନବନ୍ଧୁ ଉପାଧିରେ ଭୂଷିତ ହୋଇଥିଲେ । ଡକ୍ଟର ଆନିବେସାନ୍ତ ବିଦେଶିନୀ ହେଲେ ହେଁ ଥିଲେ ମହାଭାରତୀୟା । ଆମ ଦେଶର ଶିକ୍ଷା- ସଂସ୍କୃତିର ପ୍ରସାର-ପ୍ରଚାରରେ ତାଙ୍କର ସମସ୍ତ ସାମର୍ଥ୍ୟ ବିନିଯୋଗ କରି ସେ ଚିର ସ୍ମରଣୀୟା । ଫରାସୀ ମହିଳା ଶ୍ରୀମା ନାମରେ ପଣ୍ଡିଚେରୀ (ପୁଡୁଚେରୀ)ରେ ଶିକ୍ଷା ସଂସ୍କୃତିର ଉତ୍ତୁଙ୍ଗ ଶୃଙ୍ଗ ନିର୍ମାଣ କରିଛନ୍ତି । ଯୁଗୋସ୍ଲୋଭିଆର ମହିଳା ଗୋଙ୍ଗା ଆଗ୍ନେସ ଭାରତରେ ମଦର ତେରେସା ନାମରେ ସେବା କାର୍ଯ୍ୟ ଆରମ୍ଭ କରିଥିଲେ । ପରବର୍ତ୍ତୀ କାଳରେ ପୃଥିବୀରେ ସେବା ପାଇଁ ସୁଖ୍ୟାତି ଅର୍ଜନ କରି ଭାରତକୁ ଆଣି ଦେଇଛନ୍ତି ଶାନ୍ତି ପାଇଁ ନୋବେଲ୍ ପୁରସ୍କାର । ଉପରେ ସଂକ୍ଷେପରେ ଚର୍ଚ୍ଚିତ ବ୍ୟକ୍ତିତ୍ୱମାନଙ୍କ ପରି ଆଉ ଜଣେ ବିଦେଶିନୀ ଆମ ପାଇଁ ଅତି ନିଜର, ସେ ହେଲେ ପଦ୍ମବିଭୂଷଣ ମୀରାବେନ୍ ।

ବ୍ରିଟିଶ ନୌସେନାର ଆଡମିରାଲ୍ ସର୍ ଏଡମଣ୍ଡ ସ୍ଲେଡ୍‌ଙ୍କର ଦ୍ୱିତୀୟ କନ୍ୟା ମେଣ୍ଡୋଲୀ ସ୍ଲେଡ୍ ଭାରତରେ ବାପୁଜୀଙ୍କର ପଟ୍ଟଶିଷ୍ୟା ତଥା ମାନସପୁତ୍ରୀ ଭାବେ କାର୍ଯ୍ୟ କରିଥିଲେ । ତାଙ୍କର ନାମ ବାପୁ ଦେଇଥିଲେ ମୀରା । ଅତଏବ ସେ ଅନ୍ୟମାନଙ୍କର ମୀରାବହେନ୍, ସଂକ୍ଷେପରେ ମୀରାବେନ୍ ନାମରେ ସର୍ବପରିଚିତ ହୋଇଥିଲେ ସେ । ବହୁମୁଖୀ ପ୍ରତିଭାର ଅଧିକାରିଣୀ ମେଣ୍ଡୋଲୀଙ୍କର ଜନ୍ମ ସନ ୧୮୯୨, ନଭେମ୍ବର ୨୨ ତାରିଖରେ । ତାଙ୍କଠାରୁ ତାଙ୍କ ବଡଭଉଣୀ ରେବିନା ଥିଲେ ତିନିବର୍ଷ ବଡ । ମାତା-ପିତା ତଥା ବଡଭଉଣୀଙ୍କ ଗହଣରେ ଅନୁଶାସନ

ଓ ଶୃଙ୍ଖଳାରେ ଅନୁବନ୍ଧିତ ପରିବାରରେ ବଢ଼ି ମେଣ୍ଡୋଲୀ ଅନ୍ୟମାନଙ୍କ ପରି ହୋଇଥିଲେ କର୍ମଦକ୍ଷା । ରଚନାତ୍ମକ କାର୍ଯ୍ୟରେ ଆଗ୍ରହୀ ମେଣ୍ଡୋଲୀ ଲେଖାପଢ଼ା ପ୍ରତି ବିଶେଷ ଧ୍ୟାନ ଦେଉଥିଲେ । ପିଆନୋ ବଜାଇବାରେ ସେ ଅଭିରୁଚି ରଖୁଥିଲେ । ଜର୍ମାନ୍‌ର ସଂଗୀତ ସମ୍ରାଟ ବିଥୋଭେନ୍‌ଙ୍କ ସଂଗୀତ ପ୍ରତି ଆଗ୍ରହ ରଖି ସେ ଜର୍ମାନ ଭାଷା ଶିଖିଲେ । ଫରାସୀ ଲେଖକ ରୋମାରୋଲାଁଙ୍କୁ ସାକ୍ଷାତ କରିବା ପାଇଁ ସେ ଫ୍ରାନ୍ସ ଗଲେ । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଗାନ୍ଧିଜୀ ଥିଲେ ଇଂଲଣ୍ଡ ଗଣମାଧ୍ୟମରେ ଜଣେ ବହୁଚର୍ଚ୍ଚିତ ବ୍ୟକ୍ତିତ୍ୱ । ରୋମାରୋଲାଁଙ୍କ ରଚନାରୁ ମେଣ୍ଡୋଲୀ ବହୁତ କଥା ଗାନ୍ଧିଜୀଙ୍କ ବିଷୟରେ ଜାଣିଲେ । ଆହୁରି ଅଧିକ ତଥ୍ୟ ଆୟତ୍ତ କରିବା ପାଇଁ ସେ ହିନ୍ଦୀ ଶିଖିଲେ । ତାଙ୍କର ଜୀବନଚର୍ଯ୍ୟା ଓ ରାଜନୀତିକ ସାରଣୀକୁ ଅନୁଧ୍ୟାନ କରିବା ପାଇଁ ସେ ଗାନ୍ଧିଜୀଙ୍କ ସମ୍ପାଦିତ The young India ନିୟମିତ ପଢ଼ିଲେ । ତାଙ୍କୁ ସାକ୍ଷାତ କରିବା ପାଇଁ ଇଚ୍ଛା ପ୍ରକାଶ କଲେ ।

ମେଣ୍ଡୋଲୀଙ୍କୁ ଗାନ୍ଧୀଙ୍କର ଆତ୍ମନିର୍ଭରଶୀଳ ହେବା ଚିନ୍ତାଧାରାଟି ବେଶ୍ ସ୍ପର୍ଶକଲା । ସେତେବେଳେ ଭାରତରେ ବିଦେଶୀ ଦ୍ରବ୍ୟବର୍ଜନ, ସ୍ୱଦେଶୀ ଜିନିଷ ପ୍ରତି ଆଦର ଥିଲା ଏକ ଉଚ୍ଚାଦର୍ଶର କଥା । ଲୋକେ ଗାନ୍ଧୀଙ୍କୁ ମାନି 'କୁଟିଖାଅ, କାଟିପିନ୍ଧ' ନୀତିକୁ ମାନି ଚଳୁଥିଲେ । ଏଇ ସମ୍ବାଦର ପ୍ରଚାର-ପ୍ରସାର ହେଉଥିଲା ତତ୍କାଳୀନ ଗଣମାଧ୍ୟମରେ । ମେଣ୍ଡୋଲୀ ତଦ୍ୱାରା ପ୍ରଭାବିତ ହୋଇ କାଟି ପିନ୍ଧିବା କଥାକୁ ଗ୍ରହଣ କରି ସୂତା କାଟିବା ପାଇଁ ଅରଟ ଖୋଜିଲେ । ବିଲାତରେ କାଠ ଚରଖା ମିଳିବା କଷ୍ଟ । ଅତଏବ ସେ ତକିଲୀରେ ସୂତା କାଟିଲେ । ବ୍ରିଟିଶ୍ ଆଡମିରାଲଙ୍କ ଝିଅର ଜୀବନଶୈଳୀରେ ସରଳତା, ଧୈର୍ଯ୍ୟ, ସତ୍ୟ ପ୍ରତି ନିଷ୍ଠା, ଆତ୍ମନିର୍ଭରଶୀଳତା ଥିଲା ଏକ ଆଶ୍ଚର୍ଯ୍ୟ ।

ମେଣ୍ଡୋଲୀ ଖଦି ପିନ୍ଧିଲେ । ଆଶ୍ରମବାସୀ ପରି ଚାଲିଲେ । ଋଗ୍‌ବେଦ ଓ ଗୀତାପାଠ କଲେ । ଇତିମଧ୍ୟରେ ନିଜର ହୀରାମାଳି ବିକି ୨୫ ପାଉଣ୍ଡ ଅର୍ଥ ଗାନ୍ଧୀଙ୍କର ପାଣ୍ଠିକୁ ପଠାଇ ଦେଲେ । ରୋମାରୋଲାଁଙ୍କ ମଧ୍ୟସ୍ଥତାରେ ସେ ଗାନ୍ଧିଜୀଙ୍କ ଆଶ୍ରମରେ ଜୀବନଯାପନ ପାଇଁ ଅନୁମୋଦନ ଓ ଅନୁମତି ଚାହିଁଲେ । ଉତ୍ତରରେ ଗାନ୍ଧିଜୀ ସୂଚନା ଦେଲେ– 'ଆଶ୍ରମର ଅନୁଶାସନରେ ଚଳି ପାରିବ ତ ଆସ' । ପ୍ରକାଶ ଥାଉ କି ବିଭିନ୍ନ ସମୟରେ ଗାନ୍ଧି– ଆଶ୍ରମରେ ଭିନ୍ନ ଭିନ୍ନ ଦେଶ-ଜାତି-ଧର୍ମ-ବର୍ଗର ଲୋକେ ରହୁଥିଲେ, ଯଥା:- ଚୀନ୍‌ଦେଶୀୟ, ଜାପାନୀ, ବର୍ମୀ, ଇହୁଦୀ, ଶ୍ରୀଲଙ୍କାବାସୀ (ସିଂହଳୀ), ବୌଦ୍ଧ, ମୁସଲମାନ, ପାର୍ଶୀ, ଆମେରିକୀୟ, ଇଉରୋପୀୟ ଆଦି ।

ମେଣ୍ଡୋଲୀ ସ୍ଲେଡ୍ ସ୍ୱଦେଶ ଛାଡ଼ି ଜଳଜାହାଜ ଯୋଗେ ଭାରତ ଆସିଲେ । ବମ୍ବେ (ମୁମ୍ବାଇ)ରେ ପହଞ୍ଚିଲେ ୧୯୨୫, ନଭେମ୍ବର ୭ ତାରିଖରେ । ଆଣ୍ଠୁମାଡି ଗାନ୍ଧିଜୀଙ୍କୁ ପ୍ରଣାମ କଲେ । ଗାନ୍ଧିଜୀଙ୍କୁ ମାର୍ଗଦର୍ଶକ ତଥା ପିତାଭାବେ ଗ୍ରହଣ କରି ଆଶ୍ରମବାସିନୀ ହେଲେ । ଏବେ ତାଙ୍କର ନୂଆ ନାମ ହେଲା ମୀରାବହେନ ବା ସିଷ୍ଟର ମୀରା । ସଂକ୍ଷେପରେ ସମସ୍ତେ ଡାକିଲେ ମୀରାବେନ୍ । ଏହା ମୀରା ବେହେନ୍‌ର ରୂପାନ୍ତର ମାତ୍ର ।

ସାବରମତୀ ନଦୀତଟସ୍ଥ ଆଶ୍ରମ ସାବରମତୀ । ଭୋର ୪ଟାରୁ ରାତି ୧୦ଟା ଯାଏ ଚାଲେ ଆଶ୍ରମର ଦୈନନ୍ଦିନ କାର୍ଯ୍ୟ । ଆଶ୍ରମବାସିନୀ ମୀରାବେନ୍ ନିଜକାର୍ଯ୍ୟ ନିଜେ କଲେ । ତା' ବ୍ୟତୀତ ବୃକ୍ଷଲତାର ଯତ୍ନ ନେଲେ । ଛେଳିମାନଙ୍କୁ ଖୁଆଇ ପିଆଇ ଖୁସିରେ ରଖାଇଲେ । ମାଆ ଛେଳିଠାରୁ କ୍ଷୀର ସଂଗ୍ରହ କଲେ ଗାନ୍ଧିଜୀଙ୍କ ପାଇଁ । କାରଣ ଗାନ୍ଧିଜୀ ଗାଈ କ୍ଷୀର ପିଇବା ଛାଡ଼ି ଛେଳି କ୍ଷୀର ପିଉଥିଲେ । ଓଡ଼ିଶାରେ ଗାନ୍ଧିଜୀଙ୍କର ପଦଯାତ୍ରା ବେଳେ ସେ ମଧ୍ୟ ସହଯାତ୍ରିଣୀ ଥିଲେ ।

ସନ ୧୯୩୬ରେ ମୀରାବେନ୍ ପ୍ରତିଷ୍ଠା କରିଥିବା ଆଶ୍ରମ ସେଓଗାଁକୁ ଗାନ୍ଧିଜୀ ଉଠିଗଲେ । ସେହି ଆଶ୍ରମର ନାମ ରଖିଲେ ସେବାଗ୍ରାମ । ମୌଳିକ ଶିକ୍ଷା ଉପରେ ମନୋନିବେଶ କଲେ । ଧନ୍ଦାମୂଳକ ଶିକ୍ଷା ଜରିଆରେ ପାଠପଢ଼ା ସହ ଶିକ୍ଷାର୍ଥୀ କିଛି କିଛି କାମ କରି ରୋଜଗାର କଲେ । ଏଇକଥା ସେ'କାଳରେ ଅନେକଙ୍କୁ ଭଲ ଲାଗୁ ନଥିଲା । କିନ୍ତୁ ସେହି ପରୀକ୍ଷା-ନିରୀକ୍ଷାର ଶେଷ ରୂପ ହୋଇଥିଲା ଯୁଗାନ୍ତକାରୀ ଶିକ୍ଷାନୀତି ମୌଳିକ ଶିକ୍ଷା । ବର୍ତ୍ତମାନ ଯୁଗରେ ମଧ୍ୟ ଏହାର ଉପାଦେୟତା ଉପଲବ୍ଧ ହୁଏ ।

ଗାନ୍ଧିଜୀ ଗୋଲ୍ ଟେବୁଲ ବୈଠକରେ ଯୋଗ ଦେବା ପାଇଁ ଲଣ୍ଡନ ଗଲେ କଂଗ୍ରେସର ପ୍ରତିନିଧି ଭାବେ । ସାଙ୍ଗରେ ଥାଆନ୍ତି ପଣ୍ଡିତ ମଦନମୋହନ ମାଲବ୍ୟ, ଶ୍ରୀମତୀ ସରୋଜିନୀ ନାଇଡୁ, ଦେବଦାସ ଗାନ୍ଧୀ, ମହାଦେବ ଦେଶାଇ, ପ୍ୟାରେଲାଲ୍, ଶିଳ୍ପପତି ଘନଶ୍ୟାମ ବିରଳା ଓ ମୀରାବେନ୍ । ଗାନ୍ଧିଜୀଙ୍କୁ କାମରେ ସାହାଯ୍ୟ କରୁଥାନ୍ତି ମୀରାବେନ୍ । ତାଙ୍କର ଯତ୍ନ ନେଉଥାଆନ୍ତି । ଖୁବ୍ କମ୍ ସମୟ ନିଜ ପରିବାର ସହ କଟାଉଥିଲେ ।

ଆନ୍ଦୋଳନ କାରଣରୁ ଗାନ୍ଧିଜୀଙ୍କୁ ଗିରଫ କରାଗଲା । ସେ ଜେଲଖାନା ଗଲେ । ଆନ୍ଦୋଳନରେ ଯୋଗଦେବା କାରଣରୁ ମୀରାବେନ୍‌ଙ୍କୁ ମଧ୍ୟ ଜେଲ୍‌ଦଣ୍ଡ ଆଦେଶ ହୋଇଥିଲା । ଇଂରେଜ ମହିଳା ହୋଇଥିବାରୁ ପ୍ରଥମ ଶ୍ରେଣୀୟ କଇଦୀର ସୁବିଧା ଦିଆଗଲା । ମାତ୍ର, ସେ ତାହା ଅଗ୍ରାହ୍ୟ କଲେ । ସେକାଳରେ

ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନକାରୀମାନେ ଇଂରେଜ ସରକାରଙ୍କ ଦୃଷ୍ଟିରେ ଥିଲେ ଦେଶଦ୍ରୋହୀ । ସେମାନଙ୍କୁ ଜେଲ୍‌ର ସାଧାରଣ କକ୍ଷରେ ରଖାଯାଉଥିଲା । ଆଲୋଚ୍ୟ ମୀରାବେନ୍ ସେହିପରି ଏକ ସାଧାରଣ କକ୍ଷରେ ଜେଲଜୀବନ କଟାଇଥିଲେ (୧୯୩୨ରୁ ୧୯୩୩ ଖ୍ରୀ.ଅ) ।

ସନ ୧୯୪୨ର ଭାରତଛାଡ ଆନ୍ଦୋଳନ ବେଳେ ଗାନ୍ଧିଜୀଙ୍କ ସହ ମହାଦେବ ଦେଶାଇ, ସରୋଜିନୀ ନାଇଡୁ ଓ ମୀରାବେନ୍ ଆଦି ଆଗା ଖାଁ ପ୍ରାସାଦ ପୁନାରେ ନଜରବନ୍ଦୀଭାବେ ଥିଲେ (୧୯୪୨–୪୪ଯାଏ) ସେଇଠାରେ ୧୯୪୨, ଅଗଷ୍ଟ ମାସରେ ମହାଦେବ ଦେଶାଇଙ୍କର ଦେହାନ୍ତ ହେଲା । ପ୍ରାସାଦ ନିକଟସ୍ଥ ପଡିଆରେ ତାଙ୍କର ଶେଷ ସଂସ୍କାର କରାଗଲା । ବାପୁ ନିଜ ହାତରେ ପଥର ପୋତି କାଦୁଅ ଲେପି ସମାଧି କଲେ । ମୀରାବେନ୍ ସମାଧିର ସବାଉପରେ ଲେଖିଲେ ଓଁ । ତା' ତଳେ + (Cross) ଚିହ୍ନ କଲେ । ବାପୁ ପ୍ରତିଦିନ ସମାଧି ଉପରେ ଫୁଲ ଦେଉଥିଲେ । କିଛିଦିନ ପରେ ୧୯୪୪ ଫେବୃଆରୀରେ କସ୍ତୁରବାଙ୍କର ଶେଷକୃତ୍ୟ ସେଇଠି କରାଗଲା । ମୀରାବେନ୍ ଉଭୟ ଦିବ୍ୟଂଗତ ଆତ୍ମାଙ୍କର ଉପାସିକା ଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ଶେଷ ଆଡକୁ ଜାପାନ ପକ୍ଷରୁ ଓଡ଼ିଶା ଉପକୂଳରେ ବୋମା ନିକ୍ଷେପ କରାଗଲା । ଜାପାନୀମାନଙ୍କୁ ସାହାଯ୍ୟ ନକରିବା ପାଇଁ ଗାନ୍ଧିଜୀ ଆଦେଶ ଦେଲେ । ଏଥିନେଇ ସ୍ୱତନ୍ତ୍ର ପ୍ରତିନିଧିଭାବେ ମୀରାବେନ୍ ଭଦ୍ରକ ଆସିଲେ । ତାଙ୍କର ଗସ୍ତ କାଳରେ ଓଡ଼ିଶାର ସଂଗ୍ରାମୀଗଣ ତାଙ୍କୁ ସାହାଯ୍ୟ କରୁଥିଲେ । ସାହାଯ୍ୟକାରୀଙ୍କ ମଧ୍ୟରେ ଥିଲେ ରବୀନ୍ଦ୍ରମୋହନ ଦାସ (ସ୍ୱାଧୀନ ଦେଶରେ ହେଲେ ଓଡ଼ିଶାର ବିଧାୟକ) ହରେକୃଷ୍ଣ ମହତାବ, ହନିଫବାବୁ, ସଂଗ୍ରାମୀ ଜଗନ୍ନାଥ ଦାସ ଆଦି ।

ବିଧାୟକ ରବୀନ୍ଦ୍ରମୋହନଙ୍କ ଭାଷାରେ– 'ମୁଁ ତାଙ୍କ ସହିତ ଭଦ୍ରକରୁ ଆରଡି ପର୍ଯ୍ୟନ୍ତ ଯାଇଛି । ସେ ଘୋଡାରେ ଚଢି ଯାଉଥିଲେ । ଆମେସବୁ (ସ୍ୱୟଂ ରବୀନ୍ଦ୍ରମୋହନ, ହରେକୃଷ୍ଣ ମହତାବ, ସଂଗ୍ରାମୀ ଜଗନ୍ନାଥ ଦାସ, ହନିଫବାବୁ ଆଦି ନେତୃବୃନ୍ଦ) ଚାଲି ଚାଲି ତାଙ୍କ ପଛରେ ଯାଉଥିଲୁ । ରାସ୍ତାରେ ତାଳବରଡା ତାଟିରେ ତାଙ୍କ ପାଇଁ ୩/୪ଟି ପାଇଖାନା ତିଆରି ହୋଇଥିଲା ।'

ଆମର ଆଲୋଚ୍ୟ ମୀରାବେନ୍ ଆରଡିରୁ ଯାଜପୁର, ସେଇଠୁ କଟକ ଦେଇ ଫେରି ଯାଇଥିଲେ । ସନ ୧୯୩୪ର ଗାନ୍ଧୀ ପଦଯାତ୍ରା ବେଳେ ପାଖାପାଖି ଏକମାସ ସେ ଓଡ଼ିଶାରେ ବୁଲିଥିଲେ । ସେ ଥିଲେ ଭାରତୀୟମାନଙ୍କର ପରମବନ୍ଧୁ । ସିମଲା ରାଜିନାମା, କ୍ୟାବିନେଟ୍ ମିଶନର କାର୍ଯ୍ୟକାରିତା, ସମ୍ବିଧାନ ପ୍ରଣୟନର ସଭା, ଦେଶବିଭାଗର ଆଲୋଚନା ବେଳେ ମଧ୍ୟ ସେ ସାକ୍ଷୀସ୍ୱରୂପା ଥିଲେ ।

ଥରେ ଗାନ୍ଧିଜୀ ଅନଶନ ପାଇଁ ନିଷ୍ପତ୍ତି ନେଲେ । ଏ ଖବର ପାଇ ମୀରାବେନ୍ ଅତ୍ୟନ୍ତ ଦୁଃଖିତ ହେଲେ । କେତେକଙ୍କ ମତରେ ସେ ମୂର୍ଚ୍ଛିତା ହୋଇଯାଇଥିଲେ । ଗାନ୍ଧୀଙ୍କର ସ୍ୱାସ୍ଥ୍ୟର ଅବସ୍ଥା ସେତେବେଳେ ଭଲ ନଥିବାରୁ ଅନଶନ ହୁଏତ ଆଦୌ ଉପଯୋଗୀ ନୁହେଁ ବୋଲି ସେ ଆଶଙ୍କା କରୁଥିଲେ । ଏ କଥା ଜାଣି ଗାନ୍ଧିଜୀ ମୀରାବେନ୍‌ଙ୍କୁ ଯେଉଁ ଚିଠି ଲେଖିଥିଲେ ତହିଁରୁ କିୟତ୍ ଅଂଶ ନିମ୍ନରେ ପ୍ରଦତ୍ତ । ଯଥା:

''.... ଶେଷ ପର୍ଯ୍ୟନ୍ତ ତୋତେ ସାହସ ରଖିବାକୁ ହେବ । ମୋର ଝିଅ ହେବା ଖେଳଘର ନୁହେଁ । ସେଇଠି ଏକୁଟିଆ ଥାଇ ଛଟପଟ ହେଉଥିବୁ– ମୁଁ ଜାଣେ । କିନ୍ତୁ ମୋତେ ଟପିଯିବା ଭଳି ଯୋଗ୍ୟତା ମୋ' ପିଲାମାନଙ୍କର ରହିବା ଦରକାର । ସେମାନଙ୍କର ନାହିଁକି ? ଈଶ୍ୱର ତୋତେ ସହାୟ ହୁଅନ୍ତୁ ।... ବାପୁ

(ଗାନ୍ଧୀ ମଣିଷ, ପୃଷ୍ଠା–୩୬୮)

ଅନ୍ୟ ଏକ ପରିସ୍ଥିତିରେ ଗାନ୍ଧିଜୀ ଅନଶନ କରିଥିଲେ । ଅବଶ୍ୟ ମୁଖ୍ୟ ଉଦ୍ଦେଶ୍ୟ ଥିଲା ହରିଜନମାନଙ୍କର ମନ୍ଦିରରେ ପ୍ରବେଶ । ସେ ସମୟରେ ଗାନ୍ଧିଜୀ ମୀରାବେନ୍‌ଙ୍କୁ ଏକ ଚିଠିରେ ଲେଖିଥିଲେ 'ପ୍ରଭୁଙ୍କର କରୁଣା ଅସୀମ, ଅଛୁଆଁ ରାକ୍ଷସକୁ ଧ୍ୱଂସ କରିବାରେ ସେ ହିଁ ଏକମାତ୍ର ସହାୟ । ମୋର ଅନଶନ କିଛି ନୁହେଁ ।'

(ସୂଚନା: ସତ୍ୟାଗ୍ରହୀ ଗାନ୍ଧିଜୀ– ପୃଷ୍ଠା–୩୨୦)

ସନ ୧୯୪୭ରେ ଦେଶ ବିଭାଜନ, ସ୍ୱାଧୀନତା ପ୍ରାପ୍ତି, ୧୯୪୮ରେ ଗାନ୍ଧିଙ୍କର ନିଧନ ବେଳେ ମୀରାବେନ୍ ଭାରତରେ ଥିଲେ । ଓଃ... କି ଦୁଃଖ!! ସାମ୍ପ୍ରଦାୟିକତାର ଲେଲିହାନ, ଦଙ୍ଗା–ହେଙ୍ଗାମ–ରକ୍ତପାତର ନରକ ଦୃଶ୍ୟରେ ସେ ମ୍ରିୟମାଣ ହୋଇଗଲେ । ତଥାପି ସନ ୧୯୫୯ ଯାଏ ସେ ଭାରତରେ ରହି ଅବହେଳିତ ଇଲାକାରେ କୃଷି ଓ ଗୋପାଳନ ନିମନ୍ତେ କାର୍ଯ୍ୟ କଲେ । ବାପୁଗ୍ରାମ ଓ ଗୋପାଳ ଆଶ୍ରମ (ଭିଲଙ୍ଗନା, ୧୯୫୨) ସ୍ଥାପନରେ ତାଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । ସେ ଋଷିକେଶରେ 'ପଶୁଲୋକ' ନାମକ ଗୋ–ଶାଳା ସ୍ଥାପନ କରିଥିଲେ । ଚାର୍କି ପାଖରେ ବସାଇଥିଲେ କିଷାନ ଆଶ୍ରମ । ସେଥିପାଇଁ ଆବଶ୍ୟକ ଭୂମି ସ୍ଥାନୀୟ ଗ୍ରାମବାସୀଗଣ ତାଙ୍କୁ ଦାନ କରିଥିଲେ । ଗରୱାଲ୍

ଓ କୁମାୟନର ପାର୍ବତ୍ୟ ଅଞ୍ଚଳ ଭ୍ରମଣ କରି ସେ ଉପଲବ୍ଧି କରିଥିଲେ ଯେ ସେ ଅଞ୍ଚଳର ବନ୍ୟାବିପତ୍ତି– ପାହାଡ ଧସିପଡିବା ମୂଳରେ ରହିଛି ବୃକ୍ଷଛେଦନ ଓ ଜଙ୍ଗଲନାଶ ଭଳି ପରିବେଶ–ବିନାଶକାରୀ ଷଡଯନ୍ତ୍ର । ଏଣୁ ଏହାର ପ୍ରତିବାଦରେ ସେ ଲେଖିଲେ– 'Something Wrong in Himalaya' ବନବିଭାଗ ମୀରାବେନ୍‌ଙ୍କ ତାତ୍ପର୍ଯ୍ୟପୂର୍ଣ୍ଣ ଏଇ ରଚନାକୁ ହେୟଜ୍ଞାନ କରିଲ । ଅବଶ୍ୟ ୧୯୮୦ ମସିହା ବେଳକୁ ଚିପ୍‌କୋ ଆନ୍ଦୋଳନ (ଗଛକୁ ଚିପିକରି ଧରିବା, ତାକୁ କାଟିବାକୁ ନଦେବା) କରି ଗାନ୍ଧିବାଦୀ ପରିବେଶବିତ୍‌ଗଣ ତାଙ୍କ ମତକୁ ସମ୍ମାନ ଦେଇଥିଲେ । ତାଙ୍କ ଜୀବନର ମହାମୂଲ୍ୟ କାଳ, ୩୩ବର୍ଷର ଅବଧି (୧୯୨୫ରୁ ୧୯୫୯ ଯାଏ), ସେ ଭାରତର ସେବାରେ କଟାଇ ଥିଲେ । ଆମ ଦେଶର ଅଧିବକ୍ତା ଭାବେ ସେ ପୃଥିବୀର ବଡବଡ ନେତାଙ୍କୁ ସାକ୍ଷାତ କରିଥିଲେ । ଯଥା: ଡାଭିଡ୍ ଲଏଡ୍ ଜର୍ଜ, ଜେନେରାଲ୍ ସ୍ମଟସ୍, ଓ୍ୱିନ୍‌ଷ୍ଟନ୍ ଚର୍ଚ୍ଚିଲ ଶ୍ରୀମତୀ ରୁଜଭେଲ୍ଟ୍ (ଯୁକ୍ତରାଷ୍ଟ୍ର ଆମେରିକାର ରାଷ୍ଟ୍ରପତିଙ୍କ ପତ୍ନୀ) ଆଦିଙ୍କୁ ସେ ସାକ୍ଷାତ କରିଥିଲେ ଭାରତୀୟମାନଙ୍କର ସୁଖସୁବିଧା ପାଇଁ ।

ମୀରାବେନ୍‌ଙ୍କ ଆତ୍ମଜୀବନୀ 'The spirit's Pilgrimage' ଏକ ଅମୂଲ୍ୟଗ୍ରନ୍ଥ । ତାଙ୍କର ଅନ୍ୟ ଦୁଇ ପ୍ରକାଶିତ ପୁସ୍ତକ ହେଲା– 'Bapu's Letter to mira' ଓ 'New and old Gleamings'. ଜୀବନର ଶେଷ ପର୍ଯ୍ୟାୟରେ ସେ ଲେଖିଥିଲେ ବିଶ୍ୱ ପ୍ରସିଦ୍ଧ ସଂଗୀତ ସମ୍ରାଟ ଲୁଡଓ୍ୱିଗ୍ ଭାନ୍ ବିଥୋଭନ୍‌ଙ୍କ ଜୀବନୀ ଯାହାର ନାମ ରଖିଥିଲେ– The Spirit of Beethoven, ଏହା ଅପ୍ରକାଶିତ ରହିଥିବା ଜଣାଯାଏ ।

ମହିୟସୀ ମୀରାବେନ୍ ମୁନିଋଷିଙ୍କ ପରି ସରଳ ନିରାଡମ୍ବର ଜୀବନଯାପନ କରୁଥିଲେ । ନିରାମିଷାଶୀ, ଶୁକ୍ଳବସ୍ତ୍ର ପରିବୃତ୍ତା, ସ୍ୱାଧ୍ୟାୟୀ ମୀରାବେନ୍ ଥିଲେ ବସ୍ତୁତଃ ତପାଚାରୀ । ଆତ୍ମନିର୍ଭରଶୀଳା । ନିଜ ପାଇଁ ନିଜେ ରାନ୍ଧୁଥିଲେ, ବାସନ ମାଜୁଥିଲେ, ଲୁଗା କାଟୁଥିଲେ । ସେ ଥିଲେ ଗାନ୍ଧୀଦର୍ଶନର ଜୀବନ୍ତ ନିଦର୍ଶନ । ରିଚାର୍ଡ ଆଟେନ୍‌ବରଙ୍କ ଗାନ୍ଧୀ ଚଳଚ୍ଚିତ୍ରରେ ତାଙ୍କର ମହନୀୟତା ପ୍ରସାରିତ ହୋଇଛି । ଏତଦ୍‌ବ୍ୟତୀତ ମହାତ୍ମା ଗାନ୍ଧୀଙ୍କ ଶିଷ୍ୟାଭାବେ, ଆଧ୍ୟାତ୍ମିକ କନ୍ୟାଭାବେ ତାଙ୍କୁ ଅନେକ ରଚନାତ୍ମକ କାର୍ଯ୍ୟରେ ପରିଚିତ କରାଇ ଦିଆଯାଇଛି ।

ଦେଶର ସ୍ୱାଧୀନତା ପାଇଁ ମୀରାବେନ୍‌ଙ୍କର ତ୍ୟାଗ–ତିତିକ୍ଷା–କାରାବରଣ, ଦେଶର ଅର୍ଥନୀତିକୁ ସୁଦୃଢ କରାଇବା ପାଇଁ କୃଷି–ଗୋପାଳନ କ୍ଷେତ୍ରରେ ବିକାଶ ଯୋଜନା, ସମାଜ ସେବାରେ ଅବିଶ୍ରାନ୍ତ ଶ୍ରମ–ସାଧନାକୁ ଗଣନା କରାଯାଇ ଭାରତର ସରକାର ସନ ୧୯୮୧, ସ୍ୱାଧୀନତା ଦିବସରେ ତାଙ୍କୁ ପଦ୍ମବିଭୂଷଣ ଉପାଧି ପ୍ରଦାନ କରିଥିଲେ । ତାଙ୍କର ଶେଷ ଇଚ୍ଛା ଥିଲା ବିଥୋଭେନ୍‌ଙ୍କ ସମାଧି ତଳେ ବସି ପିଆନୋ ବଜାଇବା । ତାଙ୍କ ଆତ୍ମୀୟମାନଙ୍କର ଅନୁରୋଧ କ୍ରମେ ସେ ୧୯୬୦ ବେଳକୁ ଅଷ୍ଟ୍ରିଆ ଫେରି ଯାଇଥିଲେ । ଭିଏନାଠାରେ ୧୯୮୨, ଜୁଲାଇ ୨୦ ତାରିଖରେ ନବେବର୍ଷ ବୟସରେ ତାଙ୍କର ଦେହାନ୍ତ ହୁଏ ।

ସେକ୍ଟର–୨/୪୨୬
ନୀଳାଦ୍ରି ବିହାର, ଭୁବନେଶ୍ୱର

ସହାୟକ ପୁସ୍ତକ

୧– ଗାନ୍ଧୀ ମଣିଷ, ଲେଖକ– ମହାନ୍ତି, ଶରତ କୁମାର
୨– ସତ୍ୟାଗ୍ରହୀ ଗାନ୍ଧିଜୀ, ଲେଖକ– ମିଶ୍ର, ସଚ୍ଚିଦାନନ୍ଦ
୩– ଉତ୍କଳ ପ୍ରସଙ୍ଗ



# ବିପ୍ଳବିନୀ ବହ୍ନିକନ୍ୟା କ୍ୟାପଟେନ୍ ଡକ୍ଟର ଲକ୍ଷ୍ମୀ ସେହଗଲ

**ସୁଷମା ନାୟକ**

ସ୍ୱାଧୀନତା ସଂଗ୍ରାମରେ ଭାରତୀୟ ବୀରା ରମଣୀମାନଙ୍କର ଭୂମିକା ଅବିସ୍ମରଣୀୟ । ସେମାନେ ନିଜର ସୁଖ, ସ୍ୱାଚ୍ଛନ୍ଦ୍ୟ, ଘର, ଦ୍ୱାର, ପରିବାରକୁ ପରିତ୍ୟାଗ କରି ଦେଶ ମାତୃକାର ସେବାରେ ନିଜକୁ ତିଳ ତିଳ କରି ଉତ୍ସର୍ଗ କରିଛନ୍ତି । ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ମହିଳାମାନଙ୍କ ଭୂମିକା ଅନସ୍ୱୀକାର୍ଯ୍ୟ । ସମାଜ ସେବାର ସଙ୍କଳ୍ପ ଏବଂ ଦେଶ ଓ ଜାତି ପାଇଁ ଆତ୍ମୋତ୍ସର୍ଗ କରିବାର ସଂଗ୍ରାମୀମାନଙ୍କର ନିଶା ପ୍ରତ୍ୟେକ ଭାରତୀୟଙ୍କୁ ରୋମାଞ୍ଚିତ କରେ । ଦେଶ ଓ ଜାତିକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିବାର ଦୁର୍ବାର ସ୍ୱପ୍ନ ଆଜି ମଧ୍ୟ ନାରୀ ସମାଜ ପାଖରେ ତାଙ୍କୁ ଚିର ନମସ୍ୟ କରି ରଖିଛି । ଏହି ସଂଗ୍ରାମରେ ଭାରତୀୟ ନାରୀମାନେ ମଧ୍ୟ ନିରବ ନ ରହି ନିଜ ନିଜର ସାଧମତେ ଦେଶ ମାତୃକାର ସେବା କରି କର୍ତ୍ତବ୍ୟ ସାଧନ କରି ଚାଲିଲେ । କେହି ମୁହାଁମୁହିଁ ଇଂରେଜମାନଙ୍କ ସହ ଯୁଦ୍ଧ କରି ବହୁ ନିର୍ଯ୍ୟାତନା ସହିଲେ ତ କେହି ଜେଲ ଦଣ୍ଡ ଭୋଗ କଲେ ଓ ଆଉ କେହି ଶହୀଦ୍ ହୋଇଗଲେ । ତେଣୁ ନାରୀ ଶବ୍ଦ ଏକ ଅକ୍ଷର ଦୁଇ ମାତ୍ର ରୂପ ତିନି, ଜନନୀ, ଭଗିନୀ ଓ ଜାୟା । ପୁରୁଷ ନିଜର ମନୋମୁଖୀ ଇଚ୍ଛାକୁ ପରିହାର କରି ନାରୀକୁ ପୂର୍ଣ୍ଣ ସ୍ୱାଧୀନତା, ସ୍ୱତନ୍ତ୍ର ମର୍ଯ୍ୟାଦା ଓ ସମ୍ମାନ ଦେଲେ ଏହି ତିନି ରୂପର ସ୍ୱପ୍ନ ସାର୍ଥକ ହୋଇପାରିବ । ନାରୀ ଅବଳା ହୋଇପାରେ, ମାତ୍ର ଦୁର୍ବଳା ନୁହେଁ । ଏହି ସତ୍ୟତାକୁ ଭାରତୀୟ ନାରୀ ସମୟର କଷଟି ପଥରରେ ବାରମ୍ବାର ପରୀକ୍ଷିତ କରିପାରିଛନ୍ତି ।

ନାରୀ ହେଉଛି ପବିତ୍ରତାର ଗଙ୍ଗା, ଶାନ୍ତିର ଯମୁନା, ସହିଷ୍ଣୁତାର ହିମାଳୟ । ନାରୀ ଅବଳା, ଦୁର୍ବଳା ପୁରୁଷ ହସ୍ତରେ କ୍ରୀଡ଼ା ପୁତ୍ତଳିକା ବା ପୁରୁଷର କେବଳ ଭୋଗ୍ୟ ବସ୍ତୁ ନୁହେଁ । ଏ କଥାକୁ ସ୍ୱାଧୀନତା ସଂଗ୍ରାମରେ ଭାରତୀୟ ବୀରା ରମଣୀ ସମାଜ ମିଥ୍ୟା ପ୍ରମାଣିତ କରି ଦେଇଛନ୍ତି, ସେ ସ୍ନେହମୟୀ ଜନନୀ, ଆଦରଣୀୟା ଭଗିନୀ, ସେବା ଓ ତ୍ୟାଗର ମୂର୍ତ୍ତିମନ୍ତ ପ୍ରତୀକ । ତା'ର ସ୍ନେହ, ଆଦର ଓ ମମତାର ପଟାନ୍ତର ନାହିଁ । ସେମାନେ ପୁରୁଷର ସମକକ୍ଷ, ସଂଗ୍ରାମ କରି ଜାଣନ୍ତି, ବଜ୍ରଠାରୁ କଠିନ ହୋଇପାରନ୍ତି । ଭାରତବର୍ଷର ସୁଦୀର୍ଘ ଇତିହାସରେ ଅଗଣିତ ନାରୀ ନିଜ ନିଜର ଅପୂର୍ବ ସାହସ, ଶକ୍ତି, ନିଷ୍ଠା ଓ ପରାକାଷ୍ଠ ବଳରେ ଇଂରେଜମାନଙ୍କର ଗୋଳା ବାରୁଦ, ବନ୍ଧୁକ ଆଗରେ ଛାତି ପତେଇ ଦେଇଛନ୍ତି । ସେମାନଙ୍କୁ ଚିରଦିନ ପାଇଁ ଇତିହାସ ଅମର ପୃଷ୍ଠାରେ ଓ ସେମାନଙ୍କ ଯଶକୀର୍ତ୍ତି ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରି ରଖିଛି । ଆଉ କେତେ ଜଣଙ୍କର ଇତିହାସ ପୃଷ୍ଠାରେ ଅଧିକାଂଶ ମହିଳାଙ୍କ ନାମ ନାମାଙ୍କିତ ହୋଇନାହିଁ, ତଥାପି ଏମାନେ ଏ ଦେଶ ଓ ଏ ଜାତି ପାଇଁ ସମାଜର ସକଳ ବାଧାକୁ ଛିନ୍ନ କରି ଯେଉଁ ଆତ୍ମୋତ୍ସର୍ଗ କରି ଯାଇଛନ୍ତି, ତାହା ଅତୁଳନୀୟ । ଭାରତମାତାକୁ ପରାଧୀନ ଶୃଙ୍ଖଳରୁ ମୁକ୍ତ କରିବା ପାଇଁ ଏହି ଜାତୀୟ ଆନ୍ଦୋଳନର ଭାରତୀୟ ବୀରା ରମଣୀମାନଙ୍କ ଭୂମିକା ଅଦ୍ୱିତୀୟ । ଗାନ୍ଧିଜୀଙ୍କ ମହାନ ଆଦର୍ଶ ଓ ତ୍ୟାଗପୂତ ଭାବ ଧାରାରେ ଗଭୀର ଭାବରେ ଉଦ୍‌ବୁଦ୍ଧ ହୋଇ ଏମାନେ ଇଂରେଜ ଶାସନ ବିରୋଧରେ ସଂଗ୍ରାମ କରି ଆଜି ଚିରସ୍ମରଣୀୟା ହୋଇଛନ୍ତି । ସେମାନଙ୍କ ମଧ୍ୟରୁ ବିପ୍ଳବିନୀ ବହ୍ନିକନ୍ୟା କ୍ୟାପଟେନ୍ ଡକ୍ଟର ଲକ୍ଷ୍ମୀ ସେହଗଲ ଥିଲେ ଅନ୍ୟତମ ।

୧୯୧୪ ମସିହା ଅକ୍ଟୋବର ମାସ ୨୪ ତାରିଖରେ ତତ୍କାଳୀନ ବ୍ରିଟିଶ ଶାସନାଧୀନ ଭାରତର ମାନ୍ଦ୍ରାସଠାରେ ସେ ଜନ୍ମ ଗ୍ରହଣ କରିଥିଲେ, ମାତା ଏ.ଭି.ଅମ୍ମୁକୁଟ୍ଟୀ ଥିଲେ ଜଣେ ସ୍ୱାଧୀନତା ସଂଗ୍ରାମୀ ତଥା ସମାଜସେବୀ ଏବଂ ପିତା ଏସ୍. ସ୍ୱାମୀନାଥନ୍ ଥିଲେ ମାନ୍ଦ୍ରାସ୍ ହାଇକୋଟର ଜଣେ ଓକିଲ । ଏହି ଦୁଇ ଜଣଙ୍କର

କୋଳମଣ୍ଡନ କରିଥିବା 'ଶିଶୁଟି ପିଲାଦିନରୁ ତାଙ୍କର ସାହସିକତାର ନିଦର୍ଶନ ପ୍ରମାଣିତ କରିଥିଲେ । ପିଲାଦିନରୁ ଜାତି ପ୍ରଥାକୁ ବିରୋଧ କରି ସର୍ବପ୍ରଥମେ ସାମାଜିକ କୁପ୍ରଥା ବିରୋଧରେ ସଂଗ୍ରାମ ଆରମ୍ଭ କରିଥିଲେ । ସେ ଡ଼ାକ୍ତରୀ ଛାତ୍ରୀ ଥିଲାବେଳେ ଜାତିର ପିତା ଗାନ୍ଧିଜୀଙ୍କ ଆହ୍ୱାନରେ ଉଦ୍‌ବୋଧ ହୋଇ ତାଙ୍କ ମାଆ ନିଜର ଦାମୀ ଗହଣା ଓ ଲୁଗାପଟା ପୋଡ଼ି ଦେଇଥିଲେ, ଯାହାକି କ୍ୟାପଟେନ୍ ଲକ୍ଷ୍ମୀ ସେହଗଲଙ୍କ ପ୍ରତି ଏକ ପ୍ରେରଣା ସଦୃଶ ଥିଲା ।' ଲକ୍ଷ୍ମୀଙ୍କର ଉଦ୍ଦେଶ୍ୟ ଥିଲା ଜଣେ ଡ଼ାକ୍ତର ହୋଇ ଦୁଷ୍ଟ ଓ ନିରାଶ୍ରୟମାନଙ୍କୁ ସେବା କରିବା । ତେଣୁ ୧୯୩୮ ମସିହାରେ ମାନ୍ଦ୍ରାସ କଲେଜରୁ ସେ ଏମ୍.ବି.ବି.ଏସ୍ ଡ଼ିଗ୍ରୀ ହାସଲ କରିଥିଲେ । ବର୍ଷକ ପରେ ସେ ସ୍ତ୍ରୀ ଓ ପ୍ରସୂତି ବିଭାଗ ଉପରେ ଅଧ୍ୟୟନ କରି ଡ଼ିପ୍ଲୋମା ହାସଲ କରିଥିଲେ । ୧୯୪୦ରେ ଅଧିକ ପଢ଼ିବା ପାଇଁ ସିଙ୍ଗାପୁର ଯାଇଥିଲେ । ପରେ ସେଠାରେ ଏକ କ୍ଲିନିକ୍ ପ୍ରତିଷ୍ଠା କରି ଭାରତୀୟ ଶ୍ରମିକଙ୍କ ସେବା କରୁଥିଲେ । ସେଠାରେ ରହି ସେ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ । ୧୯୪୨ରେ ବ୍ରିଟିଶ ସେବା ସିଙ୍ଗାପୁରକୁ ଜାପାନ ନିକଟରେ ଆତ୍ମସମର୍ପଣ କରାଇବା ପରେ ଯୁଦ୍ଧରେ ଆହତ ବହୁ ସୈନ୍ୟଙ୍କର ସେ ଚିକିତ୍ସା କରିଥିଲେ । ୧୯୪୩ ଜୁଲାଇ ୨ ତାରିଖରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ସିଙ୍ଗାପୁରରେ ପହଞ୍ଚିଥିଲେ । ସେଠାରେ ସେ ଭାରତୀୟ ସ୍ୱାଧୀନତା ସଂଗ୍ରାମ ପାଇଁ ଏକ ମହିଳା ରେଜିମେଣ୍ଟ ଗଠନ କରିଥିଲେ । ଲକ୍ଷ୍ମୀ ସେହଗଲ ଉକ୍ତ ରେଜିମେଣ୍ଟରେ ଯୋଗ ଦେଇଥିଲେ । ଏହି ମହିଳା ରେଜିମେଣ୍ଟର ନାମ ରହିଥିଲା, ଝାନ୍‌ସୀ ରାଣୀ ରେଜିମେଣ୍ଟ । ଏସିଆ ମହାଦେଶରେ ଥିଲା, ଏହା ପ୍ରଥମ ମହିଳା ରେହିମେଣ୍ଟ । ବ୍ରିଟିଶ ସେନା ବିରୋଧରେ ଏହି ବାହିନୀ ସଂଗ୍ରାମ କରିଥିଲା । ନେତାଜୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଲକ୍ଷ୍ମୀ ସେହଗଲ ଏହି ରେଜିମେଣ୍ଟରେ ରହି କାମ କରୁଥିଲେ । ତାଙ୍କୁ କର୍ଣ୍ଣେଲ ଉପାଧି ମିଳିଥିଲା ଏବଂ ସେ ରେଜିମେଣ୍ଟର ଦାୟିତ୍ୱ ନେଇଥିଲେ । ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ସାନ୍ନିଧ ପାଇବା ପୂର୍ବରୁ ସେ ମାନ୍ଦ୍ରାସ ମେଡ଼ିକାଲ କଲେଜରୁ ଡ଼ାକ୍ତର ଡ଼ିଗ୍ରୀ ହାସଲ କରିବା ପରେ ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ କେବଳ ମହିଳାମାନଙ୍କୁ ନେଇ ଝାନ୍‌ସୀ ରାଣୀ ରେଜିମେଣ୍ଟ ଗଠନ କରିବାକୁ ଆହ୍ୱାନ ଦେଇ ପରାଧୀନ ଭାରତବର୍ଷରେ ଯେଉଁଠି ନାରୀମାନେ ପରଦା ତଳର ଅନ୍ଧାର ଭିତରେ ନିଜ ଜୀବନକୁ ବଳି ଦେଇଥିଲେ । ସେତେବେଳେ ଜଣେ ଭାରତୀୟ ନାରୀ ସେନାବାହିନୀରେ ଯୋଗ ଦେଇ ଭାରତୀୟ ମୁକ୍ତି ସଂଗ୍ରାମକୁ ପରିଚାଳନା କରିବାର ବିରାଟ ଦକ୍ଷତା ହାସଲ କରିଥିଲେ । ନେତାଜୀ ସୁଭାଷ ବୋଷ ତାଙ୍କ ଧୀଶକ୍ତି, ସାହସିକ ନେତୃତ୍ୱ ଓ କର୍ତ୍ତବ୍ୟନିଷ୍ଠା ଗୁଣକୁ ଦେଖି ତାଙ୍କୁ ଅଗ୍ନିକନ୍ୟା ଭାବରେ ଅଭିହିତ କରିଥିଲେ । ମାନ୍ଦ୍ରାସ ମେଡ଼ିକାଲ କଲେଜରୁ ଡ଼ାକ୍ତରୀ ବିଦ୍ୟା ଅଧ୍ୟୟନ ପରେ ଲକ୍ଷ୍ମୀ ସେହଗଲ ସିଙ୍ଗାପୁରରେ ଆହତ ଭାରତୀୟ ସୈନିକମାନଙ୍କ ଚିକିତ୍ସା ଦାୟିତ୍ୱ ନିଜେ ନେଇଥିଲେ । ଲକ୍ଷ୍ମୀ ସେହଗଲଙ୍କ ପରିଶ୍ରମ ଫଳବତୀ ହେଲା । ବହୁ ସଂଖ୍ୟାରେ ମହିଳାମାନେ ମହିଳା ରେଜିମେଣ୍ଟରେ ଯୋଗ ଦେଲେ ଦେଶକୁ ସ୍ୱାଧୀନ କରିବା ପାଇଁ । ଏହା ଥିଲା ସଶସ୍ତ୍ର ସଂଗ୍ରାମ ।

ମାତ୍ର ୨୬ ବର୍ଷ ବୟସରେ ସିଙ୍ଗାପୁର ଯାତ୍ରା କଲାପରେ ୧୯୪୪ ମସିହା ଡ଼ିସେମ୍ବର ମାସରେ ବର୍ମାକୁ ଯାତ୍ରା କରିଥିଲେ ଓ ୧୯୪୫ ରୁ ୧୯୪୬ ପର୍ଯ୍ୟନ୍ତ ବ୍ରିଟିଶ ସେନା ବର୍ମାର ଅନ୍ଧକାରପୂର୍ଣ୍ଣ ଜଙ୍ଗଲରେ ଗୃହବନ୍ଦୀ କରି ରଖିଥିଲେ । ୧୯୪୬ରେ ବର୍ମା ବ୍ରିଟିଶ ସେନା ହାତରେ ସେ ଧରାପଡ଼ିଥିଲେ । ବ୍ରିଟିଶ ଫୌଜ ତାଙ୍କୁ ଗିରଫ କରି ନେଇଥିଲେ ଏବଂ ତାଙ୍କ ସଂଘର୍ଷ ସେହିଠାରେ ବନ୍ଦ ହୋଇଯାଇଥିଲା । ପରେ ତାଙ୍କୁ ଭାରତ ଅଣାଯାଇଥିଲା । ଭାରତ ସ୍ୱାଧୀନତା ପାଇବା ବର୍ଷ ୧୯୪୭ ମାର୍ଚ୍ଚ ମାସରେ ନେତାଜୀଙ୍କର ଅନ୍ୟତମ ବିଶିଷ୍ଟ ସହଯୋଗୀ ଯୋଦ୍ଧା କର୍ଣ୍ଣେଲ ପ୍ରେମକୁମାରଙ୍କ ସହିତ ପାଣି ଗ୍ରହଣ କରିଥିଲେ । ବିବାହ ପରେ ପତି ପତ୍ନୀ କାନପୁରରେ ରହିଥିଲେ । ତାଙ୍କର ଦୁଇ କନ୍ୟା ମଧ୍ୟରୁ ପ୍ରଥମ ସଭାଶିନୀ ଆଲି ଓ ଅନିଶାପୁରୀ । ତା' ପରେ ଦେଶ ସ୍ୱାଧୀନ ହେଲା କିନ୍ତୁ ସେତିକିରେ ସେ ସନ୍ତୁଷ୍ଟ ହୋଇ ରହିଯାଇ ନଥିଲେ । ସେ ସାମାଜିକ ପରିବର୍ତ୍ତନ ଚାହୁଁଥିଲେ । କାନପୁରଠାରେ ରହି ଡ଼ାକ୍ତରୀ ଚିକିତ୍ସା କଲାବେଳେ ଦରିଦ୍ର, ଅସହାୟ ଲୋକଙ୍କ ଚିକିତ୍ସାରେ ସେ ମଗ୍ନ ଥିଲେ । ଦେଶ ବିଭାଜନ ପରେ ପାକିସ୍ତାନରୁ ଆସୁଥିବା ଶରଣାର୍ଥୀଙ୍କ ମଧ୍ୟରୁ ବେଶ କିଛି ଲୋକ କାନପୁରକୁ ମଧ୍ୟ ଆସିଥିଲେ । ଲକ୍ଷ୍ମୀ ସେହଗଲ ସେମାନଙ୍କ ଦାୟିତ୍ୱ ବୁଝିବା ସହିତ ସ୍ଥାନୀୟ ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ସଦ୍‌ଭାବ ରକ୍ଷା କରିବା ପାଇଁ ପ୍ରଯତ୍ନ କରିଥିଲେ । ତାଙ୍କ ଜୀବନରେ ମାର୍କିନ ଲେଖକ ଏଡ଼ଗାର ସ୍ନୋଙ୍କ ଲିଖିତ ପୁସ୍ତକ 'ରେଡ୍‌ଷ୍ଟାର ଓଭର ଚାଇନା' ତାଙ୍କୁ କମ୍ୟୁନିଷ୍ଟ ଆଦର୍ଶ ଆଡ଼କୁ ଆକୃଷ୍ଟ କରିଥିଲା । ୧୯୭୧ରେ ଲକ୍ଷ୍ମୀ ସେହଗଲ ସିପିଆଇ (ଏମ୍)ରେ ଯୋଗ ଦେଇ ରାଜ୍ୟସଭାକୁ ମନୋନୀତ ହୋଇଥିଲେ । ବାଂଲାଦେଶ ଯୁଦ୍ଧ ବେଳେ ସେ କୋଲକତାଠାରେ ଏକ ରିଲିଫ ଓ ମେଡ଼ିକାଲ କ୍ୟାମ୍ପ ପ୍ରତିଷ୍ଠା କରିଥିଲେ । ବାଂଲାଦେଶ ଯୁଦ୍ଧ ଭୟରେ ଭାରତକୁ ପଳାଇ ଆସୁଥିବା ବ୍ୟକ୍ତିଙ୍କ ସହାୟତା ଦିଗରେ ଏହି ଶିବିର କାମ କରୁଥିଲା । ବାଂଲାଦେଶ ମୁକ୍ତି ସଂଗ୍ରାମ କାଳରେ ଡ଼ାକ୍ତରୀ ଦଳ ଧରି ସେ

ଦେଶରୁ ଆସୁଥିବା ଶରଣାର୍ଥୀଙ୍କ ଚିକିତ୍ସା ଆଦି କାର୍ଯ୍ୟ କଲିକତାରେ ରହି କରୁଥିଲେ । ଏହା ପରେ ସେ ସିପିଏମ୍‌ରେ ସଦସ୍ୟ ହୋଇ ରାଜନୈତିକ କାର୍ଯ୍ୟକ୍ରମରେ ସଂପୃକ୍ତ ହୋଇଥିଲେ ।

ମହିଳାମାନଙ୍କ ଅଧିକାର ପାଇଁ ସେ ଅଖିଳ ଭାରତୀୟ ଗଣତାନ୍ତ୍ରିକ ମହିଳା ସଂଗଠନ ସ୍ଥାପନରେ ବିଶେଷ ଭୂମିକା ଗ୍ରହଣ କରିଥିଲେ । ସାଂପ୍ରଦାୟିକ ସଦ୍‌ଭାବ ନଷ୍ଟ କରିବା ପାଇଁ ଉଦ୍ୟମ ତାଙ୍କୁ ବହୁତ ବିଚଳିତ କରିଥିଲା । ଇନ୍ଦିରା ଗାନ୍ଧୀଙ୍କ ହତ୍ୟା ପରେ ଦେଶରେ ଶିଖ ବିରୋଧୀ ଦଙ୍ଗା ବ୍ୟାପିଥିବା ବେଳେ ତାଙ୍କର ସାହସିକ ପଦକ୍ଷେପ ଯୋଗୁଁ କାନପୁରରେ ଜଣେ ମଧ୍ୟ ଶିଖ୍‌ଙ୍କ ଉପରେ ଆକ୍ରମଣ ହୋଇନଥିଲା । ଭୋପାଳ ଗ୍ୟାସ ଦୁର୍ଘଟଣାରେ କ୍ଷତିଗ୍ରସ୍ତ ଲୋକଙ୍କୁ ସହାୟତା ପ୍ରଦାନ କାର୍ଯ୍ୟରେ ସେ ସାମିଲ ହୋଇଥିଲେ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବାଲ୍ୟ ବିବାହ ଉଚ୍ଛେଦ, ଯୌତୁକ ବ୍ୟାଧି ବିପକ୍ଷ ଓ ଦଳିତଙ୍କୁ ମନ୍ଦିର ପ୍ରବେଶ ପାଇଁ ସେ ନିଜ ସଂଗ୍ରାମ ଜାରି ରଖିଥିଲେ । ଦେଶର ସକରାତ୍ମକ ପରିବର୍ତ୍ତନ ପାଇଁ ସେ ମହିଳା, ଶ୍ରମିକ, ଖଟିଖିଆ ଦିନ ମଜୁରିଆ ତଥା ଗରିବ ଚାଷୀଙ୍କ ପାଇଁ ସବୁବେଳେ ସ୍ୱର ଉତ୍ତୋଳନ କରିଥିଲେ । ୧୯୯୮ ମସିହାରେ ତାଙ୍କୁ ପଦ୍ମ ବିଭୂଷଣ ସମ୍ମାନରେ ସମ୍ମାନିତ କରାଯାଇଥିଲା । ଅଖିଳ ଭାରତ ଗଣତାନ୍ତ୍ରିକ ମହିଳା ସମିତିର ସେ ପ୍ରତିଷ୍ଠାତା ସଦସ୍ୟା ଥିଲେ । ୨୦୦୨ ମସିହାରେ ସେ ବାମଦଳ ପକ୍ଷରୁ ରାଷ୍ଟ୍ରପତି ପ୍ରାର୍ଥୀ ହୋଇଥିଲେ । ମାତ୍ର ନିର୍ବାଚନରେ ଏ ପି ଜେ ଅବଦୁଲ କାଲାମଙ୍କଠାରୁ ପରାଜିତ ହେଲେ । କିନ୍ତୁ କେବେ ବି ରାଜନୀତି ଜରିଆରେ ନିଜ ପାଇଁ କିଛି ହାସଲ କରିବାକୁ ସେ ଚାହିଁନାହାନ୍ତି । ପୂଜ୍ୟ ଶ୍ରୀକୁମାର ଭାଇଙ୍କ ପ୍ରତିଷ୍ଠିତ ଆନ୍ତର୍ଜାତିକ ଅଶୋଭନୀୟତା ନିରୋଧ ଆନ୍ଦୋଳନର ବିଭିନ୍ନ କାର୍ଯ୍ୟକ୍ରମରେ ସେ ନିଜର ଶୁଭେଚ୍ଛା ବାର୍ତ୍ତା ଜଣାଇଛନ୍ତି ।

ସ୍ୱାଧୀନତା ଆନ୍ଦୋଳନରେ ସେ ଥିଲେ ଜଣେ ମହୀୟସୀ ମହିଳା । ଦେଶ ସ୍ୱାଧୀନ ହେବା ପରେ ଜଣେ ସ୍ୱାଧୀନ ଚେତା, ପ୍ରଗତିବାଦୀ, ସମାଜବାଦୀ ତଥା ସାମ୍ୟବାଦୀ ନେତା ଭାବରେ ବିପ୍ଳବିନୀ ବହ୍ନି କନ୍ୟା କ୍ୟାପଟେନ୍ ଡକ୍ଟର ଲକ୍ଷ୍ମୀ ସେହଗଲ ନିଜ ଜୀବନକୁ ସାଧାରଣ ମଣିଷ ଲାଗି ଉତ୍ସର୍ଗ କରିଥିଲେ । ସମାଜ ସେବା ଯେପରି ତାଙ୍କରି ଅସ୍ଥିମଜ୍ଜାଗତ ହୋଇଯାଇଥିଲା । ତାଙ୍କ ପିତାମାତା ସମାଜ ସେବା ଏବଂ ସ୍ୱାଧୀନତା ସଂଗ୍ରାମୀ ଭାବେ ଖ୍ୟାତିଲାଭ କରିଥିଲେ । ଲକ୍ଷ୍ମୀ ସେହଗଲଙ୍କ ପେଶା ଡ଼ାକ୍ତରୀ ବିଦ୍ୟା ଥିଲେ ମଧ୍ୟ ପିଲାଦିନୁ ଦେଶ ପାଇଁ କାର୍ଯ୍ୟ କରିବା ତାଙ୍କ ମନରେ ଜାଗ୍ରତ ହୋଇଥିଲା । ଆଜାଦ୍ ହିନ୍ଦ୍ ଫୌଜର ଝାନସୀ ରାଣୀ ରେଜିମେଣ୍ଟର ନେତୃତ୍ୱ ନେଇଥିବା କାରଣରୁ ତାଙ୍କୁ ବିପ୍ଳବିନୀ ବହ୍ନି କନ୍ୟା ଭାବେ ଏ ଦେଶରେ ସେ ପରିଚିତ । ଶେଷରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ସହଯୋଗୀ ତଥା ଇଣ୍ଡିଆନ ନ୍ୟାସନାଲ ଆର୍ମି (ଆଇ.ଏନ୍.ଏ) ମହିଳା ରେଜିମେଣ୍ଟର ନେତୃତ୍ୱ ନେଇ ଭାରତୀୟ ମୁକ୍ତି ପାଇଁ ବ୍ରିଟିଶ ସରକାରଙ୍କ ବିରୋଧରେ ସଂଗ୍ରାମ କରିଥିବା ତଥା ସମାଜବାଦୀ ଓ ସାମ୍ୟବାଦୀ ଭାରତ ଗଠନ ଲାଗି ଜୀବନ ସାରା ସଂଗ୍ରାମ କରିଥିବା ମହାନାୟିକା ମହୀୟସୀ ମହିଳା ବିପ୍ଳବିନୀ ବହ୍ନି କନ୍ୟା କ୍ୟାପଟେନ୍ ଡକ୍ଟର ଲକ୍ଷ୍ମୀ ସେହଗଲଙ୍କ ପୂର୍ବାହ୍ନ ୧୧ ଟା ୨୦ ମିନିଟ୍ ସମୟରେ ତା ୨୩.୦୭.୨୦୧୨ ରିଖ ସୋମବାର ଦିନ ହୃଦ୍‌ଘାତରେ ୯୭ ବର୍ଷ ବୟସରେ ପରଲୋକ ଗମନ କଲେ । ତାଙ୍କର ତ୍ୟାଗ ତଥା ବୀରତ୍ୱର କାହାଣୀ ଭାରତୀୟ ମୁକ୍ତି ସଂଗ୍ରାମର ସ୍ୱାଧୀନତା ଆନ୍ଦୋଳନରେ କୌଣସି ପଟ୍ଟାନ୍ତର ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏଚ୍.ଆଇ.ଜି– ୯୧, ଫେଜ–୧
କାନନ ବିହାର, ପୋ.ଅ – ପଟିଆ,
ଚନ୍ଦ୍ରଶେଖରପୁର, ଭୁବନେଶ୍ୱର– ୭୫୧୦୩୧



# ସମ୍ବଲପୁରରେ ଓଡ଼ିଆ ଭାଷା ଆନ୍ଦୋଳନ ଓ ଭାଷାପ୍ରେମୀ ଶ୍ରୀପତି ମିଶ୍ର

**ଶିବ ପ୍ରସାଦ ତ୍ରିପାଠୀ**

ଶିମଳା ଯାତ୍ରା ପୁସ୍ତକର ପ୍ରଣେତା, ସୁସାହିତ୍ୟିକ, ସାମ୍ବାଦିକ ତଥା ସମ୍ବଲପୁରରେ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନର ସାରଥି ଶ୍ରୀପତି ମିଶ୍ର ଜଣେ ଅନନ୍ୟ ସାଧାରଣ ପ୍ରତିଭାଧର ଏବଂ ଅବିସ୍ମରଣୀୟ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ । ଏହି ପୁସ୍ତକ ପ୍ରଣୟନ କରି ସେ ସମ୍ବଲପୁର ଇତିହାସରେ ଏକ ନୂତନ ଅଧ୍ୟାୟ ସନ୍ନିବେଶିତ କରିଛନ୍ତି । ତଦାନୀନ୍ତନ ବ୍ରିଟିଶ ଶାସନାଧୀନ ସମ୍ବଲପୁର ଭୂଖଣ୍ଡ ଓ ବିଭିନ୍ନ ତୀର୍ଥସ୍ଥାନ ସମ୍ବନ୍ଧରେ ଅତ୍ୟନ୍ତ ସାବଲୀଳ, ସୁପାଠ୍ୟ ଏବଂ ଗତିଶୀଳ ବର୍ଣ୍ଣନା ମାଧ୍ୟମରେ ସେ ଏକ ଆକର୍ଷଣୀୟ ପୃଷ୍ଠଭୂମି ପ୍ରସ୍ତୁତ କରି ନୂତନ ଗବେଷଣାର ପଥ ଉନ୍ମୁକ୍ତ କରିଛନ୍ତି ।



### ଜନ୍ମ, ପରିବାର ଓ ଶିକ୍ଷା

ଶ୍ରୀପତି ମିଶ୍ର ୧୮୭୩ରେ ସମ୍ବଲପୁର ସହରର ପଟ୍ଟନାୟକ ପଡ଼ାରେ ଉତ୍କଳୀୟ ବ୍ରାହ୍ମଣ ସଂପ୍ରଦାୟର ଏକ ସୁଖ୍ୟାତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କର ନାମ ବଳରାମ ମିଶ୍ର ଏବଂ ମାତାଙ୍କର ନାମ କଉଡ଼ି ଦେବୀ । ବଳରାମ ମିଶ୍ର ଜଣେ ସୁପଣ୍ଡିତ ଓ ବିଦ୍ୱାନ ଥିଲେ । ସେ ତତ୍କାଳୀନ ଚନ୍ଦ୍ରପୁର ଜମିଦାର ବଂଶର କୁଳପୁରୋହିତ ଭାବରେ ଦୀର୍ଘକାଳ ପର୍ଯ୍ୟନ୍ତ ଦାୟିତ୍ୱ ନିର୍ବାହ କରି ସୁନାମ ଓ ପ୍ରଶଂସା ଅର୍ଜନ କରିଥିଲେ । ମାତା ପାଞ୍ଚକଉଡ଼ି ଦେବୀ ସୁନାମଧନ୍ୟ ପଣ୍ଡିତ ଚିନ୍ତାମଣି ନନ୍ଦ ବିଦ୍ୟାଭୂଷଣଙ୍କ କନ୍ୟା । ବଳରାମ ମିଶ୍ରଙ୍କ ଜ୍ୟେଷ୍ଠପୁତ୍ର ଶ୍ରୀପତି ମିଶ୍ରଙ୍କ ବିବାହ ସମ୍ବଲପୁର ସହରର ନନ୍ଦପଡ଼ା ନିବାସୀ ବିଶିଷ୍ଟ ଜ୍ୟୋତିର୍ବିଦ ପଣ୍ଡିତ ଭାଗୀରଥି ମିଶ୍ରଙ୍କ କନ୍ୟା ଦ୍ରୌପଦୀଙ୍କ ସହ ହୋଇଥିଲା । ଶ୍ରୀପତିଙ୍କର ଦୁଇଭାଇ ଥିଲେ ଦାଶରଥି ମିଶ୍ର ଏବଂ ଦୀନବନ୍ଧୁ ମିଶ୍ର । ତାଙ୍କର ଏକମାତ୍ର ଭଉଣୀଙ୍କର ନାମ ଥିଲା ଶ୍ରୀମତୀ ମିଶ୍ର । ତୁଲଣ୍ଡିର ଗୌନ୍ତିଆ ପୁରୁଷୋତ୍ତମଙ୍କ ସହିତ ତାଙ୍କର ବିବାହ ହୋଇଥିଲା । ଶ୍ରୀପତି ମିଶ୍ରଙ୍କର ସାତଜଣ ପୁତ୍ରକନ୍ୟା ଥିଲେ । ସେମାନଙ୍କର ନାମ ଥିଲା ସୌଦାମିନୀ, ପ୍ରଫୁଲ୍ଲ କୁମାର, ବିପିନ ବିହାରୀ, କୁମୁଦିନୀ, ବିନୋଦିନୀ, କିଶୋରୀ ମୋହନ ଏବଂ ଦେବହୂତି । ଶ୍ରୀପତି ମିଶ୍ରଙ୍କ ପୂର୍ବଜଗଣ କୁଳପୁରୋହିତ, ଜ୍ୟୋତିର୍ବିଦ୍ୟା ବିଶାରଦ ତଥା ବିଦ୍ୱାନ ଥିଲେ । ସେହିମାନଙ୍କ ପ୍ରତ୍ୟକ୍ଷ ଅଥବା ପରୋକ୍ଷ ପ୍ରଭାବରେ ଶ୍ରୀପତି ମିଶ୍ର ଜଣେ ସୁଲେଖକ ଓ ଚିନ୍ତାନାୟକ ଭାବରେ ପ୍ରତିଭାତ ହୋଇଥିଲେ ।

ସମ୍ବଲପୁର ଜିଲ୍ଲା ସ୍କୁଲରୁ ଶ୍ରୀପତି ମିଶ୍ର ୧୮୯୧ରେ ଏଣ୍ଟ୍ରାନ୍ସ ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲେ । ସେହିବର୍ଷ ସହପାଠୀ ବାଳମୁକୁନ୍ଦ ବହିଦାର ଏବଂ ଚନ୍ଦ୍ରଶେଖର ବେହେରା ମଧ୍ୟ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଏଣ୍ଟ୍ରାନ୍ସ ପରୀକ୍ଷା ଫଳରେ ତାଙ୍କର ନାମ ଶ୍ରୀପତି ବଳରାମ ମିଶ୍ର ଲେଖା ଥିଲା ।

ଏହି ସ୍କୁଲ ଅଧୁନା ଚନ୍ଦ୍ରଶେଖର ବେହେରା ଜିଲ୍ଲା ସ୍କୁଲ ନାମରେ ନାମିତ । ଉଚ୍ଚଶିକ୍ଷା ବ୍ୟବସ୍ଥା ଉପଲବ୍ଧ ନହେବାରୁ ଶ୍ରୀପତି ମିଶ୍ର ସୋନପୁରରେ ଶିକ୍ଷା ପରିଦର୍ଶକ ଭାବରେ କାର୍ଯ୍ୟାରମ୍ଭ କରିଥିଲେ । ସେସମୟରେ ଶିକ୍ଷା ଓ ଶିକ୍ଷକର ମାନ ସୁପ୍ରତିଷ୍ଠିତ ଥିଲା । କିଛିକାଳ ଏହି କାର୍ଯ୍ୟ ନିର୍ବାହ କରି ସେ ଲୋକପ୍ରିୟତା ଅର୍ଜନ କରିଥିଲେ । ସମ୍ବଲପୁର ଭାଷା ଆନ୍ଦୋଳନର ନେତାମାନଙ୍କର ଆହ୍ୱାନ ଓ ନିମନ୍ତ୍ରଣ କ୍ରମେ ସେ ଚାକିରି ପରିତ୍ୟାଗ କରି ଭାଷା ଆନ୍ଦୋଳନରେ ସାମିଲ ହୋଇଥିଲେ ।

### ଶିମଳା ଯାତ୍ରା: ଏକ ଅନବଦ୍ୟ କୃତି

ଶ୍ରୀପତି ମିଶ୍ରଙ୍କ ଦ୍ୱାରା ପ୍ରଣୀତ ଶିମଳା ଯାତ୍ରା ପୁସ୍ତକ ଏକ ଉଚ୍ଚକୋଟୀର ଭ୍ରମଣ ବୃତ୍ତାନ୍ତ ତଥା ଅନବଦ୍ୟ ସାହିତ୍ୟକୃତି । ଏହି ବର୍ଣ୍ଣାଢ଼୍ୟ ସାହିତ୍ୟକୃତିରେ ସମ୍ବଲପୁରର ଭାଷା ସୁରକ୍ଷା ଆନ୍ଦୋଳନର ଆଦ୍ୟ ଇତିହାସ ସ୍ଥାନିତ । ଅମର କବି ଗଙ୍ଗାଧର ଶୀର୍ଷକ ପ୍ରବନ୍ଧରେ ଆସାମର ମାନ୍ୟବର ରାଜ୍ୟପାଳ ସୁସାହିତ୍ୟିକ ଜାନକୀବଲ୍ଲଭ ପଟ୍ଟନାୟକ ସମ୍ବଲପୁରରେ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ ସମ୍ପର୍କରେ ଅବତାରଣା କରିଛନ୍ତି । ସେ ଲେଖିଛନ୍ତି, ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃପ୍ରଚଳନ ପାଇଁ ଯେଉଁ ବୀର ଯୋଦ୍ଧାମାନେ କାର୍ଯ୍ୟ କରୁଥିଲେ, ସେମାନଙ୍କ ମଧ୍ୟରୁ ଚାରିଜଣ ସମ୍ବଲପୁରର ଏକ ଜନସଭାରେ ମନୋନୀତ ହୋଇ ନାଗପୁର ଯାଇଥିଲେ, ତତ୍‌କାଳୀନ ଲାଟ୍‌ଙ୍କ ସହିତ ଆଲୋଚନା କରିବା ପାଇଁ । କିନ୍ତୁ ସେତିକିରେ ସନ୍ତୁଷ୍ଟ ନହୋଇ ସେମାନେ ବଡ଼ଲାଟ୍ ଲର୍ଡ କର୍ଜନଙ୍କୁ ଭେଟିବା ପାଇଁ ସିମଳା ଗଲେ । ଏହି ଚାରିଜଣଙ୍କ ସହିତ ଆଉ ଜଣେ ବ୍ୟକ୍ତି ସୁଲେଖକ ଓ ଶିକ୍ଷକ ଶ୍ରୀପତି ମିଶ୍ର ମଧ୍ୟ ଯାଇଥିଲେ । ଏହି ପାଞ୍ଚଜଣ ହେଲେ ବିହାରୀ ଦାସ ମହନ୍ତ, ବ୍ରଜମୋହନ ପଟ୍ଟନାୟକ, ବଳଭଦ୍ର ସୂପକାର, ମଦନ ମୋହନ ମିଶ୍ର ଓ ଶ୍ରୀପତି ମିଶ୍ର । ସେମାନଙ୍କର ମନର ଭାବ ପ୍ରକାଶ କରି ଶ୍ରୀପତି ମିଶ୍ର ତାଙ୍କର ଶିମଳା ଯାତ୍ରା ପୁସ୍ତକରେ ଉଲ୍ଲେଖ କରିଛନ୍ତି, ସେସମୟର ଶିମଳା ଯାତ୍ରା ସେମାନଙ୍କ ପକ୍ଷରେ ବହୁ ଶ୍ରମ ସାପେକ୍ଷ ଓ ବ୍ୟୟ ସାପେକ୍ଷ ଥିଲା । କିନ୍ତୁ ସ୍ୱଦେଶପ୍ରେମରେ ଉଦ୍‌ବୁଦ୍ଧ ସେମାନେ ଟିକିଏ ହେଲେ ବିଚଳିତ ହୋଇନଥିଲେ । ଓଡ଼ିଆ ଭାଷା ପ୍ରତି ସେମାନଙ୍କର କିପରି ଅଭିମାନ ଶ୍ରୀପତି ମିଶ୍ରଙ୍କ ନିମ୍ନୋକ୍ତ ଉକ୍ତିରୁ ଜଣାପଡ଼େ– ସଂସାରେ ଆମମାନଙ୍କ ବିବେଚନାରେ ଯାହା ଦୁର୍ଲ୍ଲଭ, ବରଂ ତାହା ତ୍ୟାଗ କରିବୁଁ, କିନ୍ତୁ ମାତୃଭାଷାର ସୁଗଠିତ ଅଙ୍ଗାବରଣୀର ଅଞ୍ଚଳରୁ ଖଣ୍ଡିଏ ସୂତ୍ରସୁଦ୍ଧା ଛିନ୍ନ କରିବାକୁ ଦେବୁ ନାହିଁ । ଏହିଥିରୁ ଜଣାଯିବ କି ଅସୀମ ମାତୃଭାଷା ଓ ସ୍ୱଦେଶପ୍ରେମ ସେମାନଙ୍କୁ ଉଦ୍‌ବୁଦ୍ଧ କରିଥିଲା ।

ସମ୍ବଲପୁରରେ ଭାଷା ଆନ୍ଦୋଳନ ସମ୍ପର୍କିତ ଏକ ସଂକ୍ଷିପ୍ତ ତାରିଖ ବିହୀନ ଉପସ୍ଥାପନା ଏ ସଂପର୍କିତ ସମସ୍ତ ଆଲୋଚନା ଓ ଗବେଷଣାର ମୂଳଭିତ୍ତି । ଏହି କାର୍ଯ୍ୟ ସେ କରି ନଥିଲେ ସମ୍ବଲପୁରରେ ଓଡ଼ିଆ ଭାଷା ଆନ୍ଦୋଳନର ଇତିହାସ ଲୁପ୍ତପ୍ରାୟ ହୋଇଥାନ୍ତା, ଏଥିରେ ଦ୍ୱିରୁକ୍ତିର ଅବକାଶ ନାହିଁ ।

ଶ୍ରୀପତି ମିଶ୍ରଙ୍କ ବର୍ଣ୍ଣନା ଶୈଳୀ ଓ ଭାଷା ବିନ୍ୟାସ ପାଠକମାନଙ୍କର ଚିତ୍ତହରଣ ନିମନ୍ତେ ସମ୍ପୂର୍ଣ୍ଣ ଭାବରେ ସକ୍ଷମ । ଶିମଳା ଯାତ୍ରା ପୁସ୍ତକ ୧୯୦୫ରେ ଲିଖିତ ଏବଂ ୧୯୧୮ରେ ପ୍ରକାଶିତ ହୋଇଥିବା ବେଳେ ସେହି କାଳରେ ତାଙ୍କର ବଳିଷ୍ଠ ଓ ବର୍ଣ୍ଣାଢ଼୍ୟ ଭାଷା ତଥା ଶବ୍ଦ ସଂଯୋଜନା ଯୁଗପତ୍ ବିସ୍ମୟ ସୃଷ୍ଟି କରେ । ବାଗ୍ମୀ ବିଶ୍ୱନାଥ କରଙ୍କ ଦ୍ୱାରା କଟକରେ ଉତ୍କଳ ସାହିତ୍ୟ ପ୍ରେସ୍‌ରେ ମୁଦ୍ରିତ ହୋଇ ଏହି ପୁସ୍ତକ ପ୍ରକାଶ ପାଇଥିଲା ।

ଏହି କାଳଜୟୀ ପୁସ୍ତକର ପ୍ରକାଶନ ପୂର୍ବରୁ ଓଡ଼ିଆ ଭାଷା ବିକାଶର ଅନ୍ୟତମ କର୍ଣ୍ଣଧାର ମଧୁସୂଦନ ରାଓ ଏହାର ପାଣ୍ଡୁଲିପି ପାଠ କରିଥିଲେ ଓ ସ୍ୱୀୟ ଅଭିମତ ପ୍ରଦାନ କରି ଲେଖିଥିଲେ, "I have read this manuscript (simla jatra) with great pleasure. There are very few books of this class in Oriya literature and the rank in it's class which may be assigned to this book is certainly high. The descriptions are lively and picturesque and the style is lucid and spirited... I strongly recommend it's publication and hope it will have a wide circulation."

ଦୁଇବର୍ଷ କାଳ ପ୍ରକାଶିତ ମାସିକ ପତ୍ରିକା ନବଯୁଗ ସମେତ ତାଙ୍କର ଲେଖାମାନ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଉଥିଲା । ଶିମଳା ଯାତ୍ରା ବ୍ୟତୀତ ଭ୍ରମଣ ବୃତ୍ତାନ୍ତର ପ୍ରତିବିମ୍ବ ଏବଂ ସମ୍ବଲପୁର ଅଞ୍ଚଳର ଗଡ଼ଜାତ ଶୀର୍ଷକ ଦୁଇଟି ପୁସ୍ତକ ସେ ଲେଖିଥିଲେ ମଧ୍ୟ ଶେଷୋକ୍ତ ଦୁଇଟିଯାକ ପୁସ୍ତକର ପାଣ୍ଡୁଲିପି ମଧ୍ୟ ଦୁଷ୍ପ୍ରାପ୍ୟ ।ତାଙ୍କ ରଚିତ ହରିଶ୍ଚନ୍ଦ୍ର ନାଟକ ସମ୍ବଲପୁର ରଜାବଖରୀରେ ମଞ୍ଚସ୍ଥ ହୋଇଥିଲେ ମଧ୍ୟ ପୁସ୍ତକାକାରରେ ପ୍ରକାଶିତ ହୋଇ ନଥିବା ଜଣାଯାଏ । ସେ ସମ୍ବଲପୁରର ଭାଷା ଆନ୍ଦୋଳନର ଇତିହାସକୁ ସଞ୍ଜୀବିତ କରି ରଖିପାରିଥିଲେ ମଧ୍ୟ ଅନେକ ନିଜସ୍ୱ କୃତି ଲୋପ ପାଇଗଲା, ଏହା ହିଁ ବିଡ଼ମ୍ବନା ।

### ସମ୍ବଲପୁରରେ ଭାଷା ଆନ୍ଦୋଳନ

୧୮୯୫ ଜାନୁୟାରୀ ୧୯ ତାରିଖରେ ସମ୍ବଲପୁରରେ ଓଡ଼ିଆ ଭାଷାର ଉଚ୍ଛେଦ କରାଯାଇ ହିନ୍ଦୀ ଭାଷାର ପ୍ରଚଳନ କରାଯାଇଥିଲା ଓ ବଳିଷ୍ଠ ଭାଷା ସୁରକ୍ଷା ଆନ୍ଦୋଳନର ପରିଣତି ସ୍ୱରୂପ ୧୯୦୩ରେ ଓଡ଼ିଆ ଭାଷାର ପୁନଃପ୍ରଚଳନ କରାଯାଇ ଥିଲା ।

ଏକ ଜନସଭାରେ ମନୋନୀତ ହୋଇ ମହନ୍ତ ବିହାରୀ ଦାସଙ୍କ ନେତୃତ୍ୱରେ ଏକ ୫ ଜଣିଆ ପ୍ରତିନିଧିଦଳ ବଡ଼ଲାଟ ଲର୍ଡ଼ କର୍ଜନଙ୍କ ସହ ସାକ୍ଷାତ ଓ ସ୍ମାରକପତ୍ର ପ୍ରଦାନ ନିମନ୍ତେ ଶିମଳା ଅଭିମୁଖେ ଯାତ୍ରା କଲେ । ଏହି ପ୍ରତିନିଧି ଦଳରେ ଶ୍ରୀପତି ମିଶ୍ରଙ୍କୁ ମଧ୍ୟ ସାମିଲ କରାଯାଇଥିଲା । ମହନ୍ତ ବିହାରୀ ଦାସ, ବଳଭଦ୍ର

ସୂପକାର, ବ୍ରଜମୋହନ ପଟ୍ଟନାୟକ, ମଦନ ମୋହନ ମିଶ୍ର ଓ ୩୦ ବର୍ଷ ବୟସ୍କ ଯୁବକ ଶ୍ରୀପତି ମିଶ୍ର ୧୯୦୧ ସେପ୍ଟେମ୍ବର ୧୧ ତାରିଖ ଦିନ ସମ୍ବଲପୁରରୁ ଯାତ୍ରାରମ୍ଭ କରି ୧୬ ତାରିଖ ଦିନ ଶିମଳାରେ ଶ୍ରୀଗଣେଶ ଚତୁର୍ଥୀ ଦିନ ପହଞ୍ଚିଲେ।

ଲର୍ଡ଼ କର୍ଜନ ସେହି ସମୟରେ ଶିମଳାସ୍ଥିତ ବଡ଼ଲାଟଙ୍କ ଶୈଳ ନିବାସ ଭାଇସ ରିଗାଲ ଲଜ୍‌ରେ ଅବସ୍ଥାପନ କରୁଥିଲେ। ୧୭ ତାରିଖ ଦିନ ସେମାନେ ଜାଣିବାକୁ ପାଇଥିଲେ ଯେ ଦୁଇଦିନ ପରେ ଫ୍ରେଜର୍ ସାହେବ ଏହି ସମସ୍ୟାର ଅନୁଧ୍ୟାନ ଲାଗି ସମ୍ବଲପୁର ଯାତ୍ରା କରିବେ । ଏହା ପରେ ଶିମଳାରୁ ୧୮ ତାରିଖ ଦିନ ପ୍ରତିନିଧି ଦଳ ପ୍ରତ୍ୟାବର୍ତ୍ତନ କରି ୨୪ ତାରିଖ ଦିନ ସମ୍ବଲପୁରରେ ପହଞ୍ଚିଲେ । ୧୯୦୧ର ଜନଗଣନା ରିପୋର୍ଟ ଭାଷା ଆନ୍ଦୋଳନ ପ୍ରତି ସହାୟକ ହୋଇଥିଲା । ଜୁନ ୨୭ ତାରିଖ ଦିନ ଫ୍ରେଜର ସାହେବ ସମ୍ବଲପୁରରେ ପହଞ୍ଚିଲେ ଓ ବିଭିନ୍ନ ସ୍ତରରେ ଆଲୋଚନା ପୂର୍ବକ ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃପ୍ରଚଳନ ନିମନ୍ତେ ସୁପାରିଶ କଲେ । ୧୯୦୨ ଜୁନ୍ ମାସରେ ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃପ୍ରଚଳନ ନିମନ୍ତେ ବିଜ୍ଞପ୍ତି ପ୍ରକାଶ ପାଇଲା ଏବଂ ୧୯୦୩ ଜାନୁୟାରୀ ପହିଲାରୁ ସମ୍ବଲପୁରରେ ଓଡ଼ିଶା ଭାଷା ପୁନଃ ସଂସ୍ଥାପିତ ହେବା ପରେ ୧୯୦୫ ଅକ୍ଟୋବର ୧୬ ତାରିଖ ଦିନ ବଙ୍ଗପ୍ରଦେଶ ଅନ୍ତର୍ଗତ ଓଡ଼ିଶା ଡିଭିଜନରେ ସାମିଲ ହେଲା ।

### ଫ୍ରେଜର ସାହେବ ଓ ତାଙ୍କର ଭୂମିକା

ସମ୍ବଲପୁରରେ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନର ସଫଳତା ସ୍ୱଳ୍ପ ଓଡ଼ିଆ ଜାଣିଥିବା ଓଡ଼ିଆ ଭାଷାପ୍ରେମୀ ଫ୍ରେଜର ସାହେବଙ୍କ ଆଗ୍ରହ ଓ ଆନ୍ତରିକତା ଯୋଗୁଁ ସମ୍ଭବ ହୋଇପାରିଥିଲା । ନଚେତ ବ୍ରିଟିଶ ଶାସନାଧୀନ କାଳରେ ଶାସକୀୟ ବା ପ୍ରଶାସନିକ ଭାଷା ବଦଳାଇ ଦେବା ସହଜ ନ ଥିଲା । ସେ ୧୯୦୧ରେ ସମ୍ବଲପୁର ଆସି ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃପ୍ରଚଳନ ନିମନ୍ତେ ସୁପାରିଶ କରିବା ପରେ ୧୯୦୨ରେ ଫ୍ରେଜର ପ୍ରିଣ୍ଟିଂ କମ୍ପାନୀ ଦ୍ୱାରା ଫ୍ରେଜର ପ୍ରେସ୍ ଏବଂ ଫ୍ରେଜର କ୍ଲବ ମଧ୍ୟ ପ୍ରତିଷ୍ଠିତ ହେଲା ।

ଫ୍ରେଜର ସାହେବ ନାମରେ ପରିଚିତ ସାର୍ ଏଣ୍ଡ୍ରିଉ ହେଣ୍ଡରସନ ଲିଥ୍ ଫ୍ରେଜର ୧୮୪୮ରେ ଜନ୍ମ ଗ୍ରହଣ କରିଥିଲେ । ୧୮୭୧ରେ ୨୩ ବର୍ଷ ବୟସରେ ସେ ଇଣ୍ଡିଆନ ସିଭିଲ ସର୍ଭିସ୍ (ଆଇ.ସି.ଏସ୍.) ଅଧିକାରୀ ଭାବରେ ସର୍ବପ୍ରଥମେ ବରଗଡ଼ର ସବଡିଭିଜନାଲ ଅଫିସର ଭାବରେ କାର୍ଯ୍ୟାରମ୍ଭ କରିଥିଲେ । ୧୮୮୧ରେ ଅବକାରୀ କମିଶନର ଓ ୧୮୮୭ରେ କୃଷି ନିର୍ଦ୍ଦେଶକ ପଦରେ ନିଯୁକ୍ତ ହେବା ପରେ ନାଗପୁରରେ ମଧ୍ୟପ୍ରଦେଶ (ସେଣ୍ଟ୍ରାଲ ପ୍ରଭିନ୍‌ସ)ର ଚିଫ୍ କମିଶନରଙ୍କ ସଚିବ ଓ ପରେ ୧୮୯୧ରେ କମିଶନର ପଦରେ ନିଯୁକ୍ତ ହୋଇଥିଲେ । ୧୮୯୮ରେ ସେ ଘରୋଇ ବିଭାଗର କାମଚଳା ସଚିବ ଓ ୧୮୯୯ରେ ଘରୋଇ ବିଭାଗର କାମଚଳା ସଚିବ ତଥା ୧୮୯୯ରେ ମଧ୍ୟପ୍ରଦେଶର ଚିଫ୍ କମିଶନର ପଦରେ ଅଧିଷ୍ଠିତ ହୋଇଥିଲେ ।

ଫ୍ରେଜର ସାହେବ ଦି ରାଜା ଏଣ୍ଡ ରୟତ୍ ପୁସ୍ତକରେ ସମ୍ବଲପୁରବାସୀଙ୍କ ସମ୍ବନ୍ଧରେ ବହୁବିଧ ପ୍ରସଙ୍ଗର ଅବତାରଣା କରିଛନ୍ତି । ଫ୍ରେଜର ସାହେବ ଅବସର ଗ୍ରହଣ କରି ଜନ୍ମଭୂମି ଇଂଲଣ୍ଡକୁ ପ୍ରତ୍ୟାବର୍ତ୍ତନ କରିବା ପରେ ୧୯୧୯ ଫେବୃୟାରୀ ମାସ ୨୬ ତାରିଖରେ ତାଙ୍କର ପରଲୋକ ପ୍ରାପ୍ତି ଘଟିଥିଲା । ଏଥିପୂର୍ବରୁ ୧୯୧୮ରେ ଶିମଳା ଯାତ୍ରା ପୁସ୍ତକ ପ୍ରକାଶ ପାଇଥିଲା ।

ଏହି ଯାତ୍ରା ଥିଲା ଏକ ସଫଳ ଯାତ୍ରା । ଭାଷାର ସୁରକ୍ଷା ନିମନ୍ତେ ଏଭଳି କଷ୍ଟ ସ୍ୱୀକାର କରିବା ଥିଲା ବିରଳ ଘଟଣା । ଶିମଳାରେ ସମ୍ବଲପୁରର ପ୍ରତିନିଧିମାନଙ୍କୁ ଦେଖି ଚିପ୍ କମିଶନରଙ୍କ ସଚିବ ଏଚ୍.ଏ.କ୍ରମ୍ପ ସାହେବ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ସେମାନେ କେବଳ ତୀର୍ଥାଟନରେ ଯାଇ ନଥିଲେ କିମ୍ବା କାହାରିଠାରୁ ଗସ୍ତ ଖର୍ଚ୍ଚ ନେଇ ନଥିଲେ ।

### ଭାଷା ଆନ୍ଦୋଳନ ପରେ

ସମ୍ବଲପୁରରେ ଭାଷା ସୁରକ୍ଷା ଆନ୍ଦୋଳନର ସଫଳତା ସମଗ୍ର ଓଡ଼ିଶାର ଆଖି ଝଲସାଇ ଦେଇଥିଲା । କଟକ ଓ ବ୍ରହ୍ମପୁର ଅଞ୍ଚଳରେ ନବୀନ ଜାଗରଣ ସୃଷ୍ଟି ହୋଇଥିଲା । ଏହି ସଫଳତା ଥିଲା ଉତ୍କଳ ସମ୍ମିଳନୀ ଗଠନର ମୂଳଉତ୍ସ । ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃପ୍ରଚଳନ ପରେ ଉତ୍କଳ ସମ୍ମିଳନୀ ଗଠିତ ହୋଇଥିଲା ଓ ଏହି ସଂଗଠନ ଓଡ଼ିଆ ଭାଷାର ସୁରକ୍ଷା ତଥା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦିଗରେ ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରିଥିଲା । ସମ୍ବଲପୁରର ନିଜସ୍ୱ ନେତୃତ୍ୱରେ ପରିଚାଳିତ ଏହି ଆନ୍ଦୋଳନ ସମ୍ପର୍କରେ ଡକ୍ଟର ହରେକୃଷ୍ଣ ମହତାବ ଲେଖିଛନ୍ତି ସମ୍ବଲପୁରରେ ଓଡ଼ିଆ ଭାଷାର ପ୍ରବର୍ତ୍ତନ ପାଇଁ ସମ୍ବଲପୁର ନିଜେ ହିଁ ନେତୃତ୍ୱ ନେଇଛି । ସେ ନେତୃତ୍ୱ ଅନ୍ୟ କେଉଁଆଡୁ ଆସିନାହିଁ । ଏହା ହିଁ ଓଡ଼ିଆ ଜାତିର ଇତିହାସରେ ସମ୍ବଲପୁରର ଗୌରବମୟ ସ୍ଥାନ ।

ଶ୍ରୀପତି ମିଶ୍ରଙ୍କ କୃତଜ୍ଞତା ଭାବର ବହୁଳ ନିଦର୍ଶନ ଶିମଳା ଯାତ୍ରା ପୁସ୍ତକରେ ପ୍ରକାଶ ପାଇଛି । ବ୍ରଜମୋହନ ପଟ୍ଟନାୟକ

୧୯୦୭ରେ କଲିକତା କୃଷି ଶିଳ୍ପ ପ୍ରଦର୍ଶନୀକୁ ସମ୍ବଲପୁର ଜିଲ୍ଲାବୋର୍ଡ଼ର ପ୍ରତିନିଧି ଭାବରେ ଯାଇଥିଲେ । ସେଠାରେ ସେ ବି ସୂଚିକା ରୋଗରେ ଆକ୍ରାନ୍ତ ହୋଇ ଇହଲୀଳା ସମ୍ବରଣ କରିଥିଲେ । ଶ୍ରୀପତି ମିଶ୍ର ଶିମଳା ଯାତ୍ରା ପୁସ୍ତକକୁ ବ୍ରଜମୋହନ ପଟ୍ଟନାୟକଙ୍କ ସ୍ମୃତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ ଏବଂ ପରଲୋକଗତ ବ୍ରଜମୋହନ ପଟ୍ଟନାୟକଙ୍କ ପ୍ରତି ଶୀର୍ଷକରେ ଏକ ମର୍ମସ୍ପର୍ଶୀ ଉତ୍ସର୍ଗପତ୍ର ପ୍ରକାଶ କରିଥିଲେ ।

ଉଭୟ ଇଂରାଜୀ ଏବଂ ଓଡ଼ିଆ ଭାଷାରେ ତାଙ୍କର ବ୍ୟୁତ୍ପତ୍ତି ରହିଥିଲା । ଭାଷା ଆନ୍ଦୋଳନ ପରବର୍ତ୍ତୀ କାଳରେ ମଧ୍ୟ ସେ ନିୟମିତ ଲେଖାଲେଖି କରୁଥିଲେ ଓ ସଭାସମିତିରେ ଯୋଗଦାନ କରୁଥିଲେ । ଏହି ସମୟରେ ଶ୍ରୀପତି ମିଶ୍ର ବହୁ ସଂଘର୍ଷମୟ, ନିଃସ୍ୱାର୍ଥପର ଓ ନିରଳସ କାର୍ଯ୍ୟକଳାପରେ ଜଡ଼ିତ ରହି ସାମାଜିକ ଦାୟିତ୍ୱ ନିର୍ବାହ କରିବା ସହ ଆଜୀବନ ସାଧନାର ସୋପାନରେ ରହିଲେ । ସେ ବିଭିନ୍ନ ଅଞ୍ଚଳ ପରିଭ୍ରମଣ କରି ଜ୍ଞାନାର୍ଜନ ଓ ସାମାଜିକ ସ୍ଥିତି ସମ୍ପର୍କରେ ଅନୁଧ୍ୟାନ କରିଥିଲେ । ଏହି ସମୟରେ ତାଙ୍କର ଅନେକ ସଂକ୍ଷିପ୍ତ ଭ୍ରମଣ ବୃତ୍ତାନ୍ତ ଅଧୁନା ଲୁପ୍ତ ବିଭିନ୍ନ ପତ୍ରିକାରେ ପ୍ରକାଶ ପାଇଥିଲା ।

୧୯୦୫ ସେପ୍ଟେମ୍ବର ମାସରେ ସମ୍ବଲପୁରରେ ଉତ୍କଳ ଦର୍ପଣ ପ୍ରେସ ପ୍ରତିଷ୍ଠିତ ହୋଇଥିଲା । ପଣ୍ଡିତ ଶୁକଦେବ ପଣ୍ଡା, ଶ୍ୟାମସୁନ୍ଦର ପୂଜାରୀ, ନଟବର ପୂଜାରୀ ଓ ମହନ୍ତ ବିହାରୀ ଦାସଙ୍କ ଜ୍ୟେଷ୍ଠଭ୍ରାତା ବଳରାମ ତ୍ରିପାଠୀ ଅଂଶଧନ କ୍ରୟପୂର୍ବକ ଏହି ପ୍ରେସ୍ ପ୍ରତିଷ୍ଠା କରିଥିଲେ । ସେହି ସମୟରେ ଫ୍ରେଜର ପ୍ରିଣ୍ଟିଂ କମ୍ପାନୀ ସମ୍ବଲପୁରର ଏକମାତ୍ର ମୁଦ୍ରଣାଳୟ ଥିଲା । ଉତ୍କଳ ଦର୍ପଣ ପ୍ରେସରୁ ଶ୍ରୀପତି ମିଶ୍ରଙ୍କ ସମ୍ପାଦନାରେ ପ୍ରଥମ ଦ୍ୱିଭାଷୀ ପତ୍ରିକା ଉତ୍କଳ ଦର୍ପଣ ପ୍ରକାଶ ପାଇଲା । ଏହି ପତ୍ରିକାରେ ଇଂରାଜୀ ଏବଂ ଓଡ଼ିଆ ଭାଷାରେ ଲେଖା ଓ ସମ୍ବାଦମାନ ପ୍ରକାଶ ପାଉଥିଲା । ସମ୍ବଲପୁରର ପ୍ରଥମ ସାମ୍ବାଦିକ ଭାବରେ ଶ୍ରୀପତି ମିଶ୍ର ପରିଗଣିତ ହେଉଥିଲେ । ଜଣେ ନିର୍ଭୀକ ଓ ଦକ୍ଷ ସାମ୍ବାଦିକ ଭାବରେ ସେ ପ୍ରଶଂସା ଭାଜନ ହୋଇଥିଲେ । ଶ୍ରୀପତି ମିଶ୍ର ଅତ୍ୟନ୍ତ ଦୁଃସାହସୀ, ପରାକ୍ରମୀ ତଥା ସ୍ୱାଭିମାନୀ ଥିଲେ ।

ବହୁ ଘାତ ପ୍ରତିଘାତ ମଧ୍ୟରେ ୧୯୦୫ରୁ ୧୯୦୮ ପର୍ଯ୍ୟନ୍ତ ଉତ୍କଳ ଦର୍ପଣ ନିୟମିତ ଭାବରେ ପ୍ରକାଶ ପାଇଥିଲା । ତେବେ ଅନେକ ମାଲିମକଦ୍ଦମାରେ ଛନ୍ଦି ହୋଇଗଲେ ଶ୍ରୀପତି ମିଶ୍ର । ଉପଯୁକ୍ତ ଓ ଆବଶ୍ୟକୀୟ ପ୍ରୋତ୍ସାହନ ଅଭାବରୁ କ୍ରମେ ବନ୍ଦ ହୋଇଗଲା ଉତ୍କଳ ଦର୍ପଣ । ଜନସାଧାରଣଙ୍କୁ ଆଉ ସମାଜର ଛବି ଦେଖାଇ ପାରିଲା ନାହିଁ ।

ଏହାପରେ ସେ ଗାଙ୍ଗପୁର ଶାସନର ନିମନ୍ତ୍ରଣ ଓ ଆଗ୍ରହ କ୍ରମେ ସୁନ୍ଦରଗଡ଼ ଯାଇ ଶିକ୍ଷକ ଭାବରେ କାର୍ଯ୍ୟ କଲେ । ପୂର୍ବରୁ ସୋନପୁରର ଶିକ୍ଷା ପରିଦର୍ଶକ ଭାବରେ ଶିକ୍ଷା କ୍ଷେତ୍ରରେ ତାଙ୍କର ସୁନାମ ରହିଥିଲା । ଏହି ସମୟରେ ସେ ସୁନ୍ଦରଗଡ଼ରେ ଅବସ୍ଥାନପୂର୍ବକ ଗାଙ୍ଗପୁରର ନାବାଳକ ରାଜାଙ୍କର ଗୃହଶିକ୍ଷକ ଦାୟିତ୍ୱ ନିର୍ବାହ କରୁଥିଲେ । ଏହି କାଳରେ ସେ ବହୁ ଗଡ଼ଜାତ ଅଞ୍ଚଳ ପରିଭ୍ରମଣ କରି ପ୍ରଶାସନିକ ବ୍ୟବସ୍ଥା ଓ ଜନଜୀବନ ବିଶେଷତଃ ଆଦିବାସୀ ଜୀବନଯାତ୍ରା ସମ୍ପର୍କିତ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିଥିଲେ । ଗାଙ୍ଗପୁର ରାଜ୍ୟରେ ପ୍ରାଥମିକ ଶିକ୍ଷାର ବିକାଶ କ୍ଷେତ୍ରରେ ସେ ବହୁବିଧ କାର୍ଯ୍ୟ କରିଥିଲେ ।

୧୯୨୨ରେ ସମ୍ବଲପୁରରେ ଶ୍ରୀପତି ମିଶ୍ରଙ୍କ ପିତା ବଳରାମ ମିଶ୍ରଙ୍କ ଦେହାନ୍ତ ହେଲା । ପିତୃ ବିୟୋଗ ଜନିତ କାରଣରୁ ସେ ସମ୍ବଲପୁରରୁ ଫେରି ଆସିଲେ । ସେହି ସମୟରେ ଫ୍ରେଜର୍ ପ୍ରେସ୍ ଚାଲୁଥିଲା ଏବଂ ସମ୍ବଲପୁର ସମେତ ଅନ୍ୟାନ୍ୟ ଅଞ୍ଚଳରେ ମଧ୍ୟ ମୁଦ୍ରଣ କ୍ଷେତ୍ରରେ ଖ୍ୟାତି ଅର୍ଜନ କରିଥିଲା । ମହନ୍ତ ବିହାରୀ ଦାସ ଫ୍ରେଜର ପ୍ରିଣ୍ଟିଂ କମ୍ପାନୀର ନିର୍ଦ୍ଦେଶକ ଥିଲେ । ସେ ଶ୍ରୀପତି ମିଶ୍ରଙ୍କୁ ଡାକି ଆଣି ଫ୍ରେଜର ପ୍ରେସ୍‌ର ପରିଚାଳନା ଦାୟିତ୍ୱ ଅର୍ପଣ କଲେ । ଶ୍ରୀପତି ମିଶ୍ରଙ୍କ ଘର ନିକଟରେ ପ୍ରତିଷ୍ଠିତ ହୋଇଥିଲା ଫ୍ରେଜର୍ ପ୍ରେସ୍ । ପୁନଶ୍ଚ ଫ୍ରେଜର୍ ନାମ ପ୍ରତି ମଧ୍ୟ ଶ୍ରୀପତି ମିଶ୍ରଙ୍କର ଆସକ୍ତି ରହିଥିଲା । ମହନ୍ତ ବିହାରୀ ଦାସ ନିଜେ ଜଣେ ସୁସାହିତ୍ୟିକ ହୋଇଥିଲେ ମଧ୍ୟ ଶିମଳା ଯାତ୍ରାର ବିବରଣୀ ଲେଖି ନଥିଲେ ଓ ସେହି ଦାୟିତ୍ୱ ଶ୍ରୀପତି ମିଶ୍ର ନିର୍ବାହ କରିଥିଲେ ଓ ଫଳସ୍ୱରୂପ କାଳଜୟୀ ଭ୍ରମଣ ବୃତ୍ତାନ୍ତ ଶିମଳା ଯାତ୍ରା ପ୍ରଣୀତ ହୋଇଥିଲା ।

ଶ୍ରୀପତି ମିଶ୍ର ଦୀର୍ଘ ଆଠବର୍ଷ କାଳ ଫ୍ରେଜର ପ୍ରେସ୍‌ର ପରିଚାଳନା ଦାୟିତ୍ୱ ସମ୍ପନ୍ନ କରିଥିଲେ । ସେ ଆମାଶୟ ରୋଗରେ ପୀଡ଼ିତ ହୋଇ କାର୍ଯ୍ୟରୁ ଅବ୍ୟାହତି ନେଇ ସମ୍ବଲପୁର ବାସ ଭବନରେ ବିଶ୍ରାମ ଗ୍ରହଣ କଲେ । ସମସ୍ତ ପ୍ରକାର ଚିକିତ୍ସା ସତ୍ତ୍ୱେ ତାଙ୍କର ଏହି ବିଶ୍ରାମ ମହାବିଶ୍ରାମରେ ପରିଣତ ହେଲା । ୧୯୩୦ ଅଁଳା ନବମୀ (ଅକ୍ଟୋବର ୩୦) ଦିନ ତାଙ୍କର ମହାପ୍ରୟାଣ ଘଟିଲା ଓ ଏଥିସହ ସମ୍ବଲପୁରରେ ଏକ ଯୁଗାବସାନ ଘଟିଲା । ପୂର୍ବରୁ ଅନ୍ୟ ଶିମଳାଯାତ୍ରୀଙ୍କର ଦେହାବସାନ ଘଟିସାରିଥିଲା ।

ବଡ଼ବଜାର,
ସମ୍ବଲପୁର– ୭୬୮୦୦୩

# ଶିଶୁ ସାହିତ୍ୟିକ ରାମକୃଷ୍ଣ ନନ୍ଦ

କୃଷ୍ଣଚନ୍ଦ୍ର ସୁଆର

ଓଡ଼ିଆ ଶିଶୁ ସାହିତ୍ୟିକୁ ମାର୍ଗ ପ୍ରଦର୍ଶନ କରିଥିବା ବରେଣ୍ୟ ସାହିତ୍ୟିକମାନଙ୍କ ମଧ୍ୟରେ ସ୍ୱର୍ଗତ ରାମକୃଷ୍ଣ ନନ୍ଦ ଥିଲେ ଅନ୍ୟତମ । ସେ ଥିଲେ ଜଣେ ନିରବସାଧକ । ଦୀର୍ଘ ଅର୍ଦ୍ଧଶତାବ୍ଦୀରୁ ଉର୍ଦ୍ଧ୍ୱକାଳର କଠୋର ଅଧ୍ୟବସାୟ ବଳରେ ସେ ଶିଶୁ କବିତା, ଗଳ୍ପ, ବିଜ୍ଞାନ ଭିତ୍ତିକ ଗଳ୍ପ, ଜୀବନୀ, ଆତ୍ମ ଜୀବନୀ, ଭାଷା ଓ ଲିପି ସମ୍ବନ୍ଧୀୟ ପ୍ରବନ୍ଧ, କୋଷଗ୍ରନ୍ଥ, ସଂକଳନ ଓ ସମ୍ପାଦନା, ପାରିପାର୍ଶ୍ୱିକ ସମସ୍ୟା ସମ୍ପର୍କିତ ପ୍ରବନ୍ଧ ପ୍ରଭୃତି ରଚନା କରି ଓଡ଼ିଆ ସାହିତ୍ୟ ଇତିହାସରେ ଏକ ସ୍ୱତନ୍ତ୍ର ଆସନର ଅଧିକାରୀ ହୋଇପାରିଛନ୍ତି । କେବଳ ଜଣେ ଆଦର୍ଶ ଶିକ୍ଷକ, ଶିଶୁ ସାହିତ୍ୟିକ, ପାଠ୍ୟ ପୁସ୍ତକ ରଚୟିତା ଭାବରେ ନୁହେଁ, ବହୁ ଉତ୍ତମ ଗୁଣର ଅଧିକାରୀ ଭାବେ ସେ ଥିଲେ ସବୁରି ପ୍ରିୟ ଓ ପରିଚିତ । ତାଙ୍କ ଲେଖନୀକୃତ ପ୍ରାର୍ଥନା ସଙ୍ଗୀତ– 'ଆହେ ଦୟାମୟ ବିଶ୍ୱ ବିହାରୀ' ସରଳ ତରଳ ଭାଷା ଓ ଭାବ ଯୋଗୁଁ ଏହାର ପ୍ରତ୍ୟେକ ପଂକ୍ତି ଶିକ୍ଷଣୀୟ ଓ ଏହି କବିତା ପାଇଁ ଓଡ଼ିଶାର ଘରେ ଘରେ ସେ ପରିଚିତ । ଆଜି ଯଦି ତାଙ୍କୁ ଚିର ଅମର କରିପାରିଛି ତେବେ ଏଇ କବିତାର ସର୍ଜନା ପାଇଁ ବାରିପଦାରେ ଶିକ୍ଷକତା କରୁଥିବା ବେଳେ ଏଇଟି ସେ ୧୯୩୩ ମସିହାରେ ରଚନା କରିଥିଲେ ।

ଏହି ପୁଣ୍ୟାତ୍ମାଙ୍କର ଆବିର୍ଭାବ ହୁଏ ଅବିଭକ୍ତ କଟକ ଜିଲ୍ଲାର ଗୋବିନ୍ଦପୁର ଥାନା ଅନ୍ତର୍ଗତ ବାଇରୋଇ ଗାଁର ଏକ ନିମ୍ନ ମଧ୍ୟବିତ୍ତ ପରିବାରରେ ୧୯୦୬ ମସିହା ଫେବୃଆରୀ ମାସ ୧୫ ତାରିଖରେ । ତାଙ୍କ ପିତାଙ୍କ ନାମ ମଧୁସୂଦନ ନନ୍ଦ ଓ ମାତାଙ୍କ ନାମ ଲକ୍ଷ୍ମୀଦେବୀ । ଫୁଲନଖରାଠାରୁ ନିଆଳି ରାସ୍ତାରେ ୧୭ କି.ମି. ଗଲେ ବାଇରୋଇ ଗାଁ ପଡେ । ରାମକୃଷ୍ଣଙ୍କ ପିତା ମଧୁସୂଦନ ଥିଲେ ଜଣେ ଶିକ୍ଷକ । ସେ ଚାଟଶାଳୀରେ ଶିକ୍ଷା ପରେ ପରେ କଣ୍ଟାପଡା ନିମାପଡା ଓ ଭିଙ୍ଗାରପୁରରେ ନିମ୍ନ ପ୍ରାଥମିକ ଏବଂ ମାଇନର ଶିକ୍ଷା ସମାପ୍ତି କରିଥିଲେ । ଛାତ୍ରାବସ୍ଥାରୁ ସେ ବୌଦ୍ଧିକ ଉପଲବ୍ଧି ବ୍ୟତୀତ ଚିତ୍ରାଙ୍କନ, ଅଭିନୟ, ଆବୃତ୍ତି ପ୍ରଭୃତିରେ ତାଙ୍କର ଦକ୍ଷତା ପ୍ରଦର୍ଶନ କରିଥିଲେ । ୧୯୨୧ ମସିହା ବେଳକୁ ସେ ଜଣେ କୃତି ଛାତ୍ରଭାବେ ନିଜକୁ ପ୍ରତିଷ୍ଠିତ କରିଥିଲେ ହେଁ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ଇଂରେଜ ସରକାରଙ୍କ ବିରୁଦ୍ଧରେ ଧାରଣା, ପ୍ରତିବାଦ, ପଟୁଆର ଆଦି ସଙ୍ଗଠନ କରିଥିଲେ । କୁଦାନଗରୀ ଆଶ୍ରମ କଟକ ସ୍ୱରାଜ୍ୟାଶ୍ରମ ଓ ଜଗତସିଂହପୁର ଅଳକାଶ୍ରମରେ ରହି ସ୍ୱାଧୀନତା ସଂଗ୍ରାମରେ 'ବାନର ସେନା' ଭୂମିକା ଗ୍ରହଣ କରିଥିଲେ । ଶେଷରେ ସତ୍ୟବାଦୀ ଜାତୀୟ ବନ ବିଦ୍ୟାଳୟରେ ଛାତ୍ର ଭାବରେ ରହି ତତ୍କାଳୀନ ଓଡ଼ିଶାର ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ସମ୍ପର୍କରେ ଆସିଥିଲେ । ଅଳକାଶ୍ରମରେ ରହିଥିଲା ବେଳେ ଉଦୟନାଥ ଷଡଙ୍ଗୀଙ୍କ ସଙ୍ଗେ ତାଙ୍କର ବନ୍ଧୁତା ସ୍ଥାପନ ହୋଇଥିଲା । 'ଅଳକା' ନାମକ ଏକ ହାତଲେଖା ପତ୍ରିକା ସେଠାରୁ ପ୍ରକାଶ କରାଯିବାରେ ସେ ଏହାର ପ୍ରଥମ ସଂଖ୍ୟାଟିକୁ ଆମୂଳଚୂଳ ସୁନ୍ଦର ଅକ୍ଷରରେ ଲେଖିଥିଲେ । କୃତିଛାତ୍ର ଭାବରେ ସେ ବୃତ୍ତିଲାଭ କରିଥିଲେ । ରେଭେନ୍ସା କଲିଜିଏଟ୍ ସ୍କୁଲରୁ ସେ ମାଟ୍ରିକ୍ ପରୀକ୍ଷାରେ ପ୍ରଥମ ହୋଇ ପାସ୍ କରିଥିଲେ । ସେଠାରେ ଅଷ୍ଟମ ଶ୍ରେଣୀରେ ଛାତ୍ର ଥିଲାବେଳେ ସ୍କୁଲର ହାତଲେଖା ପତ୍ରିକା 'ଚନ୍ଦ୍ରିକା'ରେ ନିୟମିତ ଲେଖାଲେଖି କରୁଥିଲେ । ଉଚ୍ଚଶିକ୍ଷା ଲାଭ  କରିଥିଲେ ରେଭେନ୍ସା କଲେଜରେ । ତାଙ୍କର ଜନୈକ ବନ୍ଧୁ କୃଷ୍ଣ ଚନ୍ଦ୍ର ପ୍ରଧାନ ପୁସ୍ତକ ବ୍ୟବସାୟ କରନ୍ତି, ସେ ମଧୁସୂଦନ ରାଓଙ୍କ ବାଳବୋଧ ଓ ସାହିତ୍ୟ ପ୍ରସଙ୍ଗ ବହିର ଟୀକା ଲେଖିବାକୁ କହିବାରୁ ସେ ତାହା ଲେଖି ଦେଇଥିଲେ । ସେ ବି.ଏ ଓ ଏମ୍.ଏ. ପଢୁଥିଲା ବେଳେ ରେଭେନ୍ସାଭିଆନ ଓ ସହକାରରେ ତୁଳସୀ ଦାସଙ୍କ ଜୀବନୀ ଓ ଦୋହା ସମ୍ପର୍କରେ ମାଇନର ଶ୍ରେଣୀ ଟ୍ରାନ୍ସଲେସନ ଓ ମାଥ୍ୟୁ ଆରନଲଡଙ୍କର ପଦ୍ୟାନୁବାଦର ପାଣ୍ଡୁଲିପିମାନ ପ୍ରସ୍ତୁତ କରିଥିଲେ । ବାରିପଦାରେ ଶିକ୍ଷକତା କରିବା ସମୟରେ ଦ୍ୱିତୀୟ, ତୃତୀୟ ଶ୍ରେଣୀ ପାଇଁ ସାହିତ୍ୟ

ସୋପାନ, ୪ର୍ଥ, ୫ମ ଶ୍ରେଣୀ ପାଇଁ ସାହିତ୍ୟ ବୋଧ ପ୍ରଭୃତି ପାଠ୍ୟପୁସ୍ତକ ରଚନା କରିଥିଲେ । ତାଙ୍କ ରଚିତ ରଚନା ଦର୍ପଣ, ସାହିତ୍ୟ ସୋପାନର ୩ୟ ଓ ୪ର୍ଥ ଖଣ୍ଡ, ପାଠ ସୋପାନର ୧ମ, ୨ୟ ଓ ୩ୟ ଭାଗ ପାଠ୍ୟ ପୁସ୍ତକ ରୂପେ ଖୁବ୍ ଆଦୃତ ହୋଇଥିଲା । ତାଙ୍କ ରଚିତ ତୁଳସୀ ଦାସ ପୁସ୍ତକ ଅଷ୍ଟମ ଶ୍ରେଣୀର ଅତିରିକ୍ତ ପାଠ୍ୟପୁସ୍ତକ ରୂପେ ମନୋନୀତ ହୋଇଥିଲା ।

'ଝୁମୁକା' ପ୍ରତି କୋମଳମତି ଶିଶୁମାନଙ୍କର ଆକର୍ଷଣ ବେଶୀ । ରଙ୍ଗ ବେରଙ୍ଗ ହୋଇଥିବାରୁ ତା' କଳେବର ପ୍ରତି ମନଲୋଭା ଲାଗେ । ଶବ୍ଦ ରଙ୍ଗର ସମାହାରରେ ଝୁମୁକାର ସୃଷ୍ଟି ହେଲାଭଳି ରାମକୃଷ୍ଣ ରଚନା କରିଥିବା 'ଝୁମୁକା' ଶିଶୁମାନଙ୍କର ଆଦରର ଗଣ୍ଠିଧନ । ଝୁମୁକାର ପ୍ରଥମ ପୃଷ୍ଠା ଖୋଲିଲେ 'ଚକା ଚକା ଭଉଁରୀ, ମାମୁଁଘର ଚଉଁରୀ' ଭଳି ସୁମଧୁର ପଦ୍ୟାବଳୀ ଉପରେ ଆଖିପଡେ ।

କବିଙ୍କ ରଚିତ କବିତା ସଂକଳନ 'ଝୁମୁକା' ହେଉଛି ବାସ୍ତବରେ ଏକ ଶ୍ରେଷ୍ଠ କୃତି । ୧୯୮୦ ମସିହାରେ ସେ ଏହି ଗ୍ରନ୍ଥ ପାଇଁ ଶ୍ରେଷ୍ଠ ଶିଶୁ ସାହିତ୍ୟିକ ରୂପେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଥିଲେ । ଏଥିରେ ୧୦୭ଟି ଶିଶୁ କବିତା ସ୍ଥାନିତ ହୋଇଛି । ଏଥିମଧ୍ୟରୁ ଅଧିକାଂଶ କବିତା ପ୍ରାଥମିକ ଶ୍ରେଣୀର ପାଠ୍ୟପୁସ୍ତକମାନଙ୍କରେ ପ୍ରକାଶିତ ହୋଇଥିଲା । କବିତାଗୁଡିକ କୌତୁହଳୋଦ୍ଦୀପକ, ଦେଶାତ୍ମବୋଧକ, ଭକ୍ତିମୂଳକ, ପ୍ରକୃତି ବର୍ଣ୍ଣନାତ୍ମକ, ଗଳ୍ପାଶ୍ରୟୀ, ନୀତି ଗର୍ଭକ, ବିବିଧ ଓ ଶିଶୁ ସଙ୍ଗୀତ ପର୍ଯ୍ୟାୟର ଅଟେ । କବିତାର ସହଜ ଛନ୍ଦ, ସରଳ ଭାଷା ଓ ଏଥିରେ ସନ୍ନିବେଶିତ ହୋଇଥିବା ନୀତିଶିକ୍ଷା ଯୋଗୁଁ ପିଲାମାନଙ୍କୁ ଭାରି ମନଛୁଆଁ ଲାଗେ । 'ସାରଥିର ଜନ୍ମଦିନ' କବିତାକୁ ଆମେ ଉଦାହରଣ ସ୍ୱରୂପ ନେଲେ ଜାଣି ପାରିବା କବି କିପରି ଶିକ୍ଷକ ଭାବରେ ପିଲାମାନଙ୍କୁ ବୁଝାଇ ଦେବାକୁ ଚେଷ୍ଟା କରିଛନ୍ତି ଯେ ଗୁରୁଜନଙ୍କ କଥା ନମାନିଲେ ହଇରାଣ ହରକତ ହେବାକୁ ପଡେ । ସାରଥି ନାମକ ଜନୈକ ବାଳକ ତା'ର ଜନ୍ମଦିନ ପାଳିବାକୁ ଯାଇ କିପରି ବିଶୃଙ୍ଖଳିତ ଓ ସ୍ୱେଚ୍ଛାଚାରୀ ହୋଇ ଦୁଃଖ କଷ୍ଟର ଶରବ୍ୟ ହୋଇଛି । କବି ଅତି ସରଳ ଭାବରେ ବର୍ଣ୍ଣନା କରିବାକୁ ଯାଇ କହନ୍ତି–

'ତହୁଁ ସେ ମନରେ ବିଚାରେ', ଏବେ ପାଇଲି ଦଶା
ଖାଇଲି କଚଡା, କାମୁଡା, ଚିରିଗଲା ମୋ ଲୁଗା ।
X X X
ଆଉ ନ ହୁଡିବି ଏଣିକି ଗୁରୁଜନ ବଚନ,
ହୁଡିଲେ ନିଶ୍ଚେ ମୁଁ ଭୋଗିବି ପଦେ ପଦେ କଷଣ ।

ଶିଶୁ ପ୍ରାଣରେ ଜାତୀୟତାବୋଧ ସଞ୍ଚାର କରାଇବା ପାଇଁ ସେ ମୋ ଗାଁ, ଏଇ ମୋ ଜନମ ଭୂଇଁ, ଏଇ ଆମ ଦେଶରେ ଭଳି କେତେକ କବିତା ରଚନା କରିଛନ୍ତି । ତନ୍ମଧ୍ୟରୁ 'ଓଡ଼ିଶା ମୋର ଦେଶ'ରୁ ପଂକ୍ତିଟିଏ ଦ୍ରଷ୍ଟବ୍ୟ–

'ଓଡ଼ିଆ ମୁହିଁ ଓଡ଼ିଆ ମୁହିଁ ଓଡ଼ିଶା ମୋର ଦେଶ,
ଏହି ଦେଶରେ ଜନମ ମୋର ଏଇ ଦେଶରେ ବାସ ।
X X X
ଏଇ ଦେଶର ପାଣି ପବନେ ଶରୀର ହେଲା ଗଢା
ଏଇ ଦେଶର ଚାଟଶାଳୀରେ ଶିଖିଲୁ ପାଠ ପଢା
ଏଇ ଦେଶର ସେବାରେ ଆମ ଜୀବନ ହେଉ ଶେଷ
ଓଡ଼ିଆ ଆମେ ଓଡ଼ିଆ ଆମେ ଓଡ଼ିଶା ଆମ ଦେଶ' ।

ଏତଦ୍‌ବ୍ୟତୀତ ସହଜେ କିଏ ପରତେ ଯିବ, କ୍ରୋଧ, ସେତିକି ରହିବ କାଳକାଳକୁ ପ୍ରଭୃତି କବିତା ନୀତି ଉପଦେଶରେ ଭରପୂର । ସେ କହନ୍ତି ମଣିଷ ଜୀବନ କ୍ଷଣସ୍ଥାୟୀ । ଯେ ଦେଶ ପାଇଁ ଭଲ କାମ କରେ ଓ ନିଃସହାୟ ଲୋକଙ୍କୁ ସାହାଯ୍ୟ କରେ ସେ ଚିରକାଳ ସ୍ମରଣୀୟ ହୋଇ ରହେ । ମଣିଷ ଜନ୍ମ ହେଲାଭଳି ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ଯେତେ ବଡ ଲୋକ ହେଉ ତାଙ୍କୁ ଦିନେ ମରିବାକୁ ପଡିବ । ମଣିଷ ମୃତ୍ୟୁ ପଥର ଯାତ୍ରୀ ହୋଇ ମଧ ଲୋଭ ମୋହ ଭୁଲି ପାରେନି । ତେଣୁ ତାଙ୍କୁ ସେ ସମସ୍ତ ପରିତ୍ୟାଗ କରି ତା'ଜୀବନ ସୌରଭପୂର୍ଣ୍ଣ ହେବା ଉଚିତ । କବିଙ୍କ ଭାଷାରେ–

'ଯେତେ ବଡଲୋକ ହେଉ ମରିବ
ସବୁ ତାର ଯିବ ମାଟି ତଳକୁ
ଯେତିକି ସେ ଭଲ କାମ କରିବ
ସେତିକି ରହିବ କାଳ କାଳକୁ' ।

ବେଳେ ବେଳେ ନିସର୍ଗ ବସ୍ତୁର ଆକୃତି ଓ ପ୍ରକୃତି ଅନୁରୂପ ଛନ୍ଦର ସଂଯୋଜନା, କବିତାକୁ ପାଠକୀୟ ଶ୍ରଦ୍ଧାଭାଜନ କରିବା ସଙ୍ଗେ ସଙ୍ଗେ କବି ପ୍ରତିଭାର ବୈଶିଷ୍ଟ୍ୟ ପ୍ରତିପାଦନ କରେ । 'ଝରଣା' କବିତାର ପଂକ୍ତିଟିଏ ଦ୍ରଷ୍ଟବ୍ୟ–

'ପାହାଡରୁ ନାଚି ନାଚି ଝରଣାଟି ଅଇଲା
କୁଳୁ କୁଳୁ ଗୀତ ଗାଇ ଆଗେ ଆଗେ ଧାଇଁଲା
ସମତଳ ମାଟି ଭୂଇଁ
ଚଉଦିଗେ ଚାହିଁ ଚାହିଁ
ଥକାମାରି ରହି ରହି ଧୀରେ ଧୀରେ ବହିଲା
ପାହାଡରୁ ନାଚି ନାଚି ଝରଣାଟି ଅଇଲା' ।

ଏଠାରେ ନାଚି ନାଚି, କୁଳୁ କୁଳୁ, ଆଗେ ଆଗେ, ଚାହିଁ ଚାହିଁ, ରହି ରହି, ଧୀରେ ଧୀରେ ଆଦି ଶବ୍ଦର ପ୍ରୟୋଗ ଫଳରେ କବିତାଂଶଟି ଅଧିକ ଶ୍ରୁତି ମଧୁର ହୋଇପାରିଛି । ଏତଦ୍‌ଭିନ୍ନ ଏହା ଅଧିକ ସାବଲୀଳ ଓ ଶ୍ରୁତି ମଧୁର ହେବା ସହିତ ସ୍ୱର ଦେଇ ଗାଇବାକୁ ସହଜ ହୋଇଥାଏ । ଏହିପରି ଶତାଧିକ ଶବ୍ଦର ବ୍ୟବହାର କବିଙ୍କ ଲେଖାରେ ପରିଦୃଷ୍ଟ ହୁଏ ।

ମୁଁ ଶିଶୁ ଲେଖା ଓ ଅନ୍ୟାନ୍ୟ ପତ୍ରପତ୍ରିକାରୁ ତାଙ୍କର କେତୋଟି ଗଳ୍ପ ପଢ଼ିଥିଲି । ଗଳ୍ପଗୁଡ଼ିକ ବେଶ୍ ଶିକ୍ଷଣୀୟ ଓ ପିଲାମାନଙ୍କ ନିମନ୍ତେ ଏକାନ୍ତ ଉପାଦେୟ ମନେହୁଏ । ୧୯୮୩ ମେ' ମାସ ଶିଶୁ ଲେଖାରେ ପ୍ରକାଶିତ ତାଙ୍କରି ଏକ ଗଳ୍ପ 'ବିଭାବେଳେ ବାଇଗଣ ରୁଆ'ରୁ ଜଣାଯାଏ– ବିଭାଘର ବେଳେ ବାଇଗଣ ଗଛ ଲଗାଇଲେ ସେତେବେଳେ ବାଇଗଣ ଫଳି ପାରେନା କି ଭୋଜି କାମରେ ଲାଗି ପାରେନା । ଯେଉଁମାନେ ଆଗରୁ କିଛି ନକରି କାମକୁ ପକାଇ ରଖନ୍ତି, ସେମାନେ ଶେଷ ମୁହୂର୍ତ୍ତରେ ରଘୁନାଥ ପରି ହଟାହଟା ହୁଅନ୍ତି ।

ଗୋପବନ୍ଧୁଙ୍କ ଶ୍ରାଦ୍ଧ ଦିବସକୁ ଆଖି ଆଗରେ ରଖି ପ୍ରଧାନ ଶିକ୍ଷକ ଟାଉନହଲ୍‌ରେ ସାଧାରଣ ସଭା କରିବା ପାଇଁ ମନସ୍ଥ କରି ପନ୍ଦର ଦିନ ଆଗରୁ ପିଲାମାନଙ୍କୁ କବିତା ଆବୃତ୍ତି କରିବା ପାଇଁ ନାମ ଦେବାକୁ କହିଥିଲେ । ପିଲାମାନେ ଶ୍ରେଣୀ ଗୃହରେ ନିଜ ନିଜ ନାମ ତାଲିକାଭୁକ୍ତ କରିଥିଲେ । ତନ୍ମଧ୍ୟରେ ଛାତ୍ର ରଘୁନାଥ ଥିଲା ଅନ୍ୟତମ । ସେ ସ୍କୁଲରୁ ଆସିବା ମାତ୍ରେ ଦି'ଟା କ'ଣ ଖାଇଦେଇ ଚାଲିଯାଏ ବୁଲିବାକୁ । ଦିନ ପରେ ଦିନ ଗଡ଼ି ଚାଲିଲା । ସେ ଗୀତ ମୁଖସ୍ଥ କରିବାକୁ ଆଉ ଗୁରୁତ୍ୱ ଦେଲା ନାହିଁ । ମତେ ଦିଟାଦିନ ଲାଗିବ ମୁଖସ୍ଥ କରିବାକୁ କହି ସେ ଚିପା କାଗଜଟାକୁ ବି ଯତ୍ନରେ ରଖି ନଥିଲା । ବହୁତ ଖୋଜାଖୋଜି କରିବାରୁ ଶେଷରେ ସେ ପତ୍ରିକା ଭିତରୁ ସେ ଚିପା କାଗଜଟି ପାଇଲା । ଉତ୍ସବ ଦିନ କବିତା ଆବୃତ୍ତି କରିବାକୁ ଯାଇ ମଞ୍ଚ ଉପରୁ ଦ୍ୱିତୀୟ ପଦ ଶେଷରେ ପାଟି ତାର ଖନି ମାରିଗଲା । ମୁଖସ୍ଥ କରି ନଥିବାରୁ ଆଉ ବୋଲି ପାରିଲା ନାହିଁ । ସମସ୍ତ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ଉପସ୍ଥିତିରେ ଅପଦସ୍ତ ହୋଇ ଫେରିଲା । ଘରେ ବାପା ବୋଉ ବି ଛି ଛି ଲଜ୍ଜାର କଥା ବୋଲି କହିଲେ । ରଘୁନାଥ ଯଦି ଯଥେଷ୍ଟ ଆଗରୁ କବିତାଟି ମୁଖସ୍ଥ କରି ପ୍ରସ୍ତୁତି ହୋଇଥାନ୍ତା ତେବେ ସେଦିନ ସେ କେତେ ସାବାସ୍ ପାଇନଥାନ୍ତାଟି ! ଗଳ୍ପର ନାମକରଣର ସାର୍ଥକତା ରହିବା ସଙ୍ଗେ ତାଙ୍କର ଗଳ୍ପର ଭାଷା ସରଳ ଓ ସୁବୋଧ୍ୟ ତଥା ନୀତି ଗର୍ଭକ ହୋଇଥିବାରୁ ବହୁ ଲୋକପ୍ରିୟତା ହାସଲ କରିପାରିଛି ।

ଜନମାନସରେ ଆଦୃତ ହୋଇଥିବା ତାଙ୍କର ଗଳ୍ପ ମଧ୍ୟରେ ସିଂହ ଓ ଶୃଗାଳ, କୌଶିକ ତାଙ୍କ ଭୁଲ ବୁଝିଲେ, ସୁବର୍ଣ୍ଣ ବୀଣା, ମୁକୁଟର ସଙ୍ଗୀତ, ସମୁଦ୍ର ପରି ଓ ଚନ୍ଦ୍ର, ଜୀଅନ୍ତା କଣ୍ଢେଇ, ପିଠା ଗଛ, ବୋତଲେ ବୁଦ୍ଧିର ମୂଲ୍ୟ, ବଗୁଲିର ମାୟା, ଶୋଭା ଓ ଶାର୍ଦ୍ଦୂଳ ପ୍ରଭୃତି ପ୍ରଧାନ ।

ଅଧ୍ୟାପନା କର୍ମକୁ ଜୀବନର ବ୍ରତ ମନେକରି ୧୯୩୦ ମସିହାରୁ ୧୯୩୧ଯାଏ ସେ ବାଙ୍କୀ ଡମପଡ଼ା ହାଇସ୍କୁଲରେ ଓ ୧୯୩୧ ଜୁଲାଇ ୯ ତାରିଖରେ ବାରିପଦା ହାଇସ୍କୁଲରେ ସହକାରୀ ଶିକ୍ଷକ ରୂପେ ୧୧ବର୍ଷ କାର୍ଯ୍ୟ କରିଥିଲେ । ୧୯୩୭–୩୮ରେ ରାଜ୍ୟ ସରକାରଙ୍କଠାରୁ ଷ୍ଟାଇପେଣ୍ଡ ପାଇ ଶିକ୍ଷକତା କରିବା ପାଇଁ ଡି.ଇଡି. ଟ୍ରେନିଂ ଯାଇଥିଲେ । ତତ୍ପରେ ବାରିପଦା ହାଇସ୍କୁଲରେ ଯୋଗଦାନ କରିଥିଲେ ଏବଂ ସେଠାରେ ସହକାରୀ ପ୍ରଧାନ ଶିକ୍ଷକ ପଦକୁ ଉନ୍ନୀତ ହୋଇଥିଲେ । ୧୯୪୨ ମସିହାରୁ ୧୯୪୬ ଯାଏ ସେ ଭିଙ୍ଗାରପୁର ବକ୍ରେଶ୍ୱର ହାଇସ୍କୁଲରେ ପ୍ରଧାନ ଶିକ୍ଷକଭାବେ କାର୍ଯ୍ୟ କରିଥିଲେ । ତତ୍‌ପରେ ୧୯୪୭ ମସିହାରେ ତାଙ୍କର ପ୍ରଗାଢ଼ ଉଦ୍ୟମ ଯୋଗୁଁ ସେ ସ୍ୱାଧୀନ ଭାବରେ 'ପାରିଜାତ ପ୍ରେସ୍' ପ୍ରତିଷ୍ଠା କରିଥିଲେ । ଶିଖିଶିଖାଇବା ତାଙ୍କର ଧର୍ମ ହେତୁ ଛାତ୍ରଛାତ୍ରୀଙ୍କ ଉନ୍ନତି କଳ୍ପେ ୧୯୫୧ ମସିହାରେ ଓଡ଼ିଆ ଶିଶୁ ଓ କିଶୋର ସାହିତ୍ୟରେ ଏକ ଉପଯୁକ୍ତ ପତ୍ରିକାର ଆବଶ୍ୟକତା ଅନୁଭବ କରି ସେ 'ସଂସାର' ପତ୍ରିକା ପ୍ରକାଶ କରିଥିଲେ । ଏଥିରେ ଗଳ୍ପ, କବିତା ବ୍ୟତୀତ ଜ୍ଞାନ ବିଜ୍ଞାନ ଆଧାରିତ ବହୁ ଲେଖା ସ୍ଥାନିତ ହୋଇ ପିଲାମାନଙ୍କର ଖୁବ୍ ଆଦର ଲାଭ କରିଥିଲା ।

ଜୀବନବ୍ୟାପୀ ସାଧନାର ସ୍ୱୀକୃତି ସ୍ୱରୂପ ସେ ବହୁ ଅନୁଷ୍ଠାନ ତରଫରୁ ସମ୍ବର୍ଦ୍ଧନା, ଉପାୟନ ଓ ମାନପତ୍ର ପ୍ରାପ୍ତ ହୋଇଥିଲେ । ୧୯୯୪ ମସିହା ଅକ୍ଟୋବର ମାସ ୨୮ ତାରିଖ କାର୍ତ୍ତିକ କୃଷ୍ଣପକ୍ଷ ଅଷ୍ଟମୀରେ ତାଙ୍କର ଦେହାନ୍ତ ହୋଇଥିଲା । ସେ ଆଜି ନାହାନ୍ତି ସତ, ହେଲେ ରଖିଦେଇ ଯାଇଛନ୍ତି ଚିରନ୍ତନ ସ୍ମୃତି । ତାଙ୍କର କବି ପ୍ରତିଭା ଥିଲା ଈଶ୍ୱର ଦତ୍ତ । ତାଙ୍କ ଭଳି ନିଷ୍ପାପର ସାହିତ୍ୟ ସାଧକ, ଆଦର୍ଶ ଶିକ୍ଷକ, ସଂସ୍କାରକ ଓ ସରଳ, ସ୍ନେହୀ ମିଷ୍ଟଭାଷୀ ମଣିଷ ବାସ୍ତବରେ ବିରଳ ।

ଏମ୍.ଆଇ.ଜି.ଓ୍ୱାନ୍– ୪୨/୧
ଚନ୍ଦ୍ରଶେଖରପୁର ହାଉସିଂ ବୋର୍ଡ କଲୋନୀ
ଭୁବନେଶ୍ୱର–୧୬

# ମହାଶକ୍ତି କାଳୀ

ସୁରମା ବଳିୟାର ସିଂହ

କାଳୀ ଦଶମହାବିଦ୍ୟାର ପ୍ରଥମ ଓ ଆଦ୍ୟାଶକ୍ତି । ତାଙ୍କର ଏକ ହସ୍ତରେ ମୁଣ୍ଡ ରହିଛି । ସେଥିରୁ ରକ୍ତ ଝରୁଛି ? ଏହି ମୁଣ୍ଡ ମୋହ ପୁରୁଷର । ସେଥିରୁ ରକ୍ତ ଝରିବା କ୍ରିୟାଶୀଳତା ପ୍ରକଟ କରିଥାଏ । କାଳୀ ମହିଷାସୁରକୁ ବଧ କରିଛନ୍ତି । ଏହାର ତାତ୍ତ୍ୱିକ ଅର୍ଥ ହେଉଛି ସେ ମୋହ ଓ ଅଜ୍ଞତାକୁ ନଷ୍ଟ କରିଛନ୍ତି । କାଳୀ ପୁଣି ଶ୍ମଶାନବାସିନୀ ଅର୍ଥାତ ବାସନା–ଶୂନ୍ୟ ସାଧକର ହୃଦୟରେ ବାସ କରନ୍ତି । କାଳୀଙ୍କ ଗଳାରେ ମୁଣ୍ଡମାଳା ହେଉଛି ଶବ୍ଦ–ବ୍ରହ୍ମର ବର୍ଣ୍ଣମାଳା । ମୁଣ୍ଡ ଜ୍ଞାନ ଶକ୍ତିର ଆଧାର – ଏହାଙ୍କର ସଂଖ୍ୟା ପଚାଶ । ଏହା ସଂସ୍କୃତର ପଚାଶଗୋଟି ବର୍ଣ୍ଣର ଆଧାର । ଏହି ବର୍ଣ୍ଣମାଳା ଶବ୍ଦବ୍ରହ୍ମର ପ୍ରକାଶ । ମା' କାଳୀ ବ୍ରହ୍ମମୟୀ ଜ୍ଞାନ ରୂପକ ମାଳା ଧାରଣ କରିଛନ୍ତି ।



ମା'ଙ୍କର ଦେହର ବର୍ଣ୍ଣ କୃଷ୍ଣ, ଯାହା ସମସ୍ତ ବର୍ଣ୍ଣର ବିଲୟ । ଅନ୍ଧକାର କାଳୀଙ୍କର ଯଥାର୍ଥ ରୂପ । ଆଦିରୁ ତମସା ଗୂଢ ଭାବରେ ବିରାଜିତ ଥିଲା । ଏଣୁ ଆଦିବର୍ଣ୍ଣ ଯଦି ମା' କାଳୀଙ୍କର ବର୍ଣ୍ଣ ତେବେ ସେହି କେବଳ ଆଦ୍ୟା ବା ଆଦିଶକ୍ତି । ମହାଶକ୍ତି ଯେହେତୁ ନିରାକାର ଏଣୁ କୃଷ୍ଣବର୍ଣ୍ଣ ବା ବର୍ଣ୍ଣାତୀତ ।

ଆଦିମାୟାଙ୍କର ଉଗ୍ର ଅଭିବ୍ୟକ୍ତି ଶିବ ପତ୍ନୀ କାଳୀ । ବୈଦିକ ମତରେ ଅଗ୍ନିଙ୍କ ସପ୍ତ ଜିହ୍ୱା ମଧ୍ୟରେ କାଳୀ ଏକ । ସେହି ଜିହ୍ୱାର ରଙ୍ଗ କୃଷ୍ଣ ବର୍ଣ୍ଣ । ସେ ଭୟଙ୍କରୀ । କାଳୀଙ୍କ ଉତ୍ପତ୍ତି କଥାର ଉଲ୍ଲେଖ ଅନେକ ପୁରାଣରୁ ଏହିପରି ମିଳିଥାଏ ।

୧. ଚଣ୍ଡମୁଣ୍ଡ ସହିତ ଯୁଦ୍ଧରେ ଜଗଦମ୍ବାଙ୍କର କ୍ରୋଧରୁ କାଳୀଙ୍କ ହେଲା ଉତ୍ପତ୍ତି । (ମାର୍କଣ୍ଡେୟ ପୁରାଣ ୮୭/୫)

୨. ମହାମାୟାଙ୍କ ଗର୍ଭରୁ କାଳୀଙ୍କର ଜନ୍ମ ହୋଇଥିଲା । (କାଳିକା ପୁରାଣ) ।

୩. ଦାରୁଦ ନାମକ ରାକ୍ଷସ କେବଳ ସ୍ତ୍ରୀ–ବଦ୍ଧ ଥିଲା । ତାହାର ବଧ ନିମନ୍ତେ ଶଙ୍କର ନିଜ କଣ୍ଠସ୍ଥ ବିଷରୁ କାଳୀଙ୍କୁ ଉତ୍ପନ୍ନ କରିଥିଲେ । (ଲିଙ୍ଗ ପୁରାଣ ୩୯–୭୨) ।

୪. ଦେବାସୁର ଯୁଦ୍ଧରେ ପରାଜିତ ଦେବତାମାନେ ବ୍ରହ୍ମା,ବିଷ୍ଣୁ,ମହେଶ୍ୱରଙ୍କ ଶରଣାପନ୍ନ ହେଲେ । ଏହି ତିନିଜଣ ମହାକାଳୀଙ୍କ ସହାୟତା ପ୍ରାର୍ଥନା କଲେ । ତଦର୍ଥ ମହାକାଳୀ ୧୨ ଶକ୍ତିଙ୍କୁ ଉତ୍ପନ୍ନ କଲେ । ଏମାନଙ୍କ ମଧ୍ୟରେ ପ୍ରଥମଙ୍କ ନାମ କାଳୀ (ବୃହନ୍ନୀଳ ତନ୍ତ୍ର ୪୨)

''ଶ୍ୟାମା ରହସ୍ୟ'' ରେ ବର୍ଣ୍ଣନା ଅଛି କାଳୀ କଜ୍ୱଳ ପର୍ବତ ସମ । ତାଙ୍କର ମୁଖ ଭୟଙ୍କର । ଗଳାରେ ମୁଣ୍ଡମାଳୀ, ଦୀର୍ଘକେଶ, ଓଠରେ ହସ, ହୃଦୟରେ କମଳ ସ୍ଥିତି ।

ପୁରାଣ ବର୍ଣ୍ଣନା 'ଅନୁସାରେ ମା' କାଳୀ କୃଷ୍ଣବର୍ଣ୍ଣା ଚତୁର୍ଭୁଜା । ତାଙ୍କର ଏକ ହସ୍ତରେ କୃପାଣ । ଅନ୍ୟ ହସ୍ତରେ

ନରମୁଣ୍ଡ । ଗଳାରେ ନର ମୁଣ୍ଡମାଳ । କମରରେ ମୃତ ମନୁଷ୍ୟଙ୍କ କଚର ମେଖଳା । ଲାଲ ଚକ୍ଷୁ । ଜିହ୍ୱା ବହିରାଗତ । ବକ୍ଷ ରକ୍ତମୟ । ଏକ ପାଦ ଶିବଙ୍କ ବକ୍ଷ ଅନ୍ୟ ପାଦ ଜାନୁ ଦେଶରେ ରଖି ସେ ଦଣ୍ଡାୟମାନ ।

କାଳୀଙ୍କର ନାମ ଭେଦ – ଆଦ୍ୟ, ଦକ୍ଷିଣ କାଳୀ, ଭଦ୍ରକାଳୀ, ଗୁରୁକାଳୀ, ଚତୁର୍ଥିକା, ଧନ କାଳିକା, ଜୟକଳାକାଳୀ, ଗଣ୍ଡ କାଳିକା ଏବଂ ସିଦ୍ଧ କାଳୀ ।

ଶିବ ଏବଂ ମହାଦେବୀ ଏକ ତତ୍ତ୍ୱର ଦୁଇପକ୍ଷର ପ୍ରତିନିଧିତ୍ୱ କରନ୍ତି । ତେଣୁ ସେମାନଙ୍କ ମଧ୍ୟରେ ଅନ୍ତର ହୋଇ ନପାରେ । ମହାଦେବ ଶିବଙ୍କ ପ୍ରକୃତିର ଅଭିବ୍ୟକ୍ତି ଏବଂ ତାଙ୍କ ଚରିତ୍ରର ଅନାବରଣ । ଶିବଙ୍କର ଅର୍ଦ୍ଧାଙ୍ଗିନୀଙ୍କର ଅନେକ ନାମ – କାଳୀ, ଦୁର୍ଗା, ପାର୍ବତୀ, ଚଣ୍ଡୀ, ଉମା, ସତୀ ଇତ୍ୟାଦି ।

ଦେବୀ ମହାତ୍ମ୍ୟ – ଦେବୀ ମହାତ୍ମ୍ୟରେ ମହାଦେବୀ ବର୍ଣ୍ଣନା ଏକ ଅଜେୟ ସୁଦକ୍ଷ ନାରୀ ଯୋଦ୍ଧା ରୂପେ କରାଯାଇଛି । ତାଙ୍କର ଆର୍ବିଭାବ ଘଟିଛି ଏକତ୍ର ଭାବେ ସମସ୍ତ ଦେବତାଙ୍କ ସଂଯୁକ୍ତ କ୍ରୋଧ ମଧ୍ୟରୁ । ଏକ ନିରଙ୍କୁଶ ସ୍ୱେଚ୍ଛାଚାରୀ ଦାନବ ଯେତେବେଳେ ବିଷ୍ଣୁଙ୍କୁ ବିନଷ୍ଟ କରିଦେବାଲାଗି ଧମକ ଦେଲା ଏବଂ ଦେବତାମାନଙ୍କର ସମ୍ମୁଖରେ ଅନ୍ଧକାରମୟ କ୍ଷଣ ଉପସ୍ଥିତ ହେଲା, ସେହି ସମୟରେ ମହାଦେବୀଙ୍କର ଆର୍ବିଭାବ ଘଟିଲା । ସେତେବେଳେ ବିଷ୍ଣୁ ଓ ଶିବ ମଧ୍ୟ ଅସମର୍ଥ ହୋଇପଡିଲେ । ବିଶାଳକାୟ ମହିଷ ରୂପରେ ସେ ଅସୁରଟା ଥିଲା ମହା ବଳବାନ ଏବଂ ଭୟଙ୍କର । ବ୍ରହ୍ମାଙ୍କ ନେତୃତ୍ୱରେ ଦେବତାମାନେ ପ୍ରଥମରୁ ବିଷ୍ଣୁ ଓ ଶିବଙ୍କ ଶରଣାପନ୍ନ ହୋଇଛନ୍ତି । ସେମାନେ ବିଜୟୀ ଦାନବର ବିବରଣୀ ବିଷ୍ଣୁ ଓ ଶିବଙ୍କୁ ଶୁଣାଇ ତାଙ୍କଠାରୁ ସହାୟତା ପ୍ରାର୍ଥନା କରିଛନ୍ତି । ଅନ୍ୟାନ୍ୟ ଦେବଗଣ ମଧ୍ୟ ନିଜ ବିକ୍ଷୋଭ ଶକ୍ତିରେ ଫୁଙ୍ଫୁକାର କରି ଚତୁର୍ଦ୍ଦିଗରେ ଦଣ୍ଡାୟମାନ । ହଠାତ୍ କ୍ରୋଧ ସେମାନଙ୍କର ମୁଖମଣ୍ଡଳରୁ ଅଗ୍ନି ରୂପରେ ବର୍ହିଗତ ହେଲା । ବିଷ୍ଣୁ ଶିବ ତଥା ଅନ୍ୟାନ୍ୟ ସମସ୍ତ ଦେବତା ମଧ୍ୟ ନିଜର ପ୍ରକୃତି ଅନୁସାରେ ନିଜ ନିଜ ଶକ୍ତି, ଅଗ୍ନି ଶିଖା ରୂପରେ ବାହାର କରିବାକୁ ଲାଗିଲେ । ଏଇ ସମସ୍ତ ଅଗ୍ନିଶିଖା ଦ୍ରୁତ ଅଗ୍ରସର ହେବାକୁ ଲାଗିଲେ । ତା' ପରେ ଏକାଠି ହୋଇ ପରିବର୍ତ୍ତିତ ହେଲା ଜ୍ୱଳନ୍ତ ମେଘଖଣ୍ଡରେ । ଏହି ମେଘର ଆକାର ବୃଦ୍ଧି ପାଇବାକୁ ଲାଗିଲା । ଧୀରେ ଧୀରେ ଶେଷରେ ଦେବୀଙ୍କ ଆକୃତି ଧାରଣା କଲା ତାଙ୍କ ଅଷ୍ଟାଦଶ ଭୁଜ । ତେଣୁ ଦେବୀ ମହାକାଳୀ ଅଷ୍ଟାଦଶ ଭୁଜା ।

ରୂପ ନିର୍ମାଣ ଆଧାର – କାଳୀ ବସ୍ତୁତଃ ଅରୂପ କିନ୍ତୁ ଗୁଣକ୍ରିୟା ଅନୁସାରେ ତାଙ୍କର ରୂପ ନିର୍ମାଣ କରାଯାଇଛି । ସେ ସୃଷ୍ଟି କର୍ମରେ ରଜୋଗୁଣୀ ଏବଂ ରକ୍ତବର୍ଣ୍ଣା । ସୃଷ୍ଟି ସ୍ଥିତିରେ ସତ୍ତ୍ୱଗୁଣୀ ଏବଂ ଗୌରବର୍ଣ୍ଣା । ସଂହାରରେ ତମୋଗୁଣ ଓ କାଳୀ । କାଳୀଙ୍କ ପୂଜା କାର୍ତ୍ତିକ ମାସର କୃଷ୍ଣ ପକ୍ଷରେ ବିଶେଷ କରି ରାତ୍ରିରେ କରାଯାଏ ।

ଦକ୍ଷିଣକାଳୀଙ୍କ ରୂପ ବଙ୍ଗଳାରେ ସର୍ବପ୍ରିୟ । ତାଙ୍କର ମୂର୍ତ୍ତି ଚତୁର୍ଭୁଜା କୃଷ୍ଣ ବର୍ଣ୍ଣ ଓ ବିକଟ ହାସ୍ୟମୟୀ । ସିଦ୍ଧିକାଳୀ ରୂପରେ ସେ ନିଜର ଖଡ୍‌ଗର ଚନ୍ଦ୍ରମଣ୍ଡଳରେ ଆଘାତ କରି ହାଣି ସେଥିରୁ ପ୍ରାପ୍ତ ଅମୃତ ଦ୍ୱାରା ସ୍ନାନ କରନ୍ତି । ଗୃହକାଳୀ ସପ୍ତଶଯ୍ୟାରେ ଶୟନ କରନ୍ତି । ତାଙ୍କର ନେତ୍ର ଗମ୍ଭୀର, ଦାନ୍ତ ଭୟାନକ ଏବଂ ଜିହ୍ୱା ଲହଲହ । ଭଦ୍ରକାଳୀ ବୁଭୁକ୍ଷିତ ଏବଂ ଗମ୍ଭୀର ନେତ୍ରୀ । ଶ୍ମଶାନ କାଳୀ ଭୟଙ୍କର ଓ ତ୍ରିନେତ୍ରୀ । ରକ୍ଷାକାଳୀ ଚତୁର୍ଭୁଜା, ତାଙ୍କର ବାମ ପାଦ ପ୍ରେତର ବକ୍ଷ ଦେଶରେ ଡାହାଣ ପାଦ ସିଂହର କମର ଉପରେ ସ୍ଥାପିତ । ତାଙ୍କର ଗଳାରେ ସର୍ପମାଳ ଓ କମରରେ ବାଘ ଛାଲ ରହିଛି ।

ବଙ୍ଗଳାରେ ଜ୍ୟେଷ୍ଠ ମାସର କୃଷ୍ଣ ଚତୁର୍ଦ୍ଦଶୀରେ ମଧ୍ୟ କାଳୀପୂଜା ହୋଇଥାଏ । ଏଥିରେ ଦୀପାବଳୀ ଚତୁର୍ଦ୍ଦଶୀ ବିଶେଷ ମହତ୍ତ୍ୱ ରହିଛି । ମାଘ ଚତୁର୍ଦ୍ଦଶୀରେ ହେଉଥିବା ପୂଜାକୁ କୁହାଯାଏ ''ରଟନ୍ତି ପୂଜା'' । ଜ୍ୟେଷ୍ଠ ପୂଜାକୁ କୁହନ୍ତି ''ଫଳହାରଣୀ'' । ଗ୍ରାମରେ ମହାମାରୀ ଆସିଲେ ରକ୍ଷାକାଳୀ ଏବଂ ଶ୍ମଶାନ କାଳୀଙ୍କର ସାର୍ବଜନିକ ପୂଜା ଅନୁଷ୍ଠିତ ହୋଇଥାଏ । ଦକ୍ଷିଣ ଭାରତରେ 'କାଳୀ ଆମ୍ମା' ନାମରେ କାଳୀପୂଜା ହୁଏ ।

କୀର୍ତ୍ତିକମୁଖଙ୍କ କଥାରୁ ଜଣାଯାଏ କୌଣସି ଦେବାଦେବୀ ହିଂସ୍ରକ ଭାବନା ଏକ ସ୍ୱେଚ୍ଛାଧାରୀ ଦାନବ ରୂପରେ ବାହ୍ୟ ଅଥବା ପ୍ରକ୍ଷେପିତ କରାଯାଇପାରେ । ଏହି ପ୍ରକାର ଦାନବ ଛାୟା ଭାରତର ପୁରାଣ କଥାଗୁଡିକରେ ଉଭା ହୋଇ ରହିଛି । ସର୍ବୋଚ୍ଚ ଦେବୀଙ୍କ କ୍ରୋଧକୁ ଭକ୍ଷକ ସିଂହ ଅଥବା ବ୍ୟାଘ୍ର ରୂପରେ ପ୍ରକ୍ଷେପିତ କରାଯାଇପାରେ । ଏକ ପ୍ରାଚୀନ ଚିତ୍ରରେ ମହାଦେବଙ୍କୁ ଭୟାବହ କୃଷ୍ଣାଙ୍ଗୀ ରୂପରେ ମାନବ ବିନାଶକ କ୍ରୋଧ ସହିତ ଯୁଦ୍ଧ କରୁଥିବାର ଦେଖାଯାଇଛି । ଏହା ଜଗନ୍ମାତାଙ୍କ ସଂହାରକ ପକ୍ଷର ସାକାରୀକରଣ ।

ଏକ ହସ୍ତରେ ଖର୍ପର, ଅନ୍ୟ ହସ୍ତରେ ଖଣ୍ଡିତ ମସ୍ତକ, ଗଳାରେ ନୃମୁଣ୍ଡର ମାଳ । କଟୀ ଦେଶରେ ପୁଣି ସହସ୍ର ଛିନ୍ନ କରର ମେଖଳା । ଏକ ପାଦ ଶିବଙ୍କ ବକ୍ଷ ଭାଗରେ ଏବଂ ଅନ୍ୟ

ପାଦ ଜାନୁ ଦେଶରେ ରଖି ସେ ଦଣ୍ଡାୟମାନ ହୋଇଛନ୍ତି – କାଳଜୟିନୀ କୃଷ୍ଣାଙ୍ଗିନୀ ମାତା ମହାକାଳୀ – ବକ୍ଷ ରକ୍ତମୟ । ଚକ୍ଷୁ ଲୋହିତାଭ, ଅଧରୋଷ୍ଠ ବିକଟ ହାସ୍ୟରେ ଭରପୂର । ଆତଙ୍କିତ ମନୁଷ୍ୟ ସମାଜକୁ ଦେବୀ କିନ୍ତୁ ଦେଉଛନ୍ତି ବରାଭୟ...ମାଭୈଃ...ଧ୍ୱଂସରୁ ହିଁ ନୂତନ ସୃଷ୍ଟିରୁ ସର୍ଜନା ।

ଆଜି କାଳିପୂଜା ପୌରାଣିକ ମତ ଅନୁସାରେ ଦୀପାବଳିର ବହୁ ଉପାଦେୟତା ଅଛି ବୋଲି ଆମ ପୂର୍ବସୁରୀମାନଙ୍କ ମତ । ଉକ୍ତ ଦିନ ଶ୍ରୀରାମଚନ୍ଦ୍ର ରାବଣକୁ ବଧ କରି ଅଯୋଧ୍ୟା ଅଭିମୁଖେ ଆସିବା ଜାଣି ଅଯୋଧ୍ୟାର ପ୍ରଜାଗଣ ଦ୍ୱାରେ ଦ୍ୱାରେ ରମ୍ଭାବୃକ୍ଷ, ପୂର୍ଣ୍ଣକଳସ ଓ ସଂଧ୍ୟାରେ ଦୀପାବଳି ଜାଳି ରାମଚନ୍ଦ୍ରଙ୍କୁ ଅଭ୍ୟର୍ଥନା କରିଥିଲେ ବୋଲି କୁହାଯାଇଛି । ପୁଣି ସେଦିନ ସେଇ ପୁରାଣରେ ରାମଚନ୍ଦ୍ର କହିଛନ୍ତି ମୋର ପିତୃପୁରୁଷ ଥିଲେ ଆଜି ଏହା ଦେଖିଥାନ୍ତେ । ତାଙ୍କ କଥାକୁ ସ୍ମରଣ ରଖିବା ପାଇଁ ଆମେ ମଧ୍ୟ ଆମର ପିତୃପୁରୁଷଙ୍କୁ ଦୀପଦାନ କରୁ ବୋଲି କଥିତ ଅଛି । ସନାତନ ସଂସ୍କୃତି ଅନୁଯାୟୀ ଏହି ପୁଣ୍ୟ ଦିବସରେ ପିତୃପୁରୁଷଙ୍କର ତୃପ୍ତି ନିମିତ୍ତ ପ୍ରଜ୍ୱଳିତ ଦୀପଦାନ ଶ୍ରାଦ୍ଧ ବା ପୟାଶ୍ରାଦ୍ଧ ଅନୁଷ୍ଠିତ ହୁଏ । କାର୍ତ୍ତିକ ମାସର ଅମାବାସ୍ୟାରେ ପୁରପଲ୍ଲୀ ସବୁଠାରେ ଏହି ସାର୍ବଜନୀନ ଦୀପାବଳି ମହୋତ୍ସବକୁ ଆଡମ୍ବର ସହକାରେ ପାଳନ କରାଯାଏ । ଏହି ଦୀପାବଳି ଅମାବାସ୍ୟାକୁ ପୟା ଅମାବାସ୍ୟା ପିମ୍ପେଇ ଅମାବାସ୍ୟା ମଧ୍ୟ କୁହାଯାଏ । ଦାର୍ଶନିକ ଦୃଷ୍ଟିକୋଣରୁ ବିଚାର କଲେ ଏହି ମହାନ୍ ପର୍ବ ବା ପୂଜାର ସ୍ୱରୂପ ହେଉଛି ସୌଭାଗ୍ୟ ଲକ୍ଷ୍ମୀପ୍ରାପ୍ତିର ମହୋତ୍ସବ । ଦୀପାବଳି ଅମାବାସ୍ୟାରେ ପୟାଶ୍ରାଦ୍ଧ ସମ୍ପନ୍ନ ପୂର୍ବକ ପିତୃଗଣଙ୍କୁ ସମ୍ମାନ ପ୍ରଦର୍ଶନ କରାଯାଏ । ସ୍ମୃତିଶାସ୍ତ୍ରମାନଙ୍କରେ ଦୀପାବଳିକୁ ପୂର୍ବସୁରୀ ସ୍ମରଣ ମହୋତ୍ସବର ମାନ୍ୟତା ଦିଆଯାଇଛି ।

ଅମାବାସ୍ୟା ଦିନ ଇନ୍ଦ୍ର ଇତ୍ୟାଦି ଦେବଗଣ ଏକ ସ୍ଥାନରେ ଏକତ୍ରିତ ହୁଅନ୍ତି । ଏଥିପାଇଁ ଅମାବାସ୍ୟା ତିଥିକୁ ଧନଦାୟକ ବୋଲି ଧରାଯାଏ । ବୋଧହୁଏ ଏହି କାରଣରୁ ଲକ୍ଷ୍ମୀ ପୂଜନ କାର୍ତ୍ତିକ ଅମାବାସ୍ୟା ଦିନ କରାଯାଏ ।

ମାର୍ଫତ୍ – ଡଃ ଗୋବିନ୍ଦ ଚନ୍ଦ୍ର ପ୍ରଧାନ
ତଳମାଳୀ ସାହି, ପୁରୀ –୨



# ଅଭିଯୋଗ ବାକ୍ସ ଉନ୍ମୋଚନ

ରାଜ୍ୟ ସରକାରଙ୍କ ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ପ୍ରଶାସନ ବିଭାଗ ଲୋକଙ୍କ ସୁବିଧା ପାଇଁ ରାଜ୍ୟ ସଚିବାଳୟସ୍ଥିତ ଅଭ୍ୟର୍ଥନା କକ୍ଷଠାରେ ଏକ ଅଭିଯୋଗ ବାକ୍ସ ସ୍ଥାପନ କରିଛନ୍ତି । ଏହାକୁ ବିଭାଗୀୟ ମନ୍ତ୍ରୀ ଶ୍ରୀ ରମେଶ ଚନ୍ଦ୍ର ମାଝୀ ଆନୁଷ୍ଠାନିକ ଭାବେ ଶୁଭ ଉଦ୍‌ଘାଟନ କରିଛନ୍ତି । ଯେଉଁମାନେ ସଚିବାଳୟ ଭିତରକୁ ଆସିପାରୁ ନାହାନ୍ତି, ସେମାନେ ତାଙ୍କର ଲିଖିତ ଅଭିଯୋଗଗୁଡ଼ିକୁ ଏହି ବାକ୍ସରେ ପକାଇ ପାରିବେ । ସେଗୁଡ଼ିକୁ ପ୍ରତି ସନ୍ଧ୍ୟାରେ ବାହାର କରାଯାଇ ସଠିକ୍ କର୍ତ୍ତୃପକ୍ଷଙ୍କ ନିକଟକୁ ବିଭାଗ ତରଫରୁ ପ୍ରେରଣ କରାଯିବ । ଫଳରେ ଅଭିଯୋଗ ଦାଖଲ ପାଇଁ ଆସୁଥିବା ଜନସାଧାରଣଙ୍କ ଅଭିଯୋଗ ଠିକଣା ସ୍ଥଳକୁ ସହଜରେ ପହଞ୍ଚିପାରିବ । ଏହି ଅବସରରେ ବିଭାଗୀୟ ପ୍ରମୁଖ ସଚିବ ଶ୍ରୀ ସଂଗ୍ରାମ କେଶରୀ ମିଶ୍ର ଓ ଅନ୍ୟାନ୍ୟ ଅଧିକାରୀଗଣ ଉପସ୍ଥିତ ଥିଲେ ।

# ଉତ୍କଳୀୟ କାଳୀ ଉପାସନା

ନାରାୟଣ ହୋତା

ଦୁର୍ଗା ପୂଜା ଭଳି କାଳୀପୂଜା ଓଡ଼ିଶାରେ ବହୁତ ପୁରାତନ । ପ୍ରତ୍ନତାତ୍ତ୍ୱିକ ଓ ମୂର୍ତ୍ତିତତ୍ତ୍ୱ ଦୃଷ୍ଟିକୋଣରୁ ଲକ୍ଷ୍ୟ କଲେ ମନେହୁଏ ଖ୍ରୀଷ୍ଟିୟ ଷଷ୍ଠ ଶତାବ୍ଦୀଠାରୁ ତ୍ରୟୋଦଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାରେ କାଳୀପୂଜା ବହୁଳଭାବେ ପ୍ରସାର ଲାଭ କରିଥିଲା । କିନ୍ତୁ କେତେକ ଧାରଣା କରନ୍ତି ପ୍ରଥମେ ବଙ୍ଗ ଦେଶରେ ମା'କାଳୀଙ୍କର ପୂଜା ଆରମ୍ଭ ହୋଇଥିଲା । ସପ୍ତଦଶ ଶତାବ୍ଦୀରେ ପୂଜା ହୋଇଥିଲା ବୋଲି ଉଲ୍ଲେଖ ଅଛି । ଷୋଡଶ ଶତାବ୍ଦୀରେ ବଙ୍ଗଦେଶର ରାଜସାହୀ ଜିଲ୍ଲାରେ କଂସ ନାରାୟଣ ଦୁର୍ଗାପୂଜା ଆରମ୍ଭ କରିଥିଲେ । ସେହି ସମୟରେ ସପ୍ତଦଶ ଶତାବ୍ଦୀରେ କାଳୀପୂଜା ହେବାର କିଛି ବିଚିତ୍ରତା ନାହିଁ । ଭାରତରେ ଶକ୍ତି ସାଧନାର ପ୍ରଭାବ ବହୁତ ଥିଲା । ମାତ୍ର ଶକ୍ତି ଉପାସନା କ୍ଷେତ୍ରରେ ଓଡ଼ିଶା ସର୍ବପ୍ରଥମ ଅଟେ । ମାର୍କଣ୍ଡେୟ ପୁରାଣ ଅନ୍ତର୍ଗତ ସପ୍ତଶତୀ ଚଣ୍ଡୀରେ ଉଲ୍ଲେଖ ଅଛି କାଳୀ ହେଉଛନ୍ତି ଚାମୁଣ୍ଡା । ଦୈତ୍ୟରାଜ ଶୁମ୍ଭର ଆଦେଶରେ ଚଣ୍ଡ, ମୁଣ୍ଡ ଆଦିଦୈତ୍ୟ ହିମାଳୟ ଶୃଙ୍ଗ ଉପରେ ଆସୀନା ଦେବୀ ଅମ୍ବିକାଙ୍କୁ ଧରିବା ପାଇଁ ଯାଇଥିଲେ । ସେହି ସମୟରେ କ୍ରୋଧ ବଶତଃ ଦେବୀଙ୍କ ମୁଖ ମଣ୍ଡଳ କଳା ପଡିଗଲା ଓ ଭୃକୁଟୀ କୁଟିଳ ହୋଇଗଲା ସଙ୍ଗେ ସଙ୍ଗେ ତାଙ୍କ ଲଲାଟରୁ । ହାତରେ ଖଡ୍‌ଗ ଓ ପାଶ ଧାରଣ କରି କରାଳ ବଦନା ମା' କାଳୀଙ୍କର ଆବିର୍ଭାବ ହେଲା । କାଳୀଙ୍କ ହସ୍ତରେ ବିଚିତ୍ର କଙ୍କାଳ ଓ ଗଳାରେ ନରମୁଣ୍ଡମାଳମାନ ଶୋଭା ପାଉଥିଲା । ଦେବୀ ବ୍ୟାଘ୍ର ଚର୍ମ ପରିଧାନ । ତାଙ୍କର ଶରୀର ଶୁଷ୍କମାଂସା ରୂପ ଅତିଶୟ ବିଶାଳ ଓ ଭୀଷଣମୁଖା ଲୋଳଜିହ୍ୱା ହୋଇଥିବା ଯୋଗୁଁ ଦେବୀ ଭୟଙ୍କର ଦେଖାଯାଉଥିଲେ । ଦେବୀଙ୍କର ଲାଲ୍ ନେତ୍ର କୋଟର ଗତ ସିଂହ ନାଦରେ ଦିଗ ବିଦିତ ହେଉଥିଲା ।

ମହାକାଳ ସଂହିତା ଅନୁସାରେ ଦେବୀ ଅଚିନ୍ତନୀୟା, ଅମିତାକାର ଶକ୍ତି ସ୍ୱରୂପା, ପ୍ରତ୍ୟେକ ବ୍ୟକ୍ତି ବିଶେଷଙ୍କର ଏକମାତ୍ର ଆରିଧା ମା' କାଳୀ, ମା' ବାରଂବ୍ରହ୍ମ ସ୍ୱରୂପା, ସଗୁଣ, ନିର୍ଗୁଣ ଉଭୟ ସ୍ୱରୂପା, କାଳୀ ଶବ୍ଦରେ ମାନବ ଭୟଭୀତ ହୁଏ । ହୃଦୟରେ ଶଙ୍କା ଜନ୍ମେ । କିନ୍ତୁ କାଳୀଶବ୍ଦର ଅକ୍ଷର ମଧ୍ୟରୁ ଦେବୀଙ୍କର ଅଭିଭକ୍ତିର ପ୍ରକାଶ ଘଟିଥାଏ ।

କ୍ + ଆ + ଳ + ଈ = କାଳୀ

କ୍ = ବ୍ରହ୍ମ

ବ୍ରହ୍ମ ସୃଷ୍ଟି ଖାଦିମଶ୍ଚ କ୍ରୋଧିଶଶ୍ଚ ସୁରାନ୍ତକଃ
ଦକ୍ଷିଣୋ ମୂଳକାଷ୍ଠାକ୍ରୀ କାମାଖ୍ୟା ଗଣ ନାୟକଃ ।

(ତନ୍ତ୍ରାଭିଧାନ)

ଆ = ଅନନ୍ତ = ମଧୁବୃତ୍ତଂ ଗୁରୁଃ ଶେଷୋ ଦୀର୍ଘୋନନ୍ତୋ ମହତ୍ ତଥା । (ତନ୍ତ୍ରାଭିଧାନ)

ଳ = ବିଶ୍ୱାତ୍ମା = ବିଶ୍ୱାତ୍ମାମନ୍ଦୋ ବଳବାନ୍ ମେରୁଗିରିଃ କଳାରୂପଃ (ତନ୍ତ୍ରାଭିଧାନ)

ଈ = ସୂକ୍ଷ୍ମା = ସୂକ୍ଷ୍ମା ଶାଲ୍ମଳୀ ବିଦ୍ୟା ଚନ୍ଦ୍ରଃ ପୂଷା ସୁଗୁହ୍ୱକଃ (ତନ୍ତ୍ରାଭିଧାନ)

ଫଳତଃ କାଳୀ = ବ୍ରହ୍ମ, ଅନନ୍ତ–ବିଶ୍ୱାତ୍ମା ଓ ସୂକ୍ଷ୍ମା ସ୍ୱରୂପା ଅଟନ୍ତି । କାଳୀଙ୍କର ବୀଜ ମନ୍ତ୍ରଟି = କ୍ରୀଂ (କ+ର+ଈ, ଅଟେ । ଏହି ବୀଜ ବ୍ୟାଖ୍ୟା ହେଉଛି । କ୍ = କାଳୀ, ର = ବ୍ରହ୍ମ, ଈ = ମହାମାୟା, ନାଦ = ବିଶ୍ୱାତ୍ମା ଓ ବିନ୍ଦୁ = ଦୁଃଖଃହର ଦୁଃଖଃ ଶାନ୍ତି ଓ ସୁଖର ଆଗମନ ପାଇଁ କାଳୀଙ୍କର ପୂଜା କରିବା ଉଚିତ୍ ।

କ କାଳୀ ବ୍ରହ୍ମର ପ୍ରୋକ୍ତଂ ମହାମାୟାର୍ଥକଶ୍ଚଈ
ବିଶ୍ୱ ମାତ୍ରର୍ଥକୋ ନାଦୋ ବିନ୍ଦୁ ଦୁଃଖ ହରାର୍ଥକଃ ।

(ତନ୍ତ୍ରାଭିଧାନ)

ତେ ନୈବ କାଳୀକା ଦେବୀଂ ପୂଜୟେତ୍ ଦୁଃଖ ଶାନ୍ତୟେ ।

ମା'କାଳୀଙ୍କର ବୀଜ ମନ୍ତ୍ରକୁ ଜପ କରିବା ଦ୍ୱାରା ଦୁଃଖ ଲାଘବ ହୁଏ । ଶତ୍ରୁ ପ୍ରଶମନ ହୁଅନ୍ତି ଏବଂ ଶାନ୍ତି ମିଳେ । ଆଉ ଏକ ପ୍ରମାଣ ମିଳେ ଶାରଳା ଦାସଙ୍କର ପଞ୍ଚଦଶ ଶତାବ୍ଦୀରେ ଚଣ୍ଡୀପୁରାଣ ନାମକ ଏକ ଶକ୍ତି ସର୍ବସ୍ୱ ଗ୍ରନ୍ଥରେ ଉଲ୍ଲେଖ ଅଛି । ଦେବୀ ଦୁର୍ଗା ମହିଷାସୁରକୁ ମାରିବା ପାଇଁ ତାଙ୍କୁ ଉଲଗ୍ନ ହେବାକୁ ପଡିଥିଲା । କାହିଁକିନା ମହିଷା ବର ମାଗିଥିଲା ପୁରୁଷ ହସ୍ତରେ ବଧ ନହୋଇ ହେବ ନାରୀ ହସ୍ତରେ । ସେହି ସମୟରେ ସେ ନାରୀ ଉଲଗ୍ନ ହୋଇଥିବ । ମହିଷା ଚାହିଁଥିବ ଦେବୀଙ୍କ ଜାନୁ ଯୌବନକୁ । ତେଣୁ ସର୍ବ ମଙ୍ଗଳାଙ୍କ କଥାରେ ଦେବୀ ଉଲଗ୍ନା ହୋଇ ମହିଷାସୁରକୁ ବଧ କଲେ । ସେହି ସମୟର ରୂପ ଶାରଳା ଦାସ ଚଣ୍ଡୀ ପୁରାଣରେ ଉଲ୍ଲେଖ କରିଛନ୍ତି ।

'ବିକଟାଳ ରୂପ କରେ ଖର୍ପର ଯେ ଖଣ୍ଡା
ମୁକୁଳିତ କେଶବିମ୍ବ ବ୍ୟାପିତ ଚାମୁଣ୍ଡା
କଙ୍କାଳୀ ରୂପକୁ ଦେବେ ନପାରିଲେ ଚାହିଁ
ମହାତାପ ଦେବତାଏ ନପାରିଲେ ସହୀ ।

ତେଣୁ ମହିଷାସୁରକୁ ବଧ କରିବାକୁ ଦେବୀ ଚାମୁଣ୍ଡା ରୂପ ଧାରଣ କରିଥିଲେ । ସେହି ରୂପ ହିଁ ମା'ଙ୍କର କାଳୀ ରୂପ ଅଟେ ।

ଭାରତୀୟ ସଂସ୍କୃତିରେ ଦେବତାମାନଙ୍କର ଉପାସନା ଦୁଇ ପ୍ରକାର । ଗୋଟିଏ ଯଜ୍ଞ ମାଧ୍ୟମରେ ବୈଦିକ ରୀତିରେ ଓ ଅପରଟି ତାନ୍ତ୍ରିକ ମତରେ ବା ମୂର୍ତ୍ତି ମାଧ୍ୟମରେ । ବୈଦିକ ସାହିତ୍ୟରେ କାଳୀଙ୍କ ନାମଟି ପ୍ରଥମେ ମୁଣ୍ଡକ ଉପନିଷଦରେ ଉଲ୍ଲେଖ ଅଛି । ସେଠାରେ ଯଜ୍ଞର ସପ୍ତଶିଖାକୁ ସାତଟି ନାମରେ ଅଭିହିତ କରାଯାଇଛି ।

ଯଥା– କାଳୀ, କରାଳୀ, ମନୋଜବା, ସୁଲୋଚନା, ସୁଧୂମ୍ରବର୍ଣ୍ଣା ସ୍ଫୁଲିଙ୍ଗିନୀ ଓ ବିଶ୍ୱରୁଚୀ ।

କାଳୀ ଓ କରାଳୀ ଏ ଦୁଇଟି କାଳୀଙ୍କର ନାମ ଓ ରୂପ । ସାରଳା ଦାସ, ଚଣ୍ଡୀପୁରାଣରେ– କାଳୀତାରା, ମାତଙ୍ଗୀ, ବଗଳାଙ୍କ ନାମ ଉଲ୍ଲେଖ କରିଛନ୍ତି । ତାହା ପୁଣି କୌଣସି ଗୋଟିଏ ସ୍ଥାନରେ ନୁହେଁ । ଋଷିମେଧା ରାଜା ସୁରଥ ଓ ସମାଧିବଶ୍ୟ ଦେବତାଙ୍କ କ୍ରୋଧାଗ୍ନିରୁ ଦୁର୍ଗା ଉତ୍ପତ୍ତି ହେଲେ ବୋଲି କହିଛନ୍ତି । ସେହିପରି ମୁଣ୍ଡକ ଉପନିଷଦରେ ଲେଖାଅଛି ଅଗ୍ନିର ଜିହ୍ୱା ହେଉଛନ୍ତି କାଳୀ । ସ୍କନ୍ଦ ପୁରାଣର ରେବା ଖଣ୍ଡରେ ବର୍ଣ୍ଣିତ ଅଛି କାଳୀ ବିଦ୍ୟୁତଗ୍ନିମୟୀ କାଳାନଳ ତୁଲ୍ୟା ଶାରଦାତିଳକରେ ଅଗ୍ନିର ସପ୍ତମୂର୍ତ୍ତିର ସପ୍ତଜିହ୍ୱା ହେଉଛନ୍ତି କାଳୀ ବୋଲି କୁହାଯାଇଛି ।

କେତେକ ପଣ୍ଡିତ ଧାରଣା କରନ୍ତି କାଳୀ ବା ଚାମୁଣ୍ଡା କେବଳ ଆର୍ଯ୍ୟା ଦେବତା ନୁହଁନ୍ତି । କେତେକ କୁହନ୍ତି ଚାମୁଣ୍ଡା– ଚର୍ବି, ମାଂସ, ମଦ୍ୟପ୍ରିୟ । ବୈଦିକ ଯଜ୍ଞରେ ପଶୁରବସା (ଚର୍ବି), ମାଂସ ଓ ସୋମରସ ଅର୍ପଣ କରିବା ଥିଲା । ତେଣୁ ଦେବୀ ମଦ୍ୟ, ମାଂସ ପ୍ରିୟ ବୋଲି କହି ହେବନାହିଁ । କିନ୍ତୁ ଖିଳ ହରିବଂଶରେ ଉଲ୍ଲେଖ ଅଛି ।

'ଶବରୈ ବର୍ବରୈ ଶ୍ଚୈବ । ପୁଲିନ୍ଦୈଶ୍ଚ ସୁପୁଜିତା'

ଦେବୀ ଶବର ବର୍ବର ଓ ପୁଲିନ୍ଦଙ୍କ ଦ୍ୱାରା ପୂଜିତ । ଶାରଦା ତିଳକରେ ଦେବୀ ପୁଲିନ୍ଦ କନ୍ୟା ବୋଲି ଉଲ୍ଲେଖ ଅଛି । କିନ୍ତୁ ବେଦରେ ଦୁର୍ଗା ଓ କାଳୀଙ୍କ ନାମ କିଛି ଉଲ୍ଲେଖ ନାହିଁ । କେବଳ ଉପନିଷଦରେ ଅଗ୍ନିର ଏକ ଶିଖାକୁ କାଳୀ ନାମରେ ଅଭିହିତ କରାଯାଇଅଛି ।

ଓଡ଼ିଶାରେ ଶାବରୀୟ ଭୁମିଜମାନେ କାର୍ତ୍ତିକ ମାସ ଅମାବାସ୍ୟା ତିଥିରେ ବା ତା'ର ପୂର୍ବଦିନ ରାତ୍ରିରେ (ବାଘାତ୍‌ଙ୍କ ପୂଜା କରିଥାନ୍ତି) ଏହି ବାଘାତ୍ ପରବର୍ତ୍ତୀ କାଳରେ କାଳୀ ନାମରେ ଉପାସିତା । ସେ ଉପବେସନ କରିଛନ୍ତି ଶବ ଉପରେ । ଶବ ଶକ୍ତିଯୁକ୍ତ ହେଲେ ଶିବ ହୁଅନ୍ତି । ଏହି କଥା କହିବାକୁ ଯାଇ ଆଦି ଶଙ୍କରାଚାର୍ଯ୍ୟ ଆନନ୍ଦ ଲହରିରେ କହିଛନ୍ତି । ମାତଃ ଶିବ ଯଦି ଶକ୍ତିଯୁକ୍ତ ହୁଅନ୍ତି । ତାହାହେଲେ ସେ ପ୍ରଭାବଶାଳୀ ହୋଇ ସୃଷ୍ଟି, ସ୍ଥିତି, ଲୟାଦି ସମସ୍ତ କାର୍ଯ୍ୟ କରିପାରନ୍ତି । ତାହା ନହେଲେ ସେ ନିଜେ ସ୍ପନ୍ଦିତ ହେବାକୁ ସମର୍ଥ ହୁଅନ୍ତି ନାହିଁ । ଦେବୀଙ୍କ ଗଳାରେ ନରମୁଣ୍ଡ ମାଳମାନ ରହିଛି । ସେହି  ମାଳାରେ ପଚାଶଟି ମୁଣ୍ଡ ରହିଛନ୍ତି । କାରଣ ସଂସ୍କୃତ ବର୍ଣ୍ଣମାଳାର ସଂଖ୍ୟା ପଚାଶ । ତେଣୁ ବର୍ଣ୍ଣମାଳାର ସମସ୍ତ ଅକ୍ଷର ତାଙ୍କ ଗଳାରେ ଲମ୍ବମାନ । ନରମୁଣ୍ଡ ଜ୍ଞାନର ପ୍ରତୀକ । ତେଣୁ ଜ୍ଞାନକୁ ଧାରଣ କରିଛନ୍ତି ଦେବୀ । ଅଷ୍ଟାଦଶ ଭୁଜରେ ଅଷ୍ଟାଦଶ ବିଦ୍ୟାକୁ ମା' ଧାରଣ କରିଛନ୍ତି । ଦେବୀ ତ୍ରିନୟନୀ ହୋଇଥିବାରୁ ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନି ତାଙ୍କଠାରେ ସ୍ଥିତ । ସୂର୍ଯ୍ୟଙ୍କର ସପ୍ତ ରଙ୍ଗରେ କୃଷ୍ଣ ରଙ୍ଗ ନାହିଁ । ତେଣୁ ତାହା ହେଉଛି ଜଗତ୍ ମାତାର ସ୍ୱତନ୍ତ୍ରତା ରଙ୍ଗ ।

ପ୍ରତ୍ୟେକ ବର୍ଷ କାର୍ତ୍ତିକ ମାସରେ କାଳୀପୂଜା ସମାଗତ ହୁଏ । ଶାବରୀୟଙ୍କଠାରୁ ଆର୍ଯ୍ୟମାନଙ୍କ ପର୍ଯ୍ୟନ୍ତ ମା'ଙ୍କୁ ଅର୍ଚ୍ଚନା କରିବାକୁ ତତ୍ପର ହୋଇଉଠନ୍ତି । ସେହି ପୂଜାରେ ଘରଭିତର

ବାହାର ଦେବାଳୟମାନ ଆଲୋକିତ ହୋଇଥାଏ ଦୀପମାଳା ଦ୍ୱାରା । ସେହି ରାତ୍ରିରେ ଓଡ଼ିଆ ଜାତିର ପୁଅ କାଉଁରୀଆ ଜାଳି ପିତୃ ପୁରୁଷମାନଙ୍କ ନାମ ସମ୍ବୋଧନ କରିଥାଏ । ସେହି କାଳ ଭିତରେ ଲୀନ ହୋଇ ଯାଇଛନ୍ତି ଆମ ପୂର୍ବପୁରୁଷମାନେ । ତେଣୁ ତାଙ୍କୁ ତୁମ୍ଭେ ମୁକ୍ତି ପ୍ରଦାନ କର । ଏହି ଓଡ଼ିଆ ଜାତିକୁ, ଏହି ଦେଶକୁ, ଏହି ନଗ୍ରକୁ ତୁମ୍ଭେ କରୁଣାୟତ୍ତ ଚକ୍ଷୁରେ ଅବଲୋକନ କରି ଅପସାରିତ କର । ଏ ଦେଶରୁ ଜରା, ବ୍ୟାଧି, ଦୁର୍ଦ୍ଦଶା, ଭୂକମ୍ପ ଓ ଦୁର୍ଭିକ୍ଷର କରାଳ ଛାୟା ଦୂରେଇ ଦିଅ । ଅଜ୍ଞାନୀମାନଙ୍କର ଜ୍ଞାନ ଶକ୍ତି ଫେରାଇ ଦିଅ । ସେମାନଙ୍କୁ ଦିଅ ଦିବ୍ୟ ଆଲୋକ । ଏହାହିଁ ଆମର ପ୍ରାର୍ଥନା ।

ଆର୍.ସି.ଏମ୍., ଜଗନ୍ନାଥ ମନ୍ଦିର
ଚନ୍ଦ୍ରଶେଖରପୁର, ଭୁବନେଶ୍ୱର

# ଚଲାପଥ

ବିରାଜ ମୋହିନୀ ତ୍ରିପାଠୀ

ଚଲାପଥେ
ଚାଲୁଚାଲୁ ଧୂସର ପୃଥିବୀ ଦିଶିଯାଏ
କେବଳ ରଙ୍ଗମୟ
ରକ୍ତ ପିପାସୁ ଖେଳେ ହୋରି
ବସନ୍ତର ବିନା ରଙ୍ଗେ ରଙ୍ଗେଇ
ହୋଇଯାଏ ମାଟି, ପାଣି, ପବନର
କଅଁଳ ଦେହଟା ।
କୁଆଁରୀ ମନ ସାଥେ ସାଥେ ସ୍ୱପ୍ନର
ହୋଇଯାଏ ମୃତ୍ୟୁ ।
କିଛିକ୍ଷଣର ଖେଳ ହେଲେ ସୁଦ୍ଧା
ସମୟ ପୃଷ୍ଠାର ଚିହ୍ନ, ଚିହ୍ନ ଚିହ୍ନ
ପସ୍ତୁତ ହୋଇଯାଏ ଅନ୍ୟ ଏକ ପାଣ୍ଡୁଲିପି ।
ବଳାତ୍କାରୀ ପଶୁଟା ଅନଉଥାଏ କଟମଟ
ରକ୍ତ ତୀର୍ଥେ ସ୍ନାନ କରି
ଗୋଟାଯାକ ପୃଥିବୀକୁ ମୁଠେଇଲା ପରି
ତୁଳନୀୟ ନୁହେଁ ତାକୁ ସତେ ଅବା
ଆକାଶର ବିସ୍ତୃତତା ।
ଏଣେ ପାହାଡ ଛାତି ଦୁଲୁକି ଉଠଇ
ଝରଣା ବିକଳରେ କୋଳେଇ
ଧରିବାକୁ ଆସୁଆସୁ ନିଥର ଶରୀରଟାକୁ
ବାଟ ହୁଡେ ଭୟେ,
କାଳେ କିଏ ଶୋଷି ନେବ ହତ୍ୟା କରି ।
ଘରକରଣାରେ ବ୍ରତୀ ଚଢେଇମାନେ
ଡେଣା ବାଡେଇ କରୁଥାନ୍ତି
କେବଳ ପ୍ରତିବାଦ ।
ଖୁନ୍ଦାଖୁନ୍ଦି କଢି ସବୁ ଚହାଁଚୁହିଁ ହୋଇ
ଅଶ୍ରୁପାତ କରୁଥାନ୍ତି ନିରବରେ ।
ଏତେ ସବୁ ଦେଖିବାକୁ ଚାହାଁନ୍ତିନି
ଫୁଟିବାକୁ ଆଉ ।
କିଏ ବା ପ୍ରବୋଧିବ ତାଙ୍କୁ
ମୁଠାଏ ସମ୍ଭାବନାରେ ଆସନ୍ତାକାଲି ପାଇଁ ?

ଅଇଁଠାପାଲି
ଡି.ଆଇ.ଇ.ଟି ରୋଡ୍
ସମ୍ବଲପୁର–୪



# ଐତିହ୍ୟ ଓ ସଂସ୍କୃତିର ପ୍ରାଣକେନ୍ଦ୍ର ଝଙ୍କଡର ଶାରଳା ପୀଠ

**ଶାରଦା ପ୍ରସାଦ ମହାନ୍ତି**

ପ୍ରାଚୀନ ଉତ୍କଳରେ ଝଙ୍କଡ ପ୍ରଗଣା ଏକ ଐତିହ୍ୟପୂର୍ଣ୍ଣ ସମୃଦ୍ଧିଶୀଳ ଓ ସଂସ୍କୃତିସମ୍ପନ୍ନ ଅଞ୍ଚଳ ରୂପେ ସୁଖ୍ୟାତି ଅର୍ଜନ କରିଥିଲା । ସେ ସମୟରେ ନଦନଦୀ ଘେରା ଝଙ୍କଡ ଜନପଦରେ ନୌବାଣିଜ୍ୟ ପରମ୍ପରା ତିଷ୍ଠି ରହିଥିଲା । ଉଭୟ ମା' ଶାରଳା ଓ କବି ଶାରଳା ଦାସଙ୍କ ପାଇଁ ଝଙ୍କଡ ଅଞ୍ଚଳ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥିଲା ।

ଦେବୀ ଶାରଳାଙ୍କ ଉତ୍ପତ୍ତି ସମ୍ପର୍କରେ ଅନେକ କିମ୍ବଦନ୍ତୀ, ଲୋକକଥା ଓ ପୌରାଣିକ କାହାଣୀ ଶୁଣିବାକୁ ମିଳେ । ସେଥିମଧ୍ୟରୁ ଲୋକପ୍ରିୟ କିମ୍ବଦନ୍ତୀଟି ହେଉଛି ତ୍ରେତୟା ଯୁଗରେ ଯମଦଗ୍ନି ଋଷିଙ୍କ ପୁତ୍ର ବୀର ପର୍ଶୁରାମ ତୀର୍ଥ ପର୍ଯ୍ୟଟନ କରୁଥିବା ସମୟରେ ଝଙ୍କଡ ଅଞ୍ଚଳରେ ପ୍ରବେଶ କରି ଚନ୍ଦ୍ରଭାଗା ନଦୀ ତୀରରେ ଥିବା ଏକ ବିରାଟ ବରଗଛ ମୂଳେ ନିଜର ଧନୁ ଓ ତୀରକୁ ରଖି ନିତ୍ୟକର୍ମ କରିବାକୁ ଲାଗିଲେ । ତା'ପରେ ଫେରିଆସି ଦେଖିଲେ ଯେ ଯେଉଁ ଧନୁର ଭାଗ ପୃଥିବୀମାତା ସହ୍ୟ କରିନପାରି ବାର ଆଙ୍ଗୁଳି ନିମ୍ନକୁ ଦବିଯାଆନ୍ତି । ସେହିଧନୁ ବରଗଛ ମୂଳେ ସ୍ଥିର ଭାବେ ରହିଛି । ମାଟି ଦବିନାହିଁ କି କିଛି ବି ପରିବର୍ତ୍ତନ ହୋଇନାହିଁ । ଏହି ଆଶ୍ଚର୍ଯ୍ୟଜନକ ଘଟଣା ପର୍ଶୁରାମଙ୍କୁ ବିସ୍ମିତ କଲା । ସେ ଭାବିଲେ ଏହି ବରଗଛ ମୂଳେ କିଛି ଅଲୌକିକ ଶକ୍ତି ଲୁକ୍କାୟିତ ହୋଇ ରହିଛି ନିଶ୍ଚୟ, ନହେଲେ ସେ ସାମର୍ଥ୍ୟ ଆସିଲା କୁଆଡୁ ? ଏ ସମ୍ପର୍କରେ ଅଧିକ ଜାଣିବା ପାଇଁ ତାଙ୍କର ଇଚ୍ଛାହେଲା ସେ ନିଜ ଶର ମୁନରେ ସେହି ସ୍ଥାନକୁ ଖୋଳିବା ଆରମ୍ଭ କଲେ ଓ ମାଟି ତଳୁ ଏକ ଅଷ୍ଟଭୁଜା ଶିଳାମୂର୍ତ୍ତି ପ୍ରାପ୍ତ ହେଲେ । ଶର ମୁନରେ ମୂର୍ତ୍ତି ବାହାର କରିଥିବାରୁ ପର୍ଶୁରାମ ତାଙ୍କର ନାମ ଶାରଳା ଦେଲେ । ଯେଉଁ ସ୍ଥାନରେ ପର୍ଶୁରାମ ଓ ଶାରଳାଙ୍କର ଭେଟ ହୋଇଥିଲା ସେହି ସ୍ଥାନ ଏବେ 'ଭେଟବର' ନାମରେ ସୁପରିଚିତ ।

ମା' ଶାରଳାଙ୍କର ପ୍ରାଚୀନ ମନ୍ଦିର ନିକଟସ୍ଥ ଶାରୋଳ ଗ୍ରାମରେ ରହିଥିଲା । କଳାପାହାଡ ଆକ୍ରମଣରେ ଉକ୍ତ ମନ୍ଦିର ଶ୍ରୀହୀନ ହୋଇପଡିଥିଲା । ସେହି ଦେଉଳଟି ଏବେ 'ଲଣ୍ଡା ଦେଉଳ' ନାମରେ ପରିଚିତ । ବିଭିନ୍ନ ପର୍ବପର୍ବାଣୀରେ ମା' ଏହି ପୁରୁଣା ସ୍ଥଳକୁ ଯାଇଥାନ୍ତି । ବର୍ତ୍ତମାନର ନୂତନ ଶାରଳା ମନ୍ଦିର କନକପୁରରେ ଅବସ୍ଥିତ । ପଞ୍ଚମୁଖୀ ଶୈଳୀରେ ନିର୍ମିତ ଏହି ମନ୍ଦିରର ଜଗମୋହନ, ନାଟ୍ୟମଣ୍ଡପ ଓ ଗର୍ଭମନ୍ଦିର ରହିଛି । ଗର୍ଭ ମନ୍ଦିରର ରତ୍ନ ସିଂହାସନରେ ସ୍ୱୟଂ ମା' ଶାରଳା ବିରାଜମାନ କରିଛନ୍ତି ।

ମା' ଶାରଳାଙ୍କର ମୂର୍ତ୍ତିତତ୍ତ୍ୱରେ ବି ସ୍ୱତନ୍ତ୍ର ବୈଶିଷ୍ଟ୍ୟ ରହିଛି । ଅଷ୍ଟଭୁଜା ଶୋଭିତା ମା'ଙ୍କର ଦକ୍ଷିଣପାର୍ଶ୍ୱ ହସ୍ତରେ ରହିଛି ବୀଣା, ପୁସ୍ତକ, ଖଡ୍‌ଗ ଓ ଶୂଳ । ସେମିତି ବାମ ହସ୍ତରେ ରହିଛି ଘଣ୍ଟ, ଢାଲ, ଧନୁ ଓ ଅସୁରର କେଶ । ସିଂହପୃଷ୍ଠରେ ଆସୀନ ମା' ତ୍ରିଶୂଳ ଧାର କରି ମହିଷାସୁରକୁ ବଧ କରୁଥିବାର ଦୃଶ୍ୟ ଦେଖିବାକୁ ମିଳେ । ରତ୍ନସିଂହାସନରେ ଅଧିଷ୍ଠିତ ଅନ୍ୟ ଏକ ଦେବୀମୂର୍ତ୍ତି ହେଉଛି ବନଦୁର୍ଗାଙ୍କର । ମା' ଶାରଳାଙ୍କର ପ୍ରତିନିଧିରୂପେ ସେ ସମସ୍ତ ଯାନିଯାତ୍ରା ଓ ପର୍ବପର୍ବାଣିରେ ଯୋଗଦିଅନ୍ତି । ଅନ୍ୟଏକ ଦେବୀମୂର୍ତ୍ତି ହେଉଛି କ୍ରୋଡ ମା'ଙ୍କର । ସେ ସଦାସର୍ବଦା ଶାରଳା ମା'ଙ୍କ ନିକଟରେ ରହିଥାନ୍ତି । ଉଭୟ ଦେବୀ ଚାରିଭୂଜା ଅଟନ୍ତି । ମନ୍ଦିରବେଢା ଭିତରେ ପାର୍ଶ୍ୱଦେବତା ଭାବେ ଶିବ, ଜଗନ୍ନାଥ, ଶ୍ରୀରାମ, ଶ୍ରୀଗଣେଶ, ରାଧାକୃଷ୍ଣ, ସୂର୍ଯ୍ୟ ଓ ଦଶମହାବିଦ୍ୟାଙ୍କର ମୂର୍ତ୍ତି ରହିଛନ୍ତି । ଶାରଳା ପୀଠରେ ଉଭୟେ ଶୈବ ଓ ଶାକ୍ତ ଧର୍ମର ପରମ୍ପରା ଦେଖିବାକୁ ମିଳେ । ଅନ୍ୟ କୌଣସି ଦେବୀ ମନ୍ଦିରରେ ତୁଳସୀ ଓ ବେଲପତ୍ର ଲାଗି ହୋଇନଥାଏ । କେବଳ ଶାରଳାଙ୍କୁ ନାରାୟଣୀ ବୈଷ୍ଣବୀ ବୋଲି ଅଭିହିତ କରାଯାଇଥିବାରୁ ତୁଳସୀ ଲାଗିହୋଇଥାଏ ।

ମା' ଶାରଳା ଜ୍ଞାନ ଓ ଶକ୍ତିର ପ୍ରତୀକ ସ୍ୱରୂପ ପୂଜା ପାଇଥାନ୍ତି । ମା' ଶାରଳା ମାତୃରୂପିଣୀ, ଜ୍ଞାନରୂପିଣୀ ଓ ଶକ୍ତିରୂପିଣୀ ଭାବେ ପୂଜିତା । ପୁନଶ୍ଚ ମା' ବିଦ୍ୟାଦାତ୍ରୀ, ଶକ୍ତିଦାତ୍ରୀ ଓ ସିଦ୍ଧିଦାତ୍ରୀ ରୂପେ ସର୍ବବିଦିତ । ଶାରଳା ଶବ୍ଦକୁ ତର୍ଜମା କଲେ ଜଣାଯାଏ ଯେ ସେ ସାରବସ୍ତୁ (ବିଦ୍ୟା) ଦାନ କରୁଥିବାରୁ ତାଙ୍କର ନାମ ସାରଦା, ବୀର ପର୍ଶୁରାମଙ୍କ ଦ୍ୱାରା ଶର ମୁନରେ ମାଟି ତଳୁ ଉଦ୍ଧାର ପାଇଥିବାରୁ ତାଙ୍କର ନାମ ଶାରଳା ଓ ଶାରୋଳ ଗ୍ରାମର ଅଧିଷ୍ଠାତ୍ରୀ ଦେବୀ ହୋଇଥିବାରୁ ତାଙ୍କର ନାମ ଶାରଳା ।

ଓଡ଼ିଆ ଘରର ଚାଲିଚଳଣି ପରି ମା'ଙ୍କ ପୀଠରେ ବାର ମାସରେ ତେର ପର୍ବ ପାଳିତ ହୋଇଥାଏ । ସେଥିମଧ୍ୟରୁ ଦଶହରା, ଝାମୁଯାତ୍ରା, ଚନ୍ଦନଯାତ୍ରା, ଦୋଳଯାତ୍ରା ଇତ୍ୟାଦି ମୁଖ୍ୟ ଅଟେ । ଶାରଳା ପୀଠର ଘଟପାଟୁଆ ନୃତ୍ୟ ପ୍ରସିଦ୍ଧ ଲୋକନୃତ୍ୟ ଅଟେ । ଝଙ୍କଡବାସିନୀ ମା' ଶାରଳା ହେଉଛନ୍ତି ଉତ୍କଳୀୟ କଳା, ସାହିତ୍ୟ ଓ ସଂସ୍କୃତିର ପ୍ରତୀକ । ଅବିଭକ୍ତ କଟକ ଜିଲ୍ଲାର ପାଲା ଗାୟକ ଓ ଯାତ୍ରାଦଳମାନେ ସେମାନଙ୍କର ପ୍ରଥମ ଆଗମନରେ ମା'ଙ୍କ ନିକଟରେ ପରିବେଷଣ କରିଥାନ୍ତି ।

ମା' ଶାରଳାଙ୍କର ପରମ ଭକ୍ତ ଶାରଳା ଦାସ ମା'ଙ୍କର କରୁଣା ପାଇ ମୂର୍ଖ ସିଦ୍ଧେଶ୍ୱରରୁ କବି ଶାରଳା ଦାସରେ ପରିଣତ ହୋଇଥିଲେ । ସାମ୍ପ୍ରତିକ ଓଡ଼ିଆ ସାହିତ୍ୟର କାରୁକାର୍ଯ୍ୟ ବିମଣ୍ଡିତା ମନ୍ଦିର ଶାରଳା ସାହିତ୍ୟର ଭିତ୍ତିଭୂମି ଉପରେ ଦଣ୍ଡାୟମାନ । ଓଡ଼ିଆ ସାହିତ୍ୟର ପୂର୍ବାକାଶରେ ଉଦୀୟମାନ ସୂର୍ଯ୍ୟରୂପେ ଶାରଳା ଦାସ ପରବର୍ତ୍ତୀ ଓଡ଼ିଆ ସାହିତ୍ୟକୁ ଆଲୋକିତ କରିଛନ୍ତି । କବି ଶାରଳା ଦାସ ବିଲଙ୍କା ରାମାୟଣ, ଚଣ୍ଡୀପୁରାଣ ଓ ଲକ୍ଷ୍ମୀନାରାୟଣ ବଚନିକା ରଚନା କରିଥିଲେ ହେଁ ମହାଭାରତ ହେଉଛି ତାଙ୍କର ଶ୍ରେଷ୍ଠତମ ସୃଷ୍ଟି ସମ୍ପଦ । ଅଠର ଖଣ୍ଡରେ ବିଭକ୍ତ ଶାରଳା ମହାଭାରତରେ ତତ୍କାଳୀନ ସମାଜର ଧର୍ମନୀତି, ରାଜନୀତି, ସମାଜନୀତି, ଯୁଦ୍ଧନୀତି ଇତ୍ୟାଦି ବିଭିନ୍ନ ପ୍ରସଙ୍ଗ ଦୃଷ୍ଟିଗୋଚର ହୋଇଥାଏ । ଶାରଳା ମହାଭାରତ ହେଉଛି ଓଡ଼ିଆ ଜାତିର ଚଳନ୍ତି ଇତିହାସ ଓ ଅମୂଲ୍ୟ ଭାଷାକୋଷ । ତତ୍କାଳୀନ ସମୟରେ ସଂସ୍କୃତ ଭାଷା ପ୍ରଭାବରୁ ଓଡ଼ିଆ ଭାଷାକୁ ମୁକ୍ତ କରିଥିଲେ ବିପ୍ଳବୀ କବି ଶାରଳା ଦାସ । ଶାରଳା ଦାସଙ୍କ ଅମଳିନ କୀର୍ତ୍ତି ଓ କୃତିପାଇଁ ଝଙ୍କଡ ଅଞ୍ଚଳ ତଥା ଓଡ଼ିଶା ମାଟି ସଦାସର୍ବଦା ଗର୍ବିତ ଓ ଗୌରବାନ୍ୱିତ ।

ପ୍ଲଟ ନଂ- ଏଫ୍-୩୭୨
ସେକ୍ଟର-୮, ସିଡିଏ, କଟକ-୭୫୩୦୧୪

# ଭୁବନେଶ୍ୱର ସହର ଏକ ନଲେଜ୍ ହବ୍ ହେବାକୁ ଯାଉଛି

## –ମନ୍ତ୍ରୀ ଶ୍ରୀ ଦେବୀ ପ୍ରସାଦ ମିଶ୍ର

ଭୁବନେଶ୍ୱର ସହରକୁ ଏକ ଅନ୍ୟତମ ବାଣିଜ୍ୟ କେନ୍ଦ୍ର ସ୍ଥଳ ଭାବେ ଗଢି ତୋଳିବା ଲକ୍ଷ୍ୟ ନେଇ ଜି.ଆଇ.ଆର୍.ଇ.ଏମ ସଂସ୍ଥା ଓ ବିଡିଏ ମଧ୍ୟରେ ଏମ୍ଓୟୁ ସ୍ୱାକ୍ଷରିତ ହୋଇଛି । ବିଭାଗୀୟ ମନ୍ତ୍ରୀ ଶ୍ରୀ ଦେବୀ ପ୍ରସାଦ ମିଶ୍ର, ଅତିରିକ୍ତ ମୁଖ୍ୟ ଶାସନ ସଚିବ ତଥା ଉନ୍ନୟନ କମିଶନର ଶ୍ରୀ ଇଞ୍ଜୋତି ଶ୍ରୀନିବାସ, ବିଡିଏର ଉପାଧ୍ୟକ୍ଷ ଶ୍ରୀ ବିଶାଳ ଦେବ ଓ ବି.ଏମ୍.ସି କମିଶନର ଶ୍ରୀ ସଞ୍ଜୀବ କୁମାର ମିଶ୍ରଙ୍କ ଉପସ୍ଥିତିରେ ବିଡିଏ ପକ୍ଷରୁ ସହର ଓ ଆଞ୍ଚଳିକ ଯୋଜନାର ସଭ୍ୟ ଶ୍ରୀ ପିତବାସ ସାହୁ, ଜି.ଆଇ.ଆର୍.ଇ.ଏମ୍ ଅଧ୍ୟକ୍ଷ ଶ୍ରୀ ଶ୍ୟାମ ସୁନ୍ଦର ପାଣି ଏହି ଏମ୍ଓୟୁ ସ୍ୱାକ୍ଷର କରିଛନ୍ତି । ଆଇଟି କ୍ଷେତ୍ରରେ ଏହି ସହର ଏକ ପ୍ରମୁଖ ସହର ଭାବେ ଉଭା ହେଲାଣି । ଏଠାରେ ବୈଷୟିକ ଶିକ୍ଷାନୁଷ୍ଠାନ ସହ ଅନ୍ୟାନ୍ୟ ଉଚ୍ଚମାନର ଶିକ୍ଷାନୁଷ୍ଠାନ ଗଢି ଉଠିବା ସଙ୍ଗେ ସଙ୍ଗେ ଏହା ଏବେ ଏକ ନଲେଜ୍ ହବ ହେବାକୁ ଯାଉଛି ବୋଲି ମନ୍ତ୍ରୀ ଶ୍ରୀ ମିଶ୍ର ପ୍ରକାଶ କରିଛନ୍ତି । ଭୁବନେଶ୍ୱର ଜନସାଧାରଣଙ୍କର ଜୀବନଧାରଣ ଶୈଳୀରେ ଉନ୍ନତି ଆଣିବା, ନିଯୁକ୍ତି ସୁଯୋଗ ସୃଷ୍ଟି କରିବା ସହ ମାନବ ସମ୍ବଳ ବିକାଶ ଧାରାକୁ ତ୍ୱରାନ୍ୱିତ କରିବା, ପୁଞ୍ଜି ନିବେଶକାରୀଙ୍କୁ ଉତ୍ସାହିତ କରିବା ଏହାର ମୂଳ ଲକ୍ଷ୍ୟ । ଭୁବନେଶ୍ୱରକୁ ଇକୋ-ସାମାଜିକ ଓ ଅର୍ଥନୈତିକ ହବ୍ ଭାବେ ଗଢି ତୋଳିବା, ସମନ୍ୱିତ ସହରାଞ୍ଚଳ ସାଉଥ୍ ସିଟି ପୁନର୍ଗଠନ କରିବା, କଟକ ଓ ଭୁବନେଶ୍ୱର ମଧ୍ୟରେ ଭବିଷ୍ୟତ ଅର୍ଥନୈତିକ ଜୋନ୍ ଭାବେ ଉନ୍ନତି କରିବା, ବଜାର ସୃଷ୍ଟି କରିବା, ସୂଚନା ଓ ପ୍ରଯୁକ୍ତି କ୍ଷେତ୍ରରେ ୧ ଲକ୍ଷ(ପ୍ରତ୍ୟକ୍ଷ) ଓ ୫ ଲକ୍ଷ (ପରୋକ୍ଷ) ନିଯୁକ୍ତି ସୃଷ୍ଟି କରିବା ଏହି ଏମ୍ଓୟୁର ମୂଳ ଲକ୍ଷ୍ୟ ବୋଲି ବିଭାଗ ପକ୍ଷରୁ ଜଣାଯାଇଛି ।

# ଓଡ଼ିଶାର ଲୋକଧର୍ମରେ ଲକ୍ଷ୍ମୀପୂଜା

ଲକ୍ଷ୍ମୀଚରଣ ସାମନ୍ତରାୟ

ପାରମ୍ପରିକ ପୂଜା ଉତ୍ସବ, ପର୍ବପର୍ବାଣି ଓ ଧର୍ମ ବିଶ୍ୱାସର ଦେଶ ଭାବରେ ଓଡ଼ିଶାର ଖ୍ୟାତି ବିଶ୍ୱବିଦିତ । ପ୍ରାଚୀନ ଓଡ଼ିଶାର ଅଧିବାସୀବୃନ୍ଦ ମାତୃ ଉପାସକ । ଏ ଦେଶ ଏକ ମାତୃ ପ୍ରଧାନ ସଂସ୍କୃତିର ଜନ୍ମଦାତ୍ରୀ । ଇତିହାସର ଅୟମାରମ୍ଭ ସମୟରୁ ଦେବଦେବୀଙ୍କ ପ୍ରତିମା ଓ ସେମାନଙ୍କ ପ୍ରତୀକ ଏଠାରେ ପୂଜା ପାଇ ଆସୁଛନ୍ତି । କି ସହର, କି ଗ୍ରାମ ସବୁଠାରେ ଏହି ଦେବଦେବୀଙ୍କ ଆବିର୍ଭାବ ଓ ଆସ୍ଥାନ । ଓଡ଼ିଶାରେ ଏପରି କୌଣସି ପଲ୍ଲୀ ବା ସହର ନାହିଁ, ଯେଉଁଠାରେ ଦେବଦେବୀଙ୍କ ମନ୍ଦିର ନାହିଁ । ଓଡ଼ିଶାବାସୀଙ୍କର ଭଗବତ ପ୍ରାପ୍ତିର ଉତ୍ତରଣରେ ଆଦିମ କାଳରୁ ଗ୍ରାମ ଉପକଣ୍ଠରେ ଗ୍ରାମଦେବ ଶିବ କିମ୍ବା ଗ୍ରାମଦେବୀ ଦୁର୍ଗାଙ୍କର ମନ୍ଦିର ଓଡ଼ିଶାର ପ୍ରତ୍ୟେକ ଗ୍ରାମରେ ପ୍ରାୟତଃ ରହିଛି । ପ୍ରମାଣ ମିଳିଥିଲା ଯେ ଖ୍ରୀ.ପୂର୍ବ ୨୦୦୦ ବେଳକୁ ମୃତ୍ତିକା ନିର୍ମିତ ଦେବଦେବୀଙ୍କର ପୂଜା କରାଯାଉଥିଲା । କିନ୍ତୁ ପରବର୍ତ୍ତୀ ଗୁପ୍ତଯୁଗ(ଖ୍ରୀ–୩୨୦–୬୪୭) ବେଳକୁ ମାତୃ ମୂର୍ତ୍ତିଙ୍କର ସ୍ୱତନ୍ତ୍ର ପୂଜା ପ୍ରଚଳିତ ହୋଇଥିଲା । ଏହି ସମୟରୁ ଓଡ଼ିଶାବାସୀଙ୍କର ଏହି ପ୍ରତୀକାତ୍ମକ ମାତୃ ଉପାସନା ମୂର୍ତ୍ତି ପୂଜାର ଭବ୍ୟରୂପ ଦେଇଥିଲା । ଗୁପ୍ତ ଯୁଗରେ ଦେବୀପୂଜାର ବିଶେଷତ୍ୱ ଏହି ଯେ, ସେସମୟରେ ଦେବୀଙ୍କ ବ୍ୟତୀତ ଦେବତା ଅସମ୍ପୂର୍ଣ୍ଣ ବିବେଚିତ ହେଉଥିଲେ । ତତ୍କାଳୀନ ସମାଜର ଆଧ୍ୟାତ୍ମିକ ବିଚାରବୋଧରେ ଦେବଗଣ ଜଡ ଓ ଦେବୀଗଣ ସକ୍ରିୟ । ବୈଷ୍ଣବ ଧର୍ମର ପ୍ରାଧାନ୍ୟ ପ୍ରସାର ପର୍ଯ୍ୟନ୍ତ ମାତୃ ଉପାସନା ସମ୍ବନ୍ଧୀୟ ଏତାଦୃଶ ଧାରଣା ବଳବତୀ ରହିଥିଲେ ହେଁ ବିଷ୍ଣୁପତ୍ନୀ ଲକ୍ଷ୍ମୀ, ବ୍ରହ୍ମାଙ୍କ ପତ୍ନୀ ସରସ୍ୱତୀ ଓ ଶିବପ୍ରିୟା ପାର୍ବତୀଙ୍କ ସ୍ୱାତନ୍ତ୍ର୍ୟ ସ୍ୱୀକୃତି ଲାଭ କରିଥିଲା । ଏହି ତ୍ରିଦେବୀଙ୍କ ମଧ୍ୟରେ ସମ୍ପଦ, ଐଶ୍ୱର୍ଯ୍ୟ, ଧନଧାନ୍ୟ, ସୌଭାଗ୍ୟ ତଥା ପ୍ରାଚୁର୍ଯ୍ୟ ଦାତ୍ରୀ ବିଷ୍ଣୁ ବଲ୍ଲଭା ମହାଲକ୍ଷ୍ମୀ ଓଡ଼ିଶାର ଘରେ ଘରେ ଗୃହଦେବୀ ରୂପେ ପୂଜିତା ଓ ସେବୀତା । ସେ ସେହି ମହାମାୟା ପାଳନ, ଅଭିବୃଦ୍ଧି ଓ ବିକାଶ ଘଟାଇ ପୁନଶ୍ଚ ସେଗୁଡ଼ିକୁ ଅନୁରୂପ ଗୁଣ ଦେଇ ଓ ନିତ୍ୟ ଅଭିନବ ସୃଷ୍ଟି କରି ଚାଲିଛନ୍ତି କେଉଁ ଅନାଦି କାଳରୁ ଅନନ୍ତକାଳ ପର୍ଯ୍ୟନ୍ତ ।

ଓଡ଼ିଶା ଏକ କୃଷି ପ୍ରଧାନ ରାଜ୍ୟ । ଓଡ଼ିଆ ଜାତିର ଆଧ୍ୟାତ୍ମିକ ଚେତନାରେ ଧାନ ଶୀଷାଟିଏ ମଧ୍ୟ ତା' ପାଇଁ ଲକ୍ଷ୍ମୀ ଓଡ଼ିଆଣୀ ଘରେ ଘରେ ମାର୍ଗଶିର ଗୁରୁବାର ଦିନ ଏହି ଧାନକୁ ପୂଜା କରାଯାଏ ଏବଂ ପ୍ରତ୍ୟେକ ଗୁରୁବାର ତା' ପାଇଁ ଏକ ପବିତ୍ର ଦିନ । ସେଦିନ ସେ ଗୋବର ପାଣିରେ ପିଣ୍ଡା, ଅଗଣା ଲିପାପୋଛା କରି ଘରଦ୍ୱାର ଧୁଆଧୋଇ କରି ଅପୂର୍ବ ଆନନ୍ଦ ଉଲ୍ଲାସରେ ଭକ୍ତିପୂତ ହୃଦୟରେ ଏକଗ୍ରତାର ସହିତ ଝୋଟି ଦିଏ ଏବଂ ଚିତାରେ ଲକ୍ଷ୍ମୀପାଦ ଆଙ୍କି ଥାଏ ।

ପ୍ରତ୍ନତାତ୍ତ୍ୱିକ ଅନୁଧ୍ୟାନରୁ ଜଣାଯାଇଛି, ଗୁପ୍ତ ଯୁଗର ବହୁ ପୂର୍ବରୁ ଲକ୍ଷ୍ମୀଙ୍କର ସାକାର ଉପାସନା ପ୍ରଚଳନ ଥିଲା । ଭୁବନେଶ୍ୱରସ୍ଥିତ ଉଦୟଗିରି ଗୁମ୍ଫାସ୍ଥିତ ଗଜଲକ୍ଷ୍ମୀ ଚିତ୍ର ହିଁ ଓଡ଼ିଶାରେ ଲକ୍ଷ୍ମୀ ପୂଜାର ପ୍ରାଚୀନତମ ନିଦର୍ଶନ । ପର୍ଶୁରାମେଶ୍ୱର ମନ୍ଦିରରେ ଖୋଦିତ ଲକ୍ଷ୍ମୀମୂର୍ତ୍ତି, କୋଣାର୍କ ମନ୍ଦିରରେ ଖୋଦିତ ଲକ୍ଷ୍ମୀମୂର୍ତ୍ତି ଏବଂ ବିଭିନ୍ନ ମନ୍ଦିର ଗାତ୍ରରେ ଅଙ୍କିତ ଲକ୍ଷ୍ମୀଙ୍କର ଚିତ୍ରରୁ ଓଡ଼ିଶାରେ ଲକ୍ଷ୍ମୀ ପୂଜାର ମହତ୍ତ୍ୱ ପ୍ରତିପାଦିତ ହୋଇଥାଏ । ଶ୍ରୀମନ୍ଦିର ପରିସରରେ ନିର୍ମିତ ଲକ୍ଷ୍ମୀଙ୍କର ଭବ୍ୟ ମନ୍ଦିର ଉତ୍କଳୀୟ ସାଂସ୍କୃତିକ ବିଚାରବୋଧରେ ଲକ୍ଷ୍ମୀ ପୂଜାର ମହାଲକ୍ଷ ସ୍ୱାତନ୍ତ୍ର୍ୟର ସୂଚନା ପ୍ରଦାନ କରିଥାଏ । ମହିମାମୟୀ ମହାଲକ୍ଷ୍ମୀ ଲୋକମାତା ଏବଂ ଉଚ୍ଚ, ନୀଚ, ଧନୀ, ଦରିଦ୍ର ସଭିଏଁ ତାଙ୍କରି ସନ୍ତାନ । ତେଣୁ ସମନ୍ୱୟ ଭାବଧାରାରେ ପ୍ରବହମାନ ସ୍ରୋତରେ ମହାଲକ୍ଷ୍ମୀ ଉପାସନା ଓଡ଼ିଶାରେ ବହୁ ପ୍ରାଚୀନ କାଳରୁ ଆଧ୍ୟାତ୍ମିକ ମାନ୍ୟତା ଲାଭ କରି ଆସିଛି । ଲକ୍ଷ୍ମୀଙ୍କର ଉତ୍ପତ୍ତି ସମ୍ପର୍କରେ ବିଭିନ୍ନ ଧର୍ମ ଶାସ୍ତ୍ରରେ ଭିନ୍ନ ଭିନ୍ନ ତଥ୍ୟ ନିହିତ । ବିଷ୍ଣୁପୁରାଣ, ପଦ୍ମପୁରାଣ ଓ ବ୍ରହ୍ମବୈବର୍ତ୍ତ ପୁରାଣ ମହାଲକ୍ଷ୍ମୀଙ୍କର ଚରିତ ଭିନ୍ନ ଭିନ୍ନ ପ୍ରକାର ବର୍ଣ୍ଣନା କରୁଥିଲେ ହେଁ ଭାରତୀୟ ମାନ୍ୟତାରେ

ପରଂବ୍ରହ୍ମଙ୍କୁ ପୁରୁଷ ନାରାୟଣ ଓ ପରାଶକ୍ତିଙ୍କୁ ପତ୍ନୀ ରୂପରେ ବର୍ଣ୍ଣନା କରାଯାଇଛି । ଭାରତୀୟ ବେଦାନ୍ତ ଦର୍ଶନରେ ଲକ୍ଷ୍ମୀଙ୍କୁ ପରାଶକ୍ତି ସ୍ୱରୂପରେ ସ୍ୱୀକାର କରାଯାଇଛି । ଏହି ଦୃଷ୍ଟିକୋଣରୁ ସବୁଠାରେ ସେ ଧନ ଅଧିଷ୍ଠାତ୍ରୀ ଦେବୀ–ମା' ମହାଲକ୍ଷ୍ମୀ ପ୍ରେମ ଓ ଆନନ୍ଦର ଅଧିକାରୀ । ଆତ୍ମିକ ସୁରକ୍ଷା ହିଁ ତାଙ୍କର ପ୍ରସାଦ । ଏହାଙ୍କ ଦିବ୍ୟ ଦୃଷ୍ଟିରେ ଜୀବନ ହୋଇଉଠେ ଶୁଭଙ୍କର । ପୌରାଣିକ କିମ୍ବଦନ୍ତୀ ଅନୁଯାୟୀ ଇନ୍ଦ୍ର ଦୁର୍ବାସାଙ୍କ ପ୍ରଦତ୍ତ ପାରିଜାତ ପୁଷ୍ପମାଳାକୁ ହେୟଜ୍ଞାନ କରନ୍ତେ ମୁନିଙ୍କ ଅଭିଶାପ ପ୍ରାପ୍ତ ସ୍ୱର୍ଗପୁର ଲକ୍ଷ୍ମୀହୀନ ହେଲା । ପରେ ଅବଶ୍ୟ ଦେବତାଙ୍କ ଅନୁନୟ ପ୍ରାର୍ଥନାରେ ବିଷ୍ଣୁଙ୍କ ନିର୍ଦ୍ଦେଶରେ ସାଗର ଗର୍ଭରୁ ଜନ୍ମ ହେଲେ ଲକ୍ଷ୍ମୀ । ଏଣୁ ତାଙ୍କ ନାମ ହେଲା ସାଗରଦା । ଅନ୍ୟକେତେକ ପୁରାଣ ମତରେ ଲକ୍ଷ୍ମୀଙ୍କର ଜନ୍ମ ବିଷ୍ଣୁଙ୍କର ଲଲାଟସ୍ଥ ସ୍ୱର୍ଣ୍ଣପଦ୍ମ ମଧ୍ୟରୁ । ଶ୍ରୀ ଓ ଚତୁର୍ଭୁଜା ଲକ୍ଷ୍ମୀ ଉଭୟେ ବିଷ୍ଣୁଙ୍କର ପତ୍ନୀ । ପରମାତ୍ମାଙ୍କ ସଦୃଶ ଲକ୍ଷ୍ମୀ ନିତ୍ୟମୁକ୍ତ ଓ ନାନା ରୂପ ଧାରିଣୀ, ଭଗବାନଙ୍କର ଅଙ୍କଶାୟିନୀ । ଲକ୍ଷ୍ମୀଙ୍କର ଶକ୍ତି ପ୍ରଭାବରେ ହିଁ ବିଷ୍ଣୁଙ୍କ ଲୀଳା । ପ୍ରକୃତରେ ଲକ୍ଷ୍ମୀ ହିଁ ବିଷ୍ଣୁଙ୍କର ମୂଳ ପ୍ରକୃତି । କ୍ଷୀର ସାଗରରେ ଶୟନ କରିଥିବା ନାରାୟଣଙ୍କର ପ୍ରିୟତମା ଲକ୍ଷ୍ମୀ ସ୍ୱର୍ଗରେ ସ୍ୱର୍ଗଲକ୍ଷ୍ମୀ ଏବଂ ଭୂତଳରେ ରାଜଲକ୍ଷ୍ମୀ, ପାତାଳରେ ନାଗାଜିଲକ୍ଷ୍ମୀ, ଗୃହମାନଙ୍କରେ ଗୃହଲକ୍ଷ୍ମୀ, ସର୍ବଶସ୍ୟ ସ୍ୱରୂପା ଏବଂ ସମ୍ପୂର୍ଣ୍ଣ ଐଶ୍ୱର୍ଯ୍ୟର ବିଧାନକାରୀ, ସେ ସର୍ବପୂଜ୍ୟା, ପବିତ୍ରତା, ନାରୀ ଜାତିର ଏକ ଜ୍ୱଳନ୍ତ ପ୍ରତୀକ ।

କୃଷକ ଧାନ ଅମଳ କରି ପୂଜା ପାଇଁ ଘରକୁ ଆଣେ । ମାର୍ଗଶିର ମାସ ଗୁରୁବାରରେ ଏହା ପୂଜା ହୋଇଥାଏ । ଧାନ ଗଛକୁ ବିଡା ବିଡା କରି ବାନ୍ଧି ଏବଂ ହାତରେ ମଳା ହୋଇଥିବା ଧାନକୁ ଗୁରୁବାର ମାଣରେ ଭରି ସେଥିରେ ନାଲିକନା ଘୋଡେଇ, ଫୁଲଚନ୍ଦନ, ଧୂପ ନୈବେଦ୍ୟ ଦେଇ ପୂଜା କରାଯାଇଥାଏ । ଏହି ସମୟରେ ଓଡ଼ିଆ ଘରେ ଓଡ଼ିଆଣୀର ତତ୍ପରତା ତଥା ଏକାଗ୍ରତା ବେଶ୍ ଲକ୍ଷଣୀୟ । ଘର ବାହାର ସବୁଆଡେ ଲିପାପୋଛା କରି, ଝୋଟି ପକାଇ, ଗୁରୁବାର ଘରେ ଲକ୍ଷ୍ମୀଙ୍କର ପାଦକାଟି, ଲକ୍ଷ୍ମୀଙ୍କର ପ୍ରିୟ ବସ୍ତୁ ସବୁ ଭୋଗବସ୍ତୁ ରୂପେ ବାଢ଼ି, ଧୂପ, ଦୀପାଳି ଦେଇ, ହୁଳହୁଳି ପକାଇ ମା' ଲକ୍ଷ୍ମୀଙ୍କୁ ଆଧ୍ୟାତ୍ମିକ ଓ ଭାବଗାମ୍ଭୀର୍ଯ୍ୟପୂର୍ଣ୍ଣ ପରିବେଶରେ ସେ ସାଷ୍ଟାଙ୍ଗ ପ୍ରଣିପାତ ଜଣାଇଥାଏ । ଉତ୍କଳୀୟ ସଂସ୍କୃତି ଓ ଧର୍ମୀୟ ଜୀବନରେ ଲକ୍ଷ୍ମୀ ପୂଜା ଏକ ବିଶିଷ୍ଟ ସ୍ଥାନ ଗ୍ରହଣ କରିଛି । ଲକ୍ଷ୍ମୀ ଚଞ୍ଚଳା, ଚପଳା ସେ କେବେ ଗୋଟିଏ ଜାଗାରେ ସ୍ଥିର ହୋଇ ରହିପାରନ୍ତି ନାହିଁ । ତେଣୁ ଓଡ଼ିଆଣୀର ତାଙ୍କୁ ବହୁତ ଡର । ସେହି ପରମ କଲ୍ୟାଣମୟୀ ମା' ଲକ୍ଷ୍ମୀଙ୍କୁ ସେ ଭୟ ଓ ଭକ୍ତିର ସହିତ ପୂଜା କରିଥାଏ । ଦରିଦ୍ରର ପର୍ଣ୍ଣକୁଟୀରଠାରୁ ଆରମ୍ଭ କରି ଧନୀକର ପ୍ରାସାଦ ପର୍ଯ୍ୟନ୍ତ, ପୁରପଲ୍ଲୀରେ ଓ ଆଧୁନିକ ନଗରୀରେ ଲକ୍ଷ୍ମୀପୂଜା ଭକ୍ତିପୂତ ହୃଦୟରେ ପାଳନ କରାଯାଇଥାଏ । ଖରାପ କାର୍ଯ୍ୟ କଲେ ମଣିଷ ଲକ୍ଷ୍ମୀଛଡା ହୋଇଥାଏ ବୋଲି ବିଶ୍ୱାସ ରହିଆସିଛି । ଯେଉଁ ନାରୀମାନେ ସଦ୍‌ଗୁଣା ସମ୍ପନ୍ନା, ସେହିନାରୀମାନେ ଲକ୍ଷ୍ମୀଙ୍କର ଅତିପ୍ରିୟ ହୋଇଥାନ୍ତି ବୋଲି ବିଶ୍ୱାସ ରହିଛି । ଏହି ଦୃଷ୍ଟିକୋଣରୁ ଓଡ଼ିଶାର ଲୋକଧର୍ମରେ ମହାଲକ୍ଷ୍ମୀ ପୂଜାର ପରମ୍ପରା ଏ ସ୍ୱତନ୍ତ୍ର ଆସନ ଅଳଙ୍କୃତ କରିଆସିଛି । ଓଡ଼ିଶାର ଆଧ୍ୟାତ୍ମିକ ଐତିହ୍ୟରୁ ଉପଲବ୍ଧ ହୋଇଥାଏ ଯେ, ଜାତି ବର୍ଣ୍ଣ ନିର୍ବିଶେଷରେ ଓଡ଼ିଆମାନେ ଏହି ପ୍ରବହମାନ ଧାରାରେ ଉଦ୍‌ବୁଦ୍ଧ ହୋଇ ମାଣବସା, ସୁଦଶାବ୍ରତ, ଲକ୍ଷ୍ମୀନାରାୟଣ ଓ ଗୁରୁପୂର୍ଣ୍ଣିମା ପ୍ରଭୃତି ଓଷାବ୍ରତ ପାଳନ କରି ଆସିଛନ୍ତି । କୁମାର ପୂର୍ଣ୍ଣମୀ ଦିନ ଲକ୍ଷ୍ମୀ ଅବତୀର୍ଣ୍ଣ ହୁଅନ୍ତି ଗଜପୃଷ୍ଠରେ । ଏହିଦିନ ସାଗର ମନ୍ଥନ ହୋଇ ଲକ୍ଷ୍ମୀଙ୍କର ଆବିର୍ଭାବ ଘଟିଥିଲା ବୋଲି ପୁରପଲ୍ଲୀ ସର୍ବତ୍ର ମହାଲକ୍ଷ୍ମୀଙ୍କର ପୂଜା ଅନୁଷ୍ଠିତ ହୋଇଥାଏ, ଶୁକ୍ଳ ଏକାଦଶୀ ଦିନ ଗୁରୁବାର ପଡିଲେ ଲକ୍ଷ୍ମୀନାରାୟଣ ପୂଜା ହୋଇଥାଏ । ଏହାବ୍ୟତୀତ ସୁଦଶାବ୍ରତ ହେଉଛି ଲକ୍ଷ୍ମୀଙ୍କର ଅତିପ୍ରିୟ ବ୍ରତ । ମହିମାମୟୀ ମା' ଲକ୍ଷ୍ମୀ ଲୋକମାତା । ସେ ଉଜ୍ଜ୍ୱଳ ତଥା ରକ୍ତବର୍ଣ୍ଣ, ଚତୁର୍ଭୁଜା, ତାଙ୍କର ପରିଧାନ ପଟ୍ଟବସ୍ତ୍ର । ଚାରିଟି ହସ୍ତୀ ତାଙ୍କର ଶୁଣ୍ଢଦ୍ୱାରା ଅମୃତପୂର୍ଣ୍ଣ କଳସରେ ତାଙ୍କର ଅଭିଷେକ କରୁଛନ୍ତି । ତାଙ୍କର ଦୁଇହସ୍ତରେ ଅଭୟ ମୁଦ୍ରା, ସେ ପଦ୍ମପୁଷ୍ପ ଉପରେ ଆସୀନା, ଲକ୍ଷ୍ମୀଭାବରେ ସେ ସମଗ୍ର ସୃଷ୍ଟିର କାଳୟିତ୍ରୀ ତଥା କରୁଣାମୟୀ, ଅନ୍ନଦାତ୍ରୀ, ଐଶ୍ୱର୍ଯ୍ୟ ଓ ପ୍ରାଚୁର୍ଯ୍ୟର ଦେବୀ । ଏହାଙ୍କର ଦିବ୍ୟଦୃଷ୍ଟିରେ ଜୀବନ ହୋଇଉଠେ ଶୁଭଙ୍କର । ଆଧ୍ୟାତ୍ମିକ ଆନନ୍ଦରେ ପ୍ରାଣୀ ସତ୍ତା ନିତ୍ୟ ଅନୁଭବ କରେ ମଙ୍ଗଳମୟୀଙ୍କୁ ।

ଦେବୀଙ୍କର ଅନ୍ୟନାମ ଶାକମ୍ବରୀ, କାରଣ ସେ ଧରଣୀକୁ ଶସ୍ୟଶାଳିନୀ କରି ଆମର କ୍ଷୁଧା ନିବାରଣ କରିଥାନ୍ତି । ହେ କୃଷ୍ଣ ବଲ୍ଲଭା, ମହାଲକ୍ଷ୍ମୀ, ନିଖିଳର ଶ୍ୟାମଳ ହୃଦୟରେ କୋମଳ ପାଦସ୍ପର୍ଶ ଦେଇ ତୁମେ ଏ ଧରାକୁ ଓହ୍ଲାଇ ଆସ । ଉଜୁଡା କେଦାର ପୁଣି ତୁମ ଆଶିଷର ଯାଦୁ ସ୍ପର୍ଶରେ ଶସ୍ୟ ଶ୍ୟାମଳ ହୋଇଉଠୁ । ହେ ଜଗତଜନନୀ ! ମଣିଷର ପ୍ରତ୍ୟେକ କାର୍ଯ୍ୟକୁ ତମେ ତମର ଉପାସନା ବୋଲି ଗ୍ରହଣ କରିନିଅ । ତା'ର ପ୍ରତିଟି ଉଚ୍ଚାରଣକୁ ମାନସିକ ଦୀପଟିଏ ଭାବି ଗ୍ରହଣ କର । ତା'ର ପଦଚାରଣ ତମ କ୍ଷେତ ପ୍ରଦକ୍ଷିଣ ବୋଲି ବିବେଚିତ ହେଉ । ତା'ର ପାନହାର ହୋଇଉଠୁ ତୁମ ଉଦ୍ଦେଶ୍ୟରେ ସମର୍ପିତ ଆହୂତି ଓ ତା'ର ଶୟନ ଭଙ୍ଗୀ ହୋଇ ଉଠୁ ତୁମ ଉଦ୍ଦେଶ୍ୟରେ ବିନମ୍ର ପ୍ରଣତି । ତୁମ ଶୁଭାଗମନରେ ମଣିଷ ହୃଦୟର ସମସ୍ତ କଳୁଷ ବିଦୂରିତ ହୋଇ ଦୟା, ସ୍ନେହ ଭଳି ସ୍ୱର୍ଗୀୟ ଗୁଣରାଜିରେ ପରିପୂର୍ଣ୍ଣ ହୋଇଉଠୁ ।

ଆଇନଜୀବୀ, ଖାଜାସାହି, ବ୍ରହ୍ମପୁର–୭୬୦୦୦୧



# ଏଲ୍.ଇ.ଡି. ଯୋଜନା ଦ୍ୱାରା ବିଦ୍ୟୁତ୍ ସଞ୍ଚୟ

**ଗୋଲକ ବିହାରୀ ସାହୁ**

ଜାତୀୟ ସ୍ତରରେ ଏଲ୍.ଇ.ଡି. ବଲ୍ବ ଯୋଜନା ଦ୍ୱାରା ଦେଶରେ ବିଦ୍ୟୁତ୍ ଶକ୍ତି ସଞ୍ଚୟକୁ ପ୍ରାଧାନ୍ୟତା ଦିଆଯାଇଛି । ଗୋଟିଏ ସାଧାରଣ ୧୦୦ ୱାଟ୍ ବଲ୍ବ ମାତ୍ର ୧୦ ଘଣ୍ଟା ଜଳିଲେ ଗୋଟିଏ ୟୁନିଟ୍ ବିଦ୍ୟୁତ୍ ଉପଯୋଗ କରିଥାଏ । ଗ୍ରାମାଞ୍ଚଳମାନଙ୍କରେ ଏହି ସାଧାରଣ ବଲ୍ବର ବ୍ୟବହାର ଅଧିକ । ଓଡ଼ିଶାରେ ପ୍ରାୟ ୫୦ ଲକ୍ଷ ବିଦ୍ୟୁତ୍ ଗ୍ରାହକ ଅଛନ୍ତି । ହିସାବରୁ ଜଣାଯାଏ ଯେ, ଏହାର ୭୦ରୁ ୮୦ ଭାଗ ବିଦ୍ୟୁତ୍ ଉପଭୋକ୍ତା ଗ୍ରାମାଞ୍ଚଳରେ ଅଛନ୍ତି । ଏଣୁ ପ୍ରତିଟି ବିଦ୍ୟୁତ୍ ଉପଭୋକ୍ତା ପରିବାର ସର୍ବନିମ୍ନ ୪ରୁ ୫ଟି ଏହି ସାଧାରଣ ୧୦୦ ୱାଟ୍ କିମ୍ବା ୬୦ ୱାଟ୍ ବଲ୍ବ ବ୍ୟବହାର କରିଥାନ୍ତି । ଯଦି ୪୦ ଲକ୍ଷ ବିଦ୍ୟୁତ୍ ଗ୍ରାହକ ୫ଟି ଲେଖାଏଁ ଏହି ସାଧାରଣ ବିଦ୍ୟୁତ୍ ବଲ୍ବ ବ୍ୟବହାର କରନ୍ତି, ତେବେ ପ୍ରତିଦିନ ୪୦,୦୦୦୦୦ x ୫ = ୨,୦୦,୦୦୦୦୦୦ ବା ୨କୋଟି ବଲ୍ବ ୭ ଘଣ୍ଟା ଜଳିଲେ ସମୁଦାୟ ୧୪ କୋଟି ଘଣ୍ଟାର ବିଦ୍ୟୁତ୍ ଉପଯୋଗ କରିଥାନ୍ତି ଏବଂ ଯାହାକୁ ୟୁନିଟ୍‌ରେ ହିସାବ କଲେ ଦୈନିକ ୧ କୋଟି ୪୦ ଲକ୍ଷ ୟୁନିଟ୍ ବିଦ୍ୟୁତ୍ ଖର୍ଚ୍ଚ କରିଥାନ୍ତି । ବର୍ତ୍ତମାନ ପରିସ୍ଥିତିରେ ହାରାହାରି ବିଦ୍ୟୁତ୍ କିଣା ଖର୍ଚ୍ଚ ପ୍ରତି ୟୁନିଟ୍ ପିଛା ୩ଟଙ୍କା ଅଟେ । ଏହି ହିସାବରେ ୧.୪୦ କୋଟି x ୩ଟଙ୍କା = ୪ କୋଟି ୨୦ ଲକ୍ଷ ଟଙ୍କାର ବିଦ୍ୟୁତ୍ ଉପଯୋଗ କରିଥାନ୍ତି ।

**'ଏଲ୍.ଇ.ଡି. ବଲ୍ବ' ସହ 'ସାଧାରଣ ବଲ୍ବ' ଏବଂ 'ସି.ଏଫ୍.ଏଲ୍. ବଲ୍ବ'ର ଏକ ତୁଳନାତ୍ମକ ସାରଣୀ ତଳେ ଦିଆଗଲା ।**

| କାର୍ଯ୍ୟ ଦକ୍ଷତା ଏବଂ ଶକ୍ତିର ମୂଲ୍ୟାୟନ | ଏଲ୍.ଇ.ଡି.ବଲ୍ବ | ସାଧାରଣ ବଲ୍ବ | ସି.ଏଫ୍.ଏଲ୍. ବଲ୍ବ |
|---|---|---|---|
| କେତେଦିନ ବ୍ୟବହାର କରିବ | ୫୦,୦୦୦ ଘଣ୍ଟା | ୧୨୦୦ ଘଣ୍ଟା | ୮୦୦୦ ଘଣ୍ଟା |
| କାର୍ଯ୍ୟ କରିବା ପାଇଁ ସାଧାରଣ କେତେ ୱାଟ୍ କ୍ଷମତାର ବଲ୍ବ ଦରକାର | ୬–୮ ୱାଟ୍ | ୬୦ ୱାଟ୍ | ୧୩–୧୫ ୱାଟ୍ |
| କେତେ ୟୁନିଟ୍ ବିଦ୍ୟୁତ୍ ଉପଯୋଗ ହୁଏ (ଗୋଟିଏ ବଲ୍ବ ଦୈନିକ ୭ଘଣ୍ଟା ଜଳିଲେ ବର୍ଷକୁ) | ୧୮ ୟୁନିଟ୍ | ୧୫୩ ୟୁନିଟ୍ | ୩୫ ୟୁନିଟ୍ |
| ପରିବେଶ ଉପରେ ପ୍ରଭାବ | | | |
| ପାରଦଯୁକ୍ତ କି ? | ନାଁ | ନାଁ | ହଁ |
| ଅଙ୍ଗାରକାମ୍ଳ ଗ୍ୟାସ ଛାଡିବା (୩୦ଟି ବଲ୍ବ ପ୍ରତିବର୍ଷ) | ୪୫୧ ପାଉଣ୍ଡ ବା ୨୩୦ କି.ଗ୍ରା. | ୪୫୦୦ ପାଉଣ୍ଡ ବା ୨୩୦୦ କି.ଗ୍ରା. | ୧୦୫୧ ପାଉଣ୍ଡ ବା ୫୨୫ କି.ଗ୍ରା |

| କେତେ ପରିମାଣ ଆଲୋକ ପ୍ରଦାୟୀ | | | |
|---|---|---|---|
| ଲୁମେନସ୍ | ୱାଟ୍ | ୱାଟ୍ | ୱାଟ୍ |
| ୪୫୦ | ୪–୫ | ୪୦ | ୯–୧୩ |
| ୮୦୦ | ୬–୮ | ୬୦ | ୧୩–୧୫ |
| ୧୧୦୦ | ୯–୧୩ | ୭୫ | ୧୮–୨୫ |
| ୧୬୦୦ | ୧୬–୨୦ | ୧୦୦ | ୨୩–୩୦ |
| ୨୬୦୦ | ୨୫–୨୮ | ୧୫୦ | ୩୦–୫୫ |

ରାଜ୍ୟ ସରକାରଙ୍କ ସହାୟତାରେ 'ସେସୁ' ପୁରୀ ଜିଲ୍ଲାର ରଘୁରାଜପୁର ଏବଂ କଟକ ଜିଲ୍ଲାର ସତ୍ୟଭାମାପୁର ଗ୍ରାମରେ ସମୁଦାୟ ୧୪ଲକ୍ଷ ଟଙ୍କା ଖର୍ଚ୍ଚରେ ଗାଁ ଲୋକଙ୍କର ୩୩୦ ଜଣ ଗ୍ରାହକଙ୍କର ୧୦୦୦ଟି ସାଧାରଣ ବଲ୍‌ବକୁ ପରିବର୍ତ୍ତନ କରି ୧୦ ୱାଟ୍‌ର ଏଲ୍.ଇ.ଡି. ବଲ୍‌ବ ଲଗାଇଛି । ସେହି ଗ୍ରାମାଞ୍ଚଳରେ ଲାଗିଥିବା ୩୫ଟି ରାସ୍ତା ଲାଇଟ୍‌ରୁ ୪୦ ୱାଟ୍ ବାର୍‌ଲାଇଟ୍ ବଦଳାଯାଇ ୨୦ ୱାଟ୍‌ର ଏଲ୍.ଇ.ଡି. ବଲ୍‌ବ ଲଗାଯାଉଛି । ଏଣୁ ସେହି ଗାଁ ଲୋକଙ୍କର ବିଜୁଳି ବ୍ୟବହାର ବାର୍ଷିକ ପ୍ରାୟ ୭୫,୦୦୦ରୁ ୮୦,୦୦୦ ୟୁନିଟ୍ ବଞ୍ଚା ଯାଇପାରିଛି । ଯାହାଦ୍ୱାରା ସେହି ଗାଁ ଲୋକମାନେ ଶୁଭ୍ର ଆଲୋକ ପାଇବା ସହ ବିଦ୍ୟୁତ୍ ବିଲ୍‌ରେ ବାର୍ଷିକ ୩ଲକ୍ଷ ୨୦ ହଜାର ଟଙ୍କା ସଞ୍ଚୟ କରି ପାରିଛନ୍ତି । ଏହି ସଫଳତା ଭିତ୍ତିକ ଏକ ସାରଣୀ ନିମ୍ନରେ ଦିଆଗଲା ।

ରଘୁରାଜପୁର ଏବଂ ସତ୍ୟଭାମାପୁର ଗ୍ରାମରେ ଏଲ୍.ଇ.ଡି. ଯୋଜନା ଦ୍ୱାରା ବିଦ୍ୟୁତ୍ ବ୍ୟବହାର କ୍ଷେତ୍ରରେ ସଞ୍ଚୟ:

| ଗ୍ରାମର ନାମ | ରଘୁରାଜପୁର | ସତ୍ୟଭାମାପୁର |
|---|---|---|
| ବଲ୍‌ବର ସଂଖ୍ୟା | ୩୪୫ଟି | ୬୫୫ଟି |
| ବଦଳା ଯାଇଥିବା ସାଧାରଣ ବଲ୍‌ବ | ୩୩୦ଟି ୬୦ ୱାଟ୍<br>୧୫ଟି ୧୦୦ୱାଟ୍ | ୯୯ଟି ୬୦ ୱାଟ୍<br>୫୫୬ଟି ୧୦୦ ୱାଟ୍ |
| କେତୋଟି ଏଲ୍.ଇ.ଡି. ବଲ୍‌ବ ଦିଆଗଲା | ୩୪୫ଟି ୧୦ ୱାଟ୍ | ୬୫୫ଟି ୧୦ ୱାଟ୍ |
| କେତେ ବିଦ୍ୟୁତ୍ ଶକ୍ତି ସଞ୍ଚୟ ହେଲା | ୧୭,୮୫୦ ୱାଟ୍ | ୫୪,୯୯୦ ୱାଟ୍ |
| ଦୈନିକ କେତେ ସମୟ ଜଳିଲା | ୩ ଘଣ୍ଟା ୩୦ ମିନିଟ୍ | ୩ ଘଣ୍ଟା ୩୦ ମିନିଟ୍ |
| ବର୍ଷର କେତେ ଦିନ ଜଳିଲା | ୩୦୦ | ୩୦୦ |
| ଦୈନିକ କେତେ ବିଦ୍ୟୁତ୍ ଶକ୍ତି ବଞ୍ଚିଲା | ୬୨.୪୭୫ ୟୁନିଟ୍ | ୧୯୨.୪୬୫ ୟୁନିଟ୍ |
| ବର୍ଷକୁ କେତେ ବିଦ୍ୟୁତ୍ ଶକ୍ତି ବଞ୍ଚିଲା | ୧୮,୭୪୩ ୟୁନିଟ୍ | ୫୭,୭୪୦ ୟୁନିଟ୍ |

ଏହି ଦୁଇଟି ଗ୍ରାମରେ ବାର୍ଷିକ ୭୬,୪୮୩ ୟୁନିଟ୍ ବିଦ୍ୟୁତ୍ ସଞ୍ଚୟ ହୋଇପାରିଲା ଯାହାର ଆନୁମାନିକ ମୂଲ୍ୟ ୩ଲକ୍ଷ ଟଙ୍କା ଅଟେ । ଏହି ହିସାବରେ ଏହି ଦୁଇଟି ଗ୍ରାମରେ ଯେଉଁ ୧୪ ଲକ୍ଷ ଟଙ୍କା ଖର୍ଚ୍ଚ ହେଲା, ତାହା ୫ ବର୍ଷରେ ଭରଣା ହୋଇପାରିବ । ଉପରେ ଦିଆଯାଇଥିବା ସାରଣୀକୁ ଅନୁଧ୍ୟାନ କଲେ ଏଲ୍.ଇ.ଡି. ଯୋଜନା ଦ୍ୱାରା ମାତ୍ର ଗୋଟିଏ ଗ୍ରାମାଞ୍ଚଳରେ ହଜାର ହଜାର ୟୁନିଟ୍ ବିଦ୍ୟୁତ୍ ଶକ୍ତି ବଞ୍ଚା ଯାଇପାରିଛି । ଏହାଦ୍ୱାରା ଖାଲି ଗ୍ରାହକଙ୍କ ବିଦ୍ୟୁତ୍ ବିଲ୍ କମିବ ନାହିଁ, ଏହା ସହିତ ବିଦ୍ୟୁତ୍ ଉତ୍ପାଦନରେ ସୁପ୍ରଭାବ ପକାଇବ । ବିଦ୍ୟୁତ୍ ଚାହିଦା କମିଗଲେ, ବିଦ୍ୟୁତ୍ ଉତ୍ପାଦନ କମିଯିବ । ଯାହାଦ୍ୱାରା କୋଇଲା ପୋଡା କମିଲେ ପରିବେଶକୁ କମ୍ ଅଙ୍ଗାରକାମ୍ଳ ଗ୍ୟାସ୍ ଯିବ ଓ ପରିବେଶ ପ୍ରଦୂଷଣରୁ ରକ୍ଷା ମିଳିପାରିବ । ଆମେ ସମସ୍ତେ ଜାଣିବା ଉଚିତ୍ ଯେ, ଏକ ମେଗାୱାଟ୍ ବିଦ୍ୟୁତ୍ ଉତ୍ପାଦନ ପାଇଁ ୬ରୁ ୭କୋଟି ଟଙ୍କା ଖର୍ଚ୍ଚ ହୁଏ । ପୁଣି ସେହି ଏକ ମେଗାୱାଟ୍ ବିଦ୍ୟୁତ୍ ଶକ୍ତିକୁ ଗ୍ରାହକମାନଙ୍କ ପାଖରେ ପହଞ୍ଚାଇବା ପାଇଁ ପରିବହନ ଏବଂ ପରିବଣ୍ଟନ ବାବଦରେ ପୁଣି ୫କୋଟି ଟଙ୍କା ଲେଖାଏଁ ଦରକାର । ଆମ ଦେଶରେ ବିଦ୍ୟୁତ୍ ଉତ୍ପାଦନ କ୍ଷମତା ୨ଲକ୍ଷ ୨୩ ହଜାର ମେଗାୱାଟ୍ ଓ ଆମ ରାଜ୍ୟ ଓଡ଼ିଶାରେ ପ୍ରାୟ ୬୫୦୦ ମେଗାୱାଟ୍ ଅଟେ । ଏଣୁ ସମସ୍ତ ବିଦ୍ୟୁତ୍ ଗ୍ରାହକମାନେ ବିଦ୍ୟୁତ୍ ସଞ୍ଚୟ ମନୋବୃତ୍ତି ଆଣି ଏପରି ବିଦ୍ୟୁତ୍ ସଞ୍ଚୟକାରୀ ବଲ୍ବ ବ୍ୟବହାର କଲେ ଦେଶର ତଥା ରାଜ୍ୟର ମଙ୍ଗଳ ସାଧିତ ହୋଇପାରିବ ।

ଲୋକ ସମ୍ପର୍କ ଅଧିକାରୀ
ସେସୁ, ଭୁବନେଶ୍ୱର

# ଜାତୀୟ ଲୋକ ଅଦାଲତରେ ଅଧିକ ମାମଲା ଫଇସଲା ଲାଗି ସରକାରଙ୍କ ନିର୍ଦ୍ଦେଶ

ଆସନ୍ତା ୨୪ ତାରିଖରେ ରାଜ୍ୟର ବିଭିନ୍ନ କୋର୍ଟମାନଙ୍କରେ ହେବାକୁ ଥିବା ଜାତୀୟସ୍ତରର ଲୋକ ଅଦାଲତରେ ଅଧିକ ସଂଖ୍ୟକ ମାମଲା ଫଇସଲା ପାଇଁ ଉପସ୍ଥାପନ କରିବାକୁ ମୁଖ୍ୟ ଶାସନ ସଚିବ ଶ୍ରୀ ଯୁଗଳ କିଶୋର ମହାପାତ୍ର ନିର୍ଦ୍ଦେଶ ଦେଇଛନ୍ତି । ଏହି ଉଦ୍ଦେଶ୍ୟରେ ମୁଖ୍ୟ ଶାସନ ସଚିବ ଜିଲ୍ଲା ଓ ଉପଖଣ୍ଡ ଅଦାଲତ ମାନଙ୍କରେ କାର୍ଯ୍ୟରତ ସରକାରୀ ଓକିଲ ଓ ସହାୟକ ସରକାରୀ ଓକିଲମାନଙ୍କ ସହ ଭିଡ଼ିଓ କନଫରେନ୍ସିଂ ମାଧ୍ୟମରେ ଆଲେଚନା କରିଛନ୍ତି । ଦୀର୍ଘଦିନରୁ ଆଦିବାସୀମାନଙ୍କ ବିରୋଧରେ ଅମୀମାଂସିତ ହୋଇ ରହିଥିବା ଜଙ୍ଗଲ ଜବର ଦଖଲ ମାମଲା ଓ ଅବକାରୀ ମାମଲାର ତ୍ୱରିତ ବିଚାର ଦିଗରେ ଚେଷ୍ଟା କରିବାକୁ ଶ୍ରୀ ମହାପାତ୍ର ସରକାରୀ ଓକିଲମାନଙ୍କୁ କହିଛନ୍ତି । ସେହିପରି ମୋଟର ଯାନ ଆଇନ୍, ଓଜନ ଓ ମାପ ମାନାଙ୍କ ଆଇନ୍,ଧୂମପାନ ଆଇନ୍ ଏବଂ ଭାରତୀୟ ପିଙ୍ଗଳ କୋଡ ଧାରା ୧୬୦, ୨୭୭, ୨୭୮, ୨୭୯, ୨୮୨, ୨୮୪, ୨୮୫, ୨୮୬, ୨୮୭, ୨୮୮, ୨୮୯, ୨୯୦, ୩୩୬, ୩୩୭, ୪୨୬, ୩୦୯ ଓ ୫୧୦ ଧାରା ଅଧୀନରେ ଚାଲିଥିବା ଛୋଟ ଧରଣର ମାମଲାଗୁଡ଼ିକର ମୀମାଂସା ପ୍ରକ୍ରିୟା ତ୍ୱରାନ୍ୱିତ କରିବା ପାଇଁ ଓକିଲମାନଙ୍କୁ କୁହାଯାଇଛି । ଭିଡ଼ିଓ କନଫରେନ୍ସିଂରୁ ପ୍ରାପ୍ତ ତଥ୍ୟ ଅନୁଯାୟୀ ଲୋକ ଅଦାଲତରେ ବିଚାର ପାଇଁ ବିଭିନ୍ନ ଜିଲ୍ଲାର ୫୦ ହଜାରରୁ ଉର୍ଦ୍ଧ୍ୱ ମାମଲା ଚିହ୍ନଟ ହୋଇଛି । ସେସବୁର ମୀମାଂସା ବାବଦରେ ସଂଶ୍ଳିଷ୍ଟ ବିଭାଗମାନେ ସେମାନଙ୍କ କ୍ଷେତ୍ରସ୍ତରୀୟ ଅଧିକାରୀମାନଙ୍କୁ ଆବଶ୍ୟକୀୟ ନିର୍ଦ୍ଦେଶ ଦେଇଛନ୍ତି । କୋର୍ଟ ଉପରେ ମାମଲାର ଚାପ କମାଇବା ନିମନ୍ତେ ଏଭଳି ପଦକ୍ଷେପ ନିଆଯାଇଛି ବୋଲି ଗୃହ ସଚିବ ଦାୟିତ୍ୱରେ ଥିବା ଅତିରିକ୍ତ ମୁଖ୍ୟ ସଚିବ ଶ୍ରୀ ଉପେନ୍ଦ୍ର ନାଥ ବେହେରା କହିଛନ୍ତି । ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ଉପେନ୍ଦ୍ର ନାଥ ବେହେରା, ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ବିଭାଗ ଅତିରିକ୍ତ ମୁଖ୍ୟ ଶାସନ ସଚିବ ଡ଼ଃ ତାରା ଦତ୍ତ, ପ୍ରମୁଖ ଆଇନ୍ ସଚିବ ଶତ୍ରୁଘ୍ନ ପୂଜାହାରୀ. ଜଙ୍ଗଲ ଓ ପରିବେଶ ବିଭାଗ ପ୍ରମୁଖ ସଚିବ ରାଜ କୁମାର ଶର୍ମା, ପ୍ରଧାନ ମୁଖ୍ୟ ବନ ସଂରକ୍ଷକ, ପି.ଏନ.ପାଢୀଙ୍କ ସମେତ ବିଭାଗୀୟ ବରିଷ୍ଠ ଅଧିକାରୀମାନେ ସଚିବାଳୟରେ ଭିଡ଼ିଓ କନଫରେନ୍ସିଂରେ ଯୋଗ ଦେଇଥିଲେ ।

ପୁସ୍ତକ ଆଲୋଚନା

# ନିଆରା ରୁଚି ଓ ଭିନ୍ନ ଦୃଷ୍ଟିର କବିକୃତି: 'ମାଟିରୁ ସ୍ୱର୍ଗଯାଏ'

ଡକ୍ଟର ବାବାଜୀ ଚରଣ ପଟ୍ଟନାୟକ

କବି–କୃତି ତ କାବ୍ୟ ବା କବିତା । ଏହା କ'ଣ କବିଙ୍କ ଭାବ–ଅଭିବ୍ୟକ୍ତିର ଭାଷା–ଶିଳ୍ପ ? ଶିଳ୍ପୀ ବା କବିଙ୍କୁ ରଙ୍ଗ ଅଥବା ଭାଷାର କାରିଗରି ଦୃଷ୍ଟିରୁ ଚିହ୍ନି ହୁଏ ନା ଅଭିବ୍ୟକ୍ତ ଭାବ ଦୃଷ୍ଟିରୁ ଜାଣିହୁଏ– ଏ ବଡ ଜଟିଳ ଏବଂ ମୀମାଂସାହୀନ ବ୍ୟକ୍ତି–ଜିଜ୍ଞାସା । କେହି ହୁଏତ କବିତାକୁ ବାଗର୍ଥ–ଲୀଳା, ଆଉ କେହି ଭାବ ଅବବୋଧ କରାଇବାର ଶୃଙ୍ଖଳିତ ଶବ୍ଦ ସଜ୍ଜା ଓ କେତେକେ ସ୍ରଷ୍ଟାର ଗୋପନ ଇଚ୍ଛା ପ୍ରକାଶର ଶାବ୍ଦ–ପ୍ରତୀକ ପ୍ରତିମା କହିଥାନ୍ତି । କବିତା କେଉଁଠିଥାଏ, ତହିଁର ସ୍ଥାୟିତ୍ୱ କିପରି ସମ୍ଭବ ଆଦି ସମ୍ପର୍କରେ ଅନେକ ଆଲୋଚନା ଚଳୁଛି । କିନ୍ତୁ ଶେଷ ସିଦ୍ଧାନ୍ତ କାହିଁ ? ତେଣୁ କବିତା ସମ୍ବନ୍ଧରେ ସୁଧୀ ସମୀକ୍ଷକ, ପ୍ରତିଭାବାନ କବି, ସାଧକ–ଋଷିମାନେ ଯାହା ଯେପରି ସିଦ୍ଧାନ୍ତ ବାଢିଥାନ୍ତି, ସେଗୁଡିକ ସାହିତ୍ୟର ବିଚାର ବିମର୍ଶ ପରିପ୍ରେକ୍ଷୀରେ ମୂଲ୍ୟବାନ । ଏଇ ଯେମିତି ମହର୍ଷି ନାରଦଙ୍କଠାରୁ ବିଦାୟ ନେଇ ଗଙ୍ଗାର ଅନତି ଦୂରରେ ବହି ଯାଉଥିବା ତମସା ନଦୀ କୂଳକୁ ଯାଇଛନ୍ତି । ସାଙ୍ଗରେ ଥା'ନ୍ତି ଶିଷ୍ୟ ଭରଦ୍ୱାଜ । ନଦୀ କୂଳର ବନ ପ୍ରଦେଶରେ ଉଭୟ ବୁଲୁଥାନ୍ତି । ପାଖେ ପାଖେ ଖେଳି ଖେଳିକା ଚାଲିଥାନ୍ତି କୌଞ୍ଚ–ପକ୍ଷୀ–ଦମ୍ପତି । ହଠାତ୍ କୌଣସି ଏକ ବାଣୁଆର ତୀରମାଡରେ ପୁରୁଷ କ୍ରୌଞ୍ଚ ମୃତ୍ୟୁବରଣ କରେ ଓ ଭାର୍ଯ୍ୟା–ପକ୍ଷୀ କରୁଣ ସ୍ୱରରେ ଭାବେ । ଏ ଦୃଶ୍ୟ ବାଲ୍ମୀକିଙ୍କୁ କରେ ବିଗଳିତ ପ୍ରାଣ । ତାଙ୍କ ମୁହଁରୁ ଉଚ୍ଚାରିତ ହୁଏ–

ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀଃ ସମାଃ
ଯତ୍‌କୌଞ୍ଚ ମିଥୁନାଦେକ ମମଧୀଃ କାମମୋହିତମ୍ ।

(ଦ୍ୱିତୀୟ ସ୍ୱର୍ଗ–ବାଳକାଣ୍ଡ)

ଅର୍ଥାତ୍, ହେ ନିଷାଦ ! ତୁମେ ସାରା ଜୀବନ ଅଶାନ୍ତିରେ କଟାଇବ । କାହିଁକିନା କାମମୋହିତ କ୍ରୌଞ୍ଚ ଦମ୍ପତିଙ୍କ ମଧ୍ୟରୁ ପୁରୁଷ ପକ୍ଷୀଟିକୁ ବିନା କୌଣସି ଅପରାଧରେ ମାରିଦେଲ । ଏତକ କହିସାରି ବାଲ୍ମୀକି ଭାବିଲେ, ଆଚ୍ଛା, କୁହା କଥାକୁ ଏମିତି ପ୍ରକାଶ କଲେ କିପରି ? ଶିଷ୍ୟ ଭରଦ୍ୱାଜଙ୍କୁ କହିଲେ:

ପାଦବଦ୍ଧୋଅକ୍ଷର ସମସ୍ତନ୍ତ୍ରୀଲୟ ସମନ୍ୱିତଃ
ଶୋକାର୍ତ୍ତସ୍ୟ ପ୍ରବୃତ୍ତୋ ମେ ଶ୍ଳୋକୋ ଭବତୁ ନାନ୍ୟଥା ।

ଶୋକ–ପୀଡିତ ଅବସ୍ଥାରେ ମୋ ତୁଣ୍ଡରୁ ଏ ଯେଉଁ ସମାନ ଅକ୍ଷର ବିଶିଷ୍ଟ ସ୍ୱର ଲୟଯୁକ୍ତ ପାଦବଦ୍ଧ ବାକ୍ୟ ବାହାରି ପଡିଲା, ତାହା ଶ୍ଳୋକ ଆଖ୍ୟାରେ ବିଖ୍ୟାତ ହେଉ, ଏହା ଅନ୍ୟଥା ନହେଉ । ନିର୍ଦ୍ଦିଷ୍ଟ ଏକ ଶୋକାକୁଳ ଘଟଣା ବାଲ୍ମୀକିଙ୍କୁ ବ୍ୟଥିତ କଲା । ଏହି ଉପଲକ୍ଷ ତାଙ୍କ ତୁଣ୍ଡରୁ ଯେଉଁ ଶୃଙ୍ଖଳାରେ ପ୍ରକାଶ ପାଇଲା– ତାହା ଶ୍ଳୋକ । ତେଣୁ କବିତା କବି ତୁଣ୍ଡର କଥାକୁ ଅବିକଳ ପ୍ରକାଶ କରିଦେବା ନୁହେଁ । ଏକଥା ବୁଝିଛନ୍ତି, ଓଡ଼ିଆ ରୋମାଣ୍ଟିକ କାବ୍ୟ ଧାରାରେ ନିଆରା ରୁଚି ଓ ଭିନ୍ନ କବି ଦୃଷ୍ଟି ହେତୁ ସ୍ୱତନ୍ତ୍ର ଧରଣର କବିତା ଲେଖି ବାଆଁରାପଣ ଦେଖାଇଥିବା ଡକ୍ଟର ଉପେନ୍ଦ୍ର ପ୍ରସାଦ ନାୟକ ।

'ମାଟିରୁ ସ୍ୱର୍ଗଯାଏ' ପୁସ୍ତକର ଭୂମିକାରେ ଡକ୍ଟର ନାୟକ ଲେଖିଛନ୍ତି– 'କଥାରୁ କବିତା ସୃଷ୍ଟି ହେଉଥିବା ମୁହୂର୍ତ୍ତ ବାସ୍ତବିକ ଏକ ବିରଳ ଅନୁଭବ । ବହୁ ସମୟରେ ବହୁ କଥା ମୁଁ କହିବାକୁ ଚାହିଛି ଅତ୍ୟନ୍ତ ମୁକ୍ତ ଭାବରେ କିନ୍ତୁ ମୋର ବକ୍ତବ୍ୟ ବା ମୋର ଅଭିବ୍ୟକ୍ତି– କବିତାରେ ଲେଖି ହୋଇଯାଇଛି । କେଉଁ କବି, ଶିଳ୍ପୀ ବା ବରପୁତ୍ରଙ୍କ ବିୟୋଗରେ ଅଥବା କେଉଁ ସ୍ମରଣୀୟ ବ୍ୟକ୍ତିବିଶେଷଙ୍କ ଉଦ୍ଦେଶ୍ୟରେ ମୋର ବକ୍ତବ୍ୟ, ମୋ ମନ ତଳର ଅନ୍ତରଙ୍ଗ ଅଭିବ୍ୟକ୍ତି କବିତାର ପାଖୁଡା ହୋଇ ଝରିପଡିଛି । ସେହିସବୁ ପାଖୁଡାମାନଙ୍କୁ ଏକାଠି କରି ଗୁନ୍ଥି ରଖିବାର ଲୋଭ ସମ୍ବରଣ କରିପାରିଲି ନାହିଁ । ତେଣୁ ଆତ୍ମପ୍ରକାଶ କରୁଛି ମୋର

ସେହି ନିବେଦିତ କବିତା ସଂକଳନ– 'ମାଟିରୁ ସ୍ୱର୍ଗଯାଏ' । ଏହି ବହିରେ ସମୁଦାୟ ଦୁଇଶହ ବାଉନ କବିତା ସଂକଳିତ । ଦୁଇଶହ ଷୋହଳ ବ୍ୟକ୍ତିତ୍ୱଙ୍କ ପ୍ରତି କବିପ୍ରାଣର ମାର୍ମିକ ନିବେଦନ ହେଉଛି କବିତାଗୁଡିକ । ଦୁଇଶହ ଷୋହଳ ବ୍ୟକ୍ତିତ୍ୱଙ୍କ ମଧ୍ୟରେ ସାହିତ୍ୟିକମାନଙ୍କ ସଂଖ୍ୟା ପାଖାପାଖି ଦୁଇଶହ । ଏଇ ଦୁଇଶହ ଜଣଙ୍କ ମଧ୍ୟରେ ଅନେକେ ମାଟିରେ ଚାଲବୁଲ କରୁଛନ୍ତି । ଯେଉଁମାନଙ୍କୁ ଅନ୍ତତଃ ଲେଖାଲେଖି ଦୃଷ୍ଟିରୁ ମୁଁ ଜାଣେ ସେମାନଙ୍କ ମଧ୍ୟରେ ମର୍ତ୍ତ୍ୟ–ଗୃହୀ ହେଉଛନ୍ତି, ଅର୍ଚ୍ଚନା ନାୟକ, ଅଭିନ୍ନ ଚନ୍ଦ୍ର ସାହୁ, କୃଷ୍ଣଚରଣ ବେହେରା, କୃଷ୍ଣଚନ୍ଦ୍ର ଭୂୟାଁ, ଦେବେନ୍ଦ୍ର ନାଥ ମାନସିଂହ, ଦିଲ୍ଲୀପ ଶ୍ରୀଚନ୍ଦନ, ମହାପାତ୍ର ନୀଳମଣି ସାହୁ, ନିରଞ୍ଜନ ମହାନ୍ତି, ପ୍ରସନ୍ନ କୁମାର ପାଟ୍ଟଶାଣୀ, ପ୍ରହରାଜ ସତ୍ୟନାରାୟଣ ନନ୍ଦ, ପ୍ରତିଭା ଶତପଥୀ, ପ୍ରଫୁଲ୍ଲ କୁମାର ମହାନ୍ତି(ଇଂରାଜୀ ପ୍ରଫେସର) ପ୍ରମୋଦ କୁମାର ମହାନ୍ତି (କବି) ଫନି ମହାନ୍ତି, ବିଭୂତି ପଟ୍ଟନାୟକ, ବରେନ୍ଦ୍ର କୃଷ୍ଣ ଧଳ, ବିନୋଦ ବିହାରୀ ପଲାଇ, ଡକ୍ଟର ବିଜୟ କୁମାର ମହାନ୍ତି (ଓଡ଼ିଆ ପ୍ରାଧ୍ୟାପକ), ବୈକୁଣ୍ଠନାଥ ସାହୁ, ମନୋରମା ବିଶ୍ୱାଳ ମହାପାତ୍ର, ଯୁଗଳ କିଶୋର ପଟ୍ଟନାୟକ, ରମାକାନ୍ତ ରଥ, ରବି ସିଂ, ରବୀନ୍ଦ୍ର ମୋହନ ସେନାପତି, ରାଜେନ୍ଦ୍ର କିଶୋର ପଣ୍ଡା, ରଜତ କୁମାର କର, ରବିନାରାୟଣ ସେନାପତି, ସୀତାକାନ୍ତ ମହାପାତ୍ର, ଶରତକୁମାର କର, ସୌଭାଗ୍ୟ କୁମାର ମିଶ୍ର, ସାତକଡି ହୋତା, ସେକ୍ ମତଲୁବ ଅଲ୍ଲୀ, ସନ୍ଧ୍ୟା ମହାନ୍ତି, ହରିହର ମିଶ୍ର, ହୁସେନ୍‌ରବି ଗାନ୍ଧୀ, ପଞ୍ଚାନନ କାନୁନ୍‌ଗୋ, ଗିରିଜା କୁମାର ବଳୀୟାର ସିଂହ, ବିଶ୍ୱଭୂଷଣ ହରିଚନ୍ଦନ, ଖଗେଶ୍ୱର ମହାପାତ୍ର, ନୀଳାଦ୍ରି ଭୂଷଣ ହରିଚନ୍ଦନ, ଗୌରହରି ଦାସ, ଶରତଚନ୍ଦ୍ର ମିଶ୍ର (ସମାଜର ପୂର୍ବତନ ସମ୍ପାଦକ), ଡକ୍ଟର ହେମନ୍ତ କୁମାର ଦାସ, କାର୍ତ୍ତିକେଶ୍ୱର ପାତ୍ର, ଶାନ୍ତନୁ କୁମାର ଆଚାର୍ଯ୍ୟ, ପ୍ରକାଶକ ପୀତାମ୍ବର ମିଶ୍ର, ପ୍ରସାଦ ହରିଚନ୍ଦନ (ବିଧାୟକ), ରାଇଚରଣ ଦାସ, ଧୀର ମଲ୍ଲିକ, ଚନ୍ଦ୍ରଶେଖର ନନ୍ଦ, ହରପ୍ରସାଦ ଦାସ, ପ୍ରତିଭା ରାୟ, ସଂଘମିତ୍ରା ମିଶ୍ର, ଅଧ୍ୟାପକ ବିଶ୍ୱରଞ୍ଜନ, କମଳ ପଟ୍ଟନାୟକ, ପ୍ରସନ୍ନ ମିଶ୍ର, ଜାନକୀ ବଲ୍ଲଭ ପଟ୍ଟନାୟକ, ପୀତବାସ ରାଉତରାୟ, ପ୍ରଦୋଷ ପଟ୍ଟନାୟକ, ହରପ୍ରସାଦ ପରିଚ୍ଛା ପଟ୍ଟନାୟକ, ସୌମ୍ୟରଞ୍ଜନ ପଟ୍ଟନାୟକ, ଗୌର ପଟ୍ଟନାୟକ ।

କବିମାନଙ୍କ ସମ୍ପର୍କରେ ଆଉ ଜଣେ କବି କବିତା ଲେଖିବାର ପରମ୍ପରା ଓଡ଼ିଆ ସାହିତ୍ୟରେ 'ଦାର୍ଢ୍ୟତାଭକ୍ତି' ରଚନା କାଳରୁ ଆରମ୍ଭ ହୋଇଛି । ଦାର୍ଢ୍ୟତାଭକ୍ତି ରସାମୃତ'ର ରଚୟିତା ସପ୍ତଦଶ ଶତାବ୍ଦୀର କବି ବୋଲି ଆଲୋଚକମାନେ ନିର୍ଦ୍ଧାରଣ କରିଥାନ୍ତି । ତେବେ ଜୀବିତ କବିମାନଙ୍କ ସମ୍ପର୍କରେ କବିତା ଲେଖିବାର ପରମ୍ପରା ଆରମ୍ଭ କରିଛନ୍ତି ବ୍ୟାସକବି ଫକୀର ମୋହନ ସେନାପତି ତାଙ୍କ 'ଉତ୍କଳଭ୍ରମଣଂ' ରଚନାରେ । ଏହି ଧାରା ନନ୍ଦକିଶୋର ବଳ, ଗଙ୍ଗାଧର ମେହେର, ଚିନ୍ତାମଣି ମହାନ୍ତି, ଗୋଦାବରୀଶ ମହାପାତ୍ର ଆଦି ଅନୁସରଣ କରିଛନ୍ତି । ସ୍ୱାଧୀନତା ପରବର୍ତ୍ତୀ କାଳର କେହି କେହି କବି ଉଲ୍ଲେଖଧର୍ମୀ ରୀତିରେ ଏହି ଧାରାର ପ୍ରୟୋଗ କରିଛନ୍ତି । ଯେପରି–

'ତୁମରି ଭୂଲତା ତଳେ ହଜିଯିବ ଦିଗ୍‌ବଳୟ
ବିନୋଦ ନାୟକ ଆଉ ସଚ୍ଚିରାଉତରା'

(କପୋତ–କପୋତୀ–ଗୁରୁପ୍ରସାଦ ମହାନ୍ତି)

ଏହାଛଡା, ରାଧାନାଥ–ମଧୁସୂଦନ–ଫକୀର ମୋହନଙ୍କ ସମୟରୁ ଯେଉଁ ଶୋକ ଗୀତିକା ରଚନାର ଧାରା ଆରମ୍ଭ ହୋଇଥିଲା, ତାହା ଏବେ ସୁଦ୍ଧା ବିଶେଷ ବ୍ୟକ୍ତିତ୍ୱଙ୍କ ସ୍ୱର୍ଗାରୋହଣ ପରେ ପରେ କେହି କେହି ଲେଖୁଛନ୍ତି । ଅଧିକନ୍ତୁ ଜୀବିତ ଓଡ଼ିଆ କବିଙ୍କ କବିତ୍ୱ ମୂଲ୍ୟାୟନ ମଧ୍ୟ କେହି କେହି କବି କବିତା ଜରିଆରେ ପ୍ରକାଶ କରିଛନ୍ତି । କୈଳାଶ ଲେଙ୍କାଙ୍କ 'ଓଲଟା ସମୟ' କବିତାକୁ ଉଦ୍ଧାର କରାଯାଉଛି–

ମୁଁ ଆଜି ଦେଖିଲି ସ୍ୱପ୍ନ
ପଦ୍ମଶ୍ରୀ ଶଚ୍ଚି ରାଉତରା
ଚଉତରା ପରେ ଏକ ବସିଛନ୍ତି, ଧରିଛନ୍ତି ପଥରର ମୂର୍ତ୍ତିଟିଏ..
ଏବଂ ମୁଁ ମାଇଲି ହାତ, ତାଙ୍କର ବି ଚେତନା ନଥିଲା ।
'ସେ ନିଜେ ପଥର ଏକ'
କାହିଁକି ପଥର...

ମୁଁ କାନ୍ଦିଲି, କୁହ କବି ! ଦିଅ ପଦେ, ପ୍ରାଣରୁ ଉତ୍ତର !
କାନ୍ଦପୁଣି, ରାତି ଅଧେ, ବୁଢା ବାପା,
ଆଈବୁଢୀ, ବାପା ବୋଉ ଭାଇ ଓ ଭାଉଜ

ସମସ୍ତେ ଧାଇଁଲେ ।

ସମସ୍ତେ କହିଲେ ମୋତେ ସବୁ କବି, ପଥର ପାଲଟି ଯିବେ । ମାଲ୍ୟାଣୀ ଆସିଛି ଏକ, ରଜାପୁଅ, କଟୁଆଳ ପୁଅଠାରୁ ହରିଜନ, ଗିରିଜନ ସବୁଙ୍କୁ ସେ ଦିନରେ ପଥର କରେ,

ଅଜା ମୋତେ ବୋଧ କଲେ
ସମୟ ଓଲଟା ଏବଂ ଓଲଟା ପାଲଟା ଦେଶ
ମଣିଷର ଘଟିଚି ଓଲଟ,
ଓଲଟିବ ବନ୍ଧୁ ତୋର– ରମାକାନ୍ତ ରଥ
ଏବଂ

ପୁଣି ସେହି କବି ଦିନେ ସମସ୍ତଙ୍କୁ ଦେବ ଜୀବନ୍ୟାସ ।

କୈଳାଶଙ୍କ କବିତାଟି ପ୍ରକାଶ ପାଇଥିଲା ନଭେମ୍ବର, ୧୯୭୫, 'ନବରବି' ପତ୍ରିକାରେ । ସେତେବେଳକୁ ରମାକାନ୍ତଙ୍କର କେତେ ଦିନର, ଅନେକ କୋଠରୀ ଓ ସନ୍ଦିଗ୍ଧମୃଗୟୀ– ଏଇ ତିନୋଟି ମାତ୍ର କବିତା ପୁସ୍ତକ ପ୍ରକାଶ ପାଇଥିଲା । କବି ଡକ୍ଟର ନାୟକଙ୍କ କବିତାଗୁଡିକରୁ କବିଙ୍କୁ ମୂଲ୍ୟାୟନ କରିବାର ତାର୍କିକଭାଷା ଅଥବା ସ୍ୱର୍ଗତ ସ୍ରଷ୍ଟାମାନଙ୍କ ଉଦ୍ଦେଶ୍ୟରେ ଶୋକଗୀତି ଢାଞ୍ଚାରେ ଆବେଗିକ ଉଦ୍‌ବେଗ ସଂଜାତକ ଶୈଳୀ ଲକ୍ଷ୍ୟ କରିହୁଏ ନାହିଁ । ଉପେନ୍ଦ୍ରଭଞ୍ଜଙ୍କ ନାମ ସାମ୍ୟଧାରୀ କବି ସେ । ତାଙ୍କ ସୃଷ୍ଟି ଗୀତିମୟ, ଅପାସୋରା ଛନ୍ଦିତ କବିତା । ନିଜର କବିତ୍ୱ ସମ୍ପର୍କରେ ତାଙ୍କର ସ୍ୱୀକାରୋକ୍ତି ହେଉଛି–

'ସାଧନାକୁ ସାଥୀକରି
ନିରବରେ ବଞ୍ଚିଛି ମୁଁ ଆଜିଯାଏ
ବ୍ୟାସ ନୁହେଁ/ ବାଲ୍ମୀକି ମୁଁ ନୁହେଁ
ମୁଁ କେବଳ କବିଟିଏ
ସତ୍ୟରେ ମୁଁ ବଞ୍ଚିବାକୁ ଚାହେଁ ।

(ସତ୍ୟରେ ମୁଁ ବଞ୍ଚିବାକୁ ଚାହେଁ– ପୃ–୩୪୩)

ବସ୍ତୁତଃ ଡକ୍ଟର ନାୟକ ଜଣେ ଆତ୍ମସଚେତନ କବି । ତେଣୁ ମୃତ ହୁଅନ୍ତୁ ବା ଜୀବନ୍ତ, ତାଙ୍କ ସମାନଧର୍ମୀ ସ୍ରଷ୍ଟାମାନଙ୍କ ପ୍ରତି ସେ ସମ୍ବେଦନାର ମରମୀଭାଷା ବ୍ୟବହାର କରିଛନ୍ତି । ଯେପରି–

ବିମୁର୍ଚ୍ଛିତ ବିଷବାଷ୍ପ ପିଇ
ଏ ମଣିଷ ବଞ୍ଚିଛି ଯା'
ଜୀବନର ସଫଳତା
ସରାଗ ଓ ସରସତା
ଯାଇଅଛି ଧୋଇ ।

ମୁଁ ଜାଣିଛି ଭଲକରି
ତୁମେ ଆଉ ଏ ଦୃଶ୍ୟକୁ
ପାରୁନାହଁ ଦେଖି
କାଳିମା କଳାରେ କିବା
ତୁମରି ହସିଲା ମୁହଁ
ଯାଇଅଛି ଶୁଖି ।

(ଅନେକ ଖୋଜିଛି– ଗୋଦାବରୀଶ ମିଶ୍ରଙ୍କ ଉଦ୍ଦେଶ୍ୟରେ– ପୃ–୮୮)

ତାଙ୍କଠାରୁ ବୟସରେ ସାନ, ଉଜ୍ଜ୍ୱଳ କବି ପ୍ରତିଭା ଗିରିଜା କୁମାର ବଳୀୟାର ସିଂହଙ୍କ ପ୍ରତି ଡକ୍ଟର ନାୟକଙ୍କ ଦେହପୋଛା ଚୁଟୁମିଲା ଭାଷା ସତେଯେପରି ନିଗିଡି ଆସିଛି ତାଙ୍କ ସ୍ନେହ ଢଳଢଳ ଆବେଗ ଉଦ୍‌ଥଳ ହୃଦୟରୁ । ଶୁଣନ୍ତୁ–

ମୁଁ ଜାଣେ
ତୁ କାହାକୁ ଭୟ କରିବା କବି ନୁହେଁ
ତୋ ଶବ୍ଦର କସରତକୁ
ଯିଏ ଯେତେ ଆକ୍ଷେପ କଲେ ବି
ତୋ ଗତିପଥ ତ ଅନେକ ଦିନରୁ ସ୍ପଷ୍ଟ ।

X X X

ମୁଁ ଅତି ନିକଟରୁ ଦେଖିଛି ତୋତେ
ଅନୁଶୀଳନ କରିଛି ତୋର କବିସତ୍ତାକୁ
ସ୍ପଷ୍ଟ ହୋଇଯାଇଛି ତୋ କବିତାର ଅଙ୍ଗ ଓ ଆତ୍ମା ।

(ପୃ– ୪୫୫–୫୬)

କବି ଡକ୍ଟର ନାୟକଙ୍କ କବିତାଗୁଡିକରୁ ଆଉ ଯେଉଁ ବୈଶିଷ୍ଟ୍ୟ ବାରିହୋଇ ପଡିଛି, ତାହାକୁ ରାଧାମୋହନ ଗଡନାୟକଙ୍କ ଭାଷାରେ କହିଲେ ହେବ, 'କବି କେବଳ କବି ନୁହେଁ– କାବ୍ୟର ନାୟକ । ଅନ୍ୟର ଉପଲକ୍ଷଣାରେ ସେ ନିଜର ସ୍ନେହପ୍ରୀତି, ସୁଖଦୁଃଖ, ଅନୁଭୂତି– ବିଭୂତିକୁ ରୂପଦିଏ । ନିଜର ପ୍ରାଣର ବ୍ୟଞ୍ଜନା ଦେଇ ଅନ୍ୟକୁ କରିଦିଏ ଅନୁରଞ୍ଜିତ– ଅମର । ମାତ୍ର ନିଜ କଥା କହି ସୁଦ୍ଧା ଲୁଚାଇ ନିଏ– ପ୍ରକାଶ କରି ସୁଦ୍ଧା ପ୍ରଚ୍ଛନ୍ନ କରି ରଖେ– ଦୀପ ଯେପରି ଚତୁର୍ଦ୍ଦିଗରେ ଆଲୋକ ବିକିରଣ କରି ଜଳେ ମାତ୍ର ନିଜର ପରିସ୍ଥିତିଟି ରଖେ ଅନ୍ଧକାର ଭିତରେ ।' (ଆଭାସ–କାଳିଦାସ) ସ୍ରଷ୍ଟାର ଜଗତ ଓ ଜୀବନ ଅନୁଭବ ଓ ଉପଲବ୍ଧିର ପ୍ରତ୍ୟୟ ବ୍ୟଞ୍ଜନା ହେଉଛି ସାହିତ୍ୟ । ସାହିତ୍ୟକୁ ଧରି ସାହିତ୍ୟିକର ଜୀବନର କିୟଦଂଶ ପଢିହୁଏ । ଅନ୍ୟକଥା କହୁ କହୁ ନିଜକଥା କେତେବେଳେ କେମିତି ସର୍ଜନ ମନୀଷାର ଅଲକ୍ଷ୍ୟରେ ସାହିତ୍ୟ ଶିଳ୍ପର ଦରକାରୀ ଉପାଦାନ ହୋଇ ଲାଖିଯାଏ । ଏହି କବିତାଗୁଡିକ ପଢିବା କାଳରେ ପାଠକ ବେଳେବେଳେ କବି ଡକ୍ଟର ନାୟକଙ୍କ କାବ୍ୟାଦର୍ଶ, ସମାଜ ପ୍ରତି ପ୍ରତିକ୍ରିୟା ଓ ସଂକଳ୍ପ–ସ୍ୱୀକାରୋକ୍ତିକୁ ସାମ୍ନା କରିବେ, ଯାହା ତାଙ୍କ ସର୍ଜନ–କର୍ମର ଅନ୍ୟତମ ରୋମାଣ୍ଟିକ ଗୁଣ ଓ ବୈଶିଷ୍ଟ୍ୟ ।

କାଳୀଚରଣ ପଟ୍ଟନାୟକଙ୍କ ସମ୍ପର୍କରେ ଲିଖିତ 'ଇତିହାସ କଥା କହେ' କବିତାରୁ କବିଙ୍କ ଚିତ୍ତବୃତ୍ତିର ସ୍ୱୀକାରୋକ୍ତି ପଢ଼ିହୁଏ–

ତୁମକୁ ମୁଁ ଦେଖିଥିଲି କୈଶୋରରେ
ଅନୁପ୍ରାଣିତ ହୋଇଥିଲି
ତୁମ ପ୍ରଜ୍ଞା, ତୁମ ଚେତନାରେ
ଇଚ୍ଛାଥିଲା ରଙ୍ଗୀନ୍ ହେବାକୁ ନିଜେ
ଏ ଜୀବନ ରଙ୍ଗମଞ୍ଚ ପରେ । (ପୃ–୪୮)

ବେଳେବେଳେ କବିଙ୍କ ପ୍ରତିକ୍ରିୟା ବି ବାରି ହୋଇପଡେ, ଯଥା–

'ସାହିତ୍ୟର ବଡଦାଣ୍ଡ ଆଜି ଗ୍ଲାନିମୟ
ଦୀର୍ଘ ଫାଙ୍କ ଖାଁ ଖାଁ କେବଳ ଶୂନ୍ୟତା
ହିଂସା, ଈର୍ଷା, ଅସୂୟାରେ
ନିଜ ପାଦ ଟଣାଟଣି
ସୃଷ୍ଟି ଆଉ ସର୍ଜନାରେ ଖାଲି କୃତ୍ରିମତା ।

(ଦୃଷ୍ଟି ଫେରାଅ, ହେ ଗୋଦାବରୀଶ:–ପୃ ୯୩)

ନିଜ କାବ୍ୟାଦର୍ଶ ସମ୍ବନ୍ଧରେ କବି ସୂଚାଇଛନ୍ତି:

ମୁଁ––
ସରଳ ସହଜ ଭାଷାରେ
ଅନନ୍ୟ ଶୈଳୀରେ
ଲଳିତ ପଦାବଳୀରେ
ଦୁର୍ବୋଧତାଠାରୁ ଦୀର୍ଘ ବ୍ୟବଧାନରେ ରହି
ସାରା ଜନଗଣଙ୍କ ପାଇଁ ଆଙ୍କିଦିଏ
କବିତା କୋଣାର୍କ ।
ସ୍ୱଚ୍ଛ ପରିଚ୍ଛନ୍ନ ଅଙ୍ଗ ଓ ଆତ୍ମାରେ
କବିତାର ଛାଞ୍ଚ ତିଆରି କରିପାରେ ବୋଲି ତ
ପାଠକମାନଙ୍କର ଅଧିକ ନିକଟବର୍ତ୍ତୀ ।
ଏହା ମୋର ଅଯଥା ପୌଢ଼ି ନୁହେଁ ।
ଅକାରଣ ଗର୍ବ ଦମ୍ଭ ନୁହେଁ
ଏହା ମୋର ନିରନ୍ତର ଅନୁଭବ ମାତ୍ର
ଛନ୍ଦକୁ ମୁଁ ଛାଡିନାହିଁ କେବେ ।

(ଦିବ୍ୟ ଅଦିବ୍ୟ ଶବ୍ଦର ସୌଦାଗର–ପୃ.୪୨୮)

ଡକ୍ଟର ଉପେନ୍ଦ୍ର ପ୍ରସାଦ ନାୟକ ଛନ୍ଦୋବଦ୍ଧ ରଚନାକୁ କବିତା ବୁଝନ୍ତି । ଏ ପୁସ୍ତକରେ ସଂକଳିତ କବିତାଗୁଡିକରୁ ତାଙ୍କ ଦ୍ୱାରା ପ୍ରୟୋଗ କରାଯାଇଥିବା ବହୁବିଧ ଛନ୍ଦ ବୈଚିତ୍ର୍ୟ ଯେକେହି ପାଠକ ଉପଭୋଗ କରିପାରିବେ । ମେଳରୀତି, ଯତିପ୍ରକରଣ, ମୁକ୍ତଛନ୍ଦ ବ୍ୟବହାରରେ କବିଙ୍କ ପାରଦର୍ଶିତା ଲକ୍ଷଣୀୟ । ସହଜ ବୋଧ୍ୟ ଭାଷା ତାଙ୍କ କବିତାର ଭାବବୋଧରେ ସହାୟକ ହୋଇଛି । ହେଲେ କବିତ୍ୱ ଚାତୁରୀ ପାଇଁ ବେଳେବେଳେ ତାଙ୍କର ତିର୍ଯ୍ୟକ କଥନରୀତି ବ୍ୟଞ୍ଜନାଧର୍ମୀ ଭାଷା ଅବ୍ୟବହାରର କ୍ଷତିପୂରଣ କରିଛି । ପ୍ରାୟ ଅଧିକାଂଶ କବିତାରେ 'ରଙ୍ଗ' ଶବ୍ଦର ବ୍ୟବହାର ବୈଚିତ୍ର୍ୟ ଉପଲବ୍ଧ ହୁଏ । ମୋଟ ଉପରେ 'ମାଟିରୁ ସ୍ୱର୍ଗଯାଏ' ହେଉଛି ଡକ୍ଟର ଉପେନ୍ଦ୍ର ପ୍ରସାଦ ନାୟକଙ୍କ ନିଆରା ରୁଚି ଓ ଭିନ୍ନ ଦୃଷ୍ଟି ପରିପୁଷ୍ଟ କବିତାବଳୀର ଉଲ୍ଲେଖଯୋଗ୍ୟ କୃତି ।

ବି/୪୯, ସେକ୍ଟର–୮
ସିଡିଏ, କଟକ–୧୪



# ଅତିରିକ୍ତ ବଜେଟ୍ ପାଇଁ ବ୍ୟୟ ବରାଦ

## (ତା ୨୯.୧୧.୨୦୧୩ ରିଖ)

ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ତତ୍ତ୍ୱାବଧାନରେ ମାନ୍ୟବର ଅର୍ଥମନ୍ତ୍ରୀ ଶ୍ରୀ ପ୍ରସନ୍ନ ଆଚାର୍ଯ୍ୟ ଆଜି ବିଧାନସଭାରେ ୨୦୧୩–୧୪ ଆର୍ଥିକ ବର୍ଷ ପାଇଁ ପ୍ରଥମ ଅତିରିକ୍ତ ବଜେଟ୍ ଉପସ୍ଥାପନ କରିଛନ୍ତି । ଏଥିପାଇଁ ୯୪୨୧.୨୫ କୋଟି ଟଙ୍କା ଏବଂ ୭୧୪୪.୫୮ କୋଟି ଟଙ୍କାର ମୋଟ ବ୍ୟୟ ବରାଦ ଏବଂ ନିଟ୍ ବ୍ୟୟ ବରାଦ ଯଥାକ୍ରମେ ବିଧାନସଭାର ଅନୁମୋଦନ ପାଇଁ ଉପସ୍ଥାପନ କରାଯାଇଛି ।

(କୋଟି ଟଙ୍କା ହିସାବରେ)

| କ୍ଷେତ୍ର | ମୋଟ | ନିଟ୍ |
|---|---|---|
| ଅଣଯୋଜନା | ୫୯୫୦.୪୫ | ୩୭୪୩.୭୮ |
| ରାଜ୍ୟ ଯୋଜନା | ୨୯୦୯.୬୩ | ୨୮୩୯.୬୩ |
| କେନ୍ଦ୍ର ଯୋଜନା | ୭୯.୧୩ | ୭୯.୧୩ |
| କେନ୍ଦ୍ର ପ୍ରବର୍ତ୍ତିତ ଯୋଜନା | ୪୮୨.୦୪ | ୪୮୨.୦୪ |
| ମୋଟ | ୯୪୨୧.୨୫ | ୭୧୪୪.୫୮ |

ଏକ ଜନମଙ୍ଗଳ ରାଷ୍ଟ୍ରରେ ସମ୍ବଳର ସମ୍ଭାବ୍ୟପ୍ରାପ୍ତି ଏବଂ ଜନସାଧାରଣଙ୍କ ଆଶା ଓ ଆକାଂକ୍ଷାକୁ ଆଖି ଆଗରେ ରଖି ଅତିରିକ୍ତ ବଜେଟ୍ ପାଇଁ ବ୍ୟୟବରାଦ ନିଶ୍ଚିତ ଭାବେ ଜନସାଧାରଣଙ୍କର ମଙ୍ଗଳ ଓ ରାଜ୍ୟର ଉନ୍ନୟନରେ ସହାୟକ ହେବ । ନିମ୍ନଲିଖିତ ପରିପ୍ରେକ୍ଷୀରେ ଅତିରିକ୍ତ ବ୍ୟୟବରାଦର ଆବଶ୍ୟକତା ଅଛି ।

୧. ବଜେଟ୍ ପରବର୍ତ୍ତୀ ସମୟରେ ନୂତନ ଯୋଜନା ଓ କାର୍ଯ୍ୟକ୍ରମ ପାଇଁ ନିଆଯାଇଥିବା ନିଷ୍ପତ୍ତି

୨. ବାତ୍ୟା ଓ ବନ୍ୟାଗ୍ରସ୍ତ ଅଞ୍ଚଳରେ ସହାୟତା, ମରାମତି ଏବଂ ଥଇଥାନ ପାଇଁ ଅତିରିକ୍ତ ବ୍ୟୟବରାଦ

୩. ବିଶ୍ୱବ୍ୟାଙ୍କ ଓ ଏସିଆ ଉନ୍ନୟନ ବ୍ୟାଙ୍କରୁ ବାତ୍ୟା ପରବର୍ତ୍ତୀ ସମୟରେ ପୁନଃନିର୍ମାଣ ଓ ବିପର୍ଯ୍ୟୟ ପ୍ରଶମନ କାର୍ଯ୍ୟ ନିମନ୍ତେ ମିଳିଥିବା ଆର୍ଥିକ ସହାୟତା

୪. ରାଜ୍ୟ ଯୋଜନାରେ କେନ୍ଦ୍ର ପ୍ରବର୍ତ୍ତିତ ଯୋଜନା ପାଇଁ ରାଜ୍ୟ ଅଂଶ ନିମନ୍ତେ

୫. ରାଜ୍ୟ ଯୋଜନା କ୍ଷେତ୍ରରେ ଚାଲୁରହିଥିବା ମଧୁବାବୁ ପେନ୍‌ସନ୍ ଯୋଜନା, ବହିଃସାହାଯ୍ୟ ପ୍ରାପ୍ତ ପ୍ରକଳ୍ପ, ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି ଇତ୍ୟାଦି ପାଇଁ ଅତିରିକ୍ତ ବ୍ୟୟବରାଦ

୬. ଚାଲୁ ରହିଥିବା କେନ୍ଦ୍ର ଯୋଜନା ଓ କେନ୍ଦ୍ର ପ୍ରବର୍ତ୍ତିତ ଯୋଜନା ପାଇଁ ଅତିରିକ୍ତ ବ୍ୟୟବରାଦ

୭. ଓଡ଼ିଶା ବିପର୍ଯ୍ୟୟ ପ୍ରଶମନ ପାଣ୍ଠିରୁ ନିଆଯାଇଥିବା ଅର୍ଥର ଅଗ୍ରୀମ ଭରଣା ନିମନ୍ତେ

୮. ବିଭିନ୍ନ ଦାବିରେ ହିସାବ ସମାୟୋଜନ ନିମନ୍ତେ (Accounting adjustment under different Demand) ।

### ଅତିରିକ୍ତ ବଜେଟ୍ ମୁଖ୍ୟାଂଶ

**ଅଣଯୋଜନା**

- ବାତ୍ୟା ଓ ବନ୍ୟା ପ୍ରପୀଡିତ ଅଞ୍ଚଳରେ ସହାୟତା ଥଇଥାନ ଓ ନିର୍ମାଣ–୨୦୭୪.୩୬ କୋଟି ଟଙ୍କା (ଜାତୀୟ ବିପର୍ଯ୍ୟୟ ମୁକାବିଲା ପାଣ୍ଠି ଓ ରାଜ୍ୟ ବିପର୍ଯ୍ୟୟ ମୁକାବିଲା ପାଣ୍ଠିରୁ ଯଥାକ୍ରମେ ୧୮୦୦ କୋଟି ଟଙ୍କା ଏବଂ ୨୭୪.୩୬ କୋଟି ଟଙ୍କା ମିଳିବାର ଆଶାଅଛି)

- ବାତ୍ୟା କ୍ଷତିଗ୍ରସ୍ତ ଅଞ୍ଚଳରେ କୃଷକମାନଙ୍କୁ ମଞ୍ଜି ଏବଂ ସାର ଉପରେ ସରକାରୀ ପ୍ରୋତ୍ସାହନ– ୨୧.୭୯ କୋଟି ଟଙ୍କା
- ବନ୍ୟା ଓ ବାତ୍ୟାଦ୍ୱାରା କ୍ଷତିଗ୍ରସ୍ତ କୋଠାବାଡିଗୁଡିକର ମରାମତି ଓ ପୁନରୁଦ୍ଧାର–୧୨.୦୦ କୋଟି ଟଙ୍କା
- ବନ୍ୟା ଓ ବାତ୍ୟା ପ୍ରଭାବିତ ଅଞ୍ଚଳରେ ଉଠା ଜଳସେଚନ ପଏଣ୍ଟ ଏବଂ କାର୍ଯ୍ୟର ମରାମତି ଓ ପୁନଃରୁଦ୍ଧାର– ୫.୦୦ କୋଟି ଟଙ୍କା
- ଗଞ୍ଜାମ ଜିଲ୍ଲାର ବାତ୍ୟା ପ୍ରଭାବିତ ଗ୍ରାମପଞ୍ଚାୟତ ପାଇଁ ଜେନେରେଟର କ୍ରୟ– ୪.୫୦ କୋଟି ଟଙ୍କା
- ବିଭିନ୍ନ ସରକାରୀ ବିଭାଗ ଏବଂ ଉଠା ଜଳସେଚନ ନିଗମର ତା ୩୧.୦୩.୨୦୧୨ରିଖ ସୁଦ୍ଧା ବକେୟା ବିଦ୍ୟୁତ୍ ଦେୟର ଏକକାଳୀନ ପୈଠ ଏବଂ ଗ୍ରୀଡ୍‌କୋର ଖୁଚୁରା ଯୋଗାଣ ଟାରିଫ୍ (Retail Supply Tariff) ହ୍ରାସ ବିନିମୟରେ ଅଂଶଧନ ବିନିଯୋଗ–୭୯୬.୭୦ କୋଟି ଟଙ୍କା (One Time Settlement of Arrear Electricity dues of Government Departments & OLIC up to 31.03.2012 and share Capital Investment in GRIDCO in lieu of reduced RST During 2011-12 Rs. 796.70 Crore).
- ଅନୁସୂଚିତ ଜାତି ଓ ଜନଜାତି ଛାତ୍ରଛାତ୍ରୀଙ୍କ ପ୍ରାକ୍ ମାଟ୍ରିକ୍ ବୃତ୍ତି–୩୨.୧୮ କୋଟି ଟଙ୍କା
- ଅନୁସୂଚିତ ଜାତି ଓ ଜନଜାତି ବିଭାଗ ଅନ୍ତର୍ଗତ ଛାତ୍ରାବାସମାନଙ୍କରେ ସ୍ୱତନ୍ତ୍ର ଶିକ୍ଷା ଭିତ୍ତିଭୂମି (ଖଟ, ମଶାରୀ ଇତ୍ୟାଦି କ୍ରୟ ପାଇଁ)– ୯.୦୦ କୋଟି ଟଙ୍କା
- ବେସରକାରୀ ବିଦ୍ୟାଳୟ, ଟୋଲ୍ ଓ ମଦ୍ରାସାକୁ ଅନୁଦାନ– ୧୫.୪୪ କୋଟି ଟଙ୍କା
- ଜିଲ୍ଲା ସଦର ମହକୁମା ଚିକିତ୍ସାଳୟରେ ମ୍ୟାଲେରିଆ ପରାଙ୍ଗପୃଷ୍ଟର ଚିହ୍ନଟ ନିମନ୍ତେ ଯନ୍ତ୍ରପାତି କ୍ରୟ (କ୍ଷୁଦ୍ର ଅସ୍ତ୍ରୋପଚାର ଯନ୍ତ୍ରପାତି ଏବଂ Q.B.C Auto-read Haematology Analyser Machine- 6.55 କୋଟି ଟଙ୍କା
- ରେଭେନ୍ସା ବିଶ୍ୱବିଦ୍ୟାଳୟର ଭିତ୍ତିଭୂମି ଉନ୍ନୟନ ପାଇଁ ଅନୁଦାନ (ଐତିହ୍ୟସମ୍ପନ୍ନ ଗୃହର ସୁରକ୍ଷା)– ୫.୦୦ କୋଟି ଟଙ୍କା
- ପୋଲିସ୍‌ବାହିନୀର ଆଧୁନିକୀକରଣ– ୭.୨୦ କୋଟି ଟଙ୍କା
- ଅକ୍ଟୋବର ୨୦୧୩ରୁ କଏଦୀମାନଙ୍କର ଖୋରାକି ଭତ୍ତା ବୃଦ୍ଧି– ୩.୨୭ କୋଟି ଟଙ୍କା
- ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦଗୁଡିକର ନିର୍ବାଚିତ ପ୍ରତିନିଧିମାନଙ୍କର ବୈଠକି ଭତ୍ତା ଏବଂ ପାରିତୋଷିକ ବୃଦ୍ଧି– ୧୩.୪୪ କୋଟି ଟଙ୍କା
- ଓଡ଼ିଶା ଉଠା ଜଳସେଚନ ନିଗମକୁ ଅନୁଦାନ ଓ ସମ୍ପୂର୍ଣ୍ଣ ହୋଇଥିବା କାର୍ଯ୍ୟ ପାଇଁ ପ୍ରୋତ୍ସାହନ–୨୫.୮୮ କୋଟି ଟଙ୍କା
- ନଦୀବନ୍ଧ ରାସ୍ତାଗୁଡିକର ରକ୍ଷଣାବେକ୍ଷଣ– ୮.୦୦କୋଟି ଟଙ୍କା

## ଯୋଜନା

### ବଜେଟ୍ ପରବର୍ତ୍ତୀ ଘୋଷଣା ଓ ନୂତନ ଯୋଜନା

- ବାତ୍ୟାପରେ ବିଶ୍ୱବ୍ୟାଙ୍କ ଓ ଏସିଆ ଉନ୍ନୟନ ବ୍ୟାଙ୍କର ଆର୍ଥିକ ସହାୟତାରେ ପୁର୍ନଗଠନ ଏବଂ ବିପର୍ଯ୍ୟୟ ପ୍ରଶମନ (ବହୁମୁଖୀ ବାତ୍ୟା ଆଶ୍ରୟ କେନ୍ଦ୍ର ନିର୍ମାଣ, ଗୃହ ନିର୍ମାଣ, ଉପକୂଳବର୍ତ୍ତୀ ଅଞ୍ଚଳରେ ବୃକ୍ଷ ରୋପଣ, ସମୁଦ୍ର ଓ ନଦୀ ଜନିତ ଜଳ ପ୍ରବାହ ଯୋଗୁଁ ମୃର୍ତ୍ତିକା କ୍ଷୟ ରୋକିବା ନିମନ୍ତେ ବନ୍ଧ ନିର୍ମାଣ ଓ ବାତ୍ୟାବେଳେ ବିଦ୍ୟୁତ୍ ସରବରାହ ଅବ୍ୟାହତ ରଖିବା ପାଇଁ– ୨୦୦ କୋଟି ଟଙ୍କା
- ଯୁକ୍ତଦୁଇ ମେଧାବୀ ଛାତ୍ରଛାତ୍ରୀଙ୍କୁ ଲାପଟପ୍ ଯୋଗାଣ– ୩୦.୦୦ କୋଟି ଟଙ୍କା
- ଛାତ୍ରୀମାନଙ୍କର ଆତ୍ମ ସୁରକ୍ଷା ପ୍ରଶିକ୍ଷଣ– ୬.୨୫ କୋଟି ଟଙ୍କା
- ବାତ୍ୟା ଓ ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳର ଛାତ୍ରଛାତ୍ରୀମାନଙ୍କୁ ସ୍କୁଲ ୟୁନିଫର୍ମ ଓ ପାଠ୍ୟ ପୁସ୍ତକ ନିମନ୍ତେ ଆର୍ଥିକ ସହାୟତା– ୩୦.୦୦ କୋଟି ଟଙ୍କା
- ଅନୁସୂଚିତ ଜାତି ଓ ଜନଜାତି ଅନ୍ତେବାସୀ ଓ ଅନ୍ତେବାସିନୀଙ୍କୁ ପରିଚାଳନାଗତ ଭତ୍ତା ଜନିତ ପ୍ରାକ୍ ମାଟ୍ରିକ୍ ବୃତ୍ତି– ୧୪.୫୨ କୋଟି ଟଙ୍କା
- ଓଡ଼ିଶା ନଗର ପରିବହନ ପାଣ୍ଠି ସ୍ଥାପନ (Odisha Urban Transport Fund)- 3.00 କୋଟି ଟଙ୍କା

- ଲୌହ ସେତୁ (Bailey Bridge) ନିର୍ମାଣ– ୨.୫ କୋଟି ଟଙ୍କା
- ଉଦ୍ୟାନ କୃଷି ମିଶନ ପ୍ଲସ– ୧୫.୧୦ କୋଟି ଟଙ୍କା
- ବେଡାବାହାଲ ଠାରେ ଉଚ୍ଚ କ୍ଷମତା ସମ୍ପନ୍ନ ବୃହତ୍ ଶକ୍ତି ପ୍ରକଳ୍ପ ପାଇଁ ଭୂମି କ୍ରୟ ନିମନ୍ତେ ଓଡ଼ିଶାର ଅଂଶ– ୨୩୩.୫୬ କୋଟି ଟଙ୍କା
- ଧଉଳିଠାରେ ପର୍ଯ୍ୟଟନ କାର୍ଯ୍ୟକ୍ରମର ବିକାଶ ପାଇଁ ଜମି ଅଧିଗ୍ରହଣ– ୧୩.୫୧ କୋଟି ଟଙ୍କା
- ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳର ଥଇଥାନ କାର୍ଯ୍ୟ– ୩୦.୦୦ କୋଟି ଟଙ୍କା

**ଚାଲୁ ରହିଥିବା ଯୋଜନା ନିମିତ୍ତ ଅତିରିକ୍ତ ବ୍ୟୟ ବରାଦ**

- ନିରାଶ୍ରୟ ଲୋକମାନଙ୍କ ପାଇଁ ମଧୁବାବୁ ପେନ୍‌ସନ ଯୋଜନା– ୧୯୯.୮୭ କୋଟି ଟଙ୍କା
- ଅଙ୍ଗନବାଡି କେନ୍ଦ୍ର ନିର୍ମାଣ– ୯୦.୫୧ କୋଟି ଟଙ୍କା
- ସ୍ୱୟଂସହାୟକ ଗୋଷ୍ଠୀ (ଆର୍ଥିକ ସହାୟତା)– ୨୬.୦୭ କୋଟି ଟଙ୍କା
- ଗରିବ ପରିବାରମାନଙ୍କ ପାଇଁ ବ୍ୟକ୍ତିଗତ ଦୁର୍ଘଟଣା ବୀମା ଯୋଜନା– ୧୮.୮୯ କୋଟି ଟଙ୍କା
- ଇନ୍ଦିରା ଗାନ୍ଧୀ ଜାତୀୟ ବିଧବା ପେନ୍‌ସନ୍ ଯୋଜନା– ୧୦୬.୯୮ କୋଟି ଟଙ୍କା
- ଅତିରିକ୍ତ ପୁଷ୍ଟି ଯୋଗାଣ କାର୍ଯ୍ୟକ୍ରମ– ୧୪୨.୨୦ କୋଟି ଟଙ୍କା
- ରାଜୀବ ଗାନ୍ଧୀ କିଶୋରୀ ସଶକ୍ତିକରଣ ଯୋଜନା– ୧୨.୯୭ କୋଟି ଟଙ୍କା
- ଚିକିତ୍ସାସମ୍ବନ୍ଧୀୟ ଉପକରଣ କ୍ରୟ– ୫୦.୦୦ କୋଟି ଟଙ୍କା
- ତ୍ୱରିତ ଡାକ୍ତରି ଆମ୍ବୁଲାନ୍ସ ସେବା– ୫.୦୦ କୋଟି ଟଙ୍କା
- ମୋ ମଶାରୀ– ୫.୦୦କୋଟି ଟଙ୍କା
- ବିଜୁ କୃଷକ କଲ୍ୟାଣ ଯୋଜନା– ୩୧.୦୦ କୋଟି ଟଙ୍କା
- ରାଷ୍ଟ୍ରୀୟ କୃଷକ ବିକାଶ ଯୋଜନା– ୩୫.୦୦ କୋଟି ଟଙ୍କା
- ମଞ୍ଜି, ସାର ଏବଂ ଜୈବିକ ସାର (କୃଷି) ଉପରେ ନିବେଶ ସରକାରୀ ପ୍ରୋତ୍ସାହନ (Input Subsidy)- 12.50 କୋଟି ଟଙ୍କା
- ଆଳୁ, ପନିପରିବା ଏବଂ ମସଲା ଉନ୍ନୟନ କାର୍ଯ୍ୟକ୍ରମ– ୯.୦୦ କୋଟି ଟଙ୍କା
- କୃଷି ଯନ୍ତ୍ରପାତି ସାମଗ୍ରୀ ଏବଂ ଡିଜେଲ ପମ୍ପସେଟ୍‌କୁ ଲୋକପ୍ରିୟ କରାଇବା ଉଦ୍ଦେଶ୍ୟରେ– ୫୦.୦୦ କୋଟି ଟଙ୍କା
- ଉନ୍ନତ କିସମର କୃଷି ପଦ୍ଧତି/ପ୍ରଣାଳୀର ପରିବୃଦ୍ଧି ନିମନ୍ତେ– ୬୫.୬୧ କୋଟି ଟଙ୍କା
- ବିଜୁ ଗ୍ରାମ ଜ୍ୟୋତି ଯୋଜନା– ୫୦.୦୦ କୋଟି ଟଙ୍କା
- ବିଦ୍ୟାଳୟ ଓ ଅଙ୍ଗନବାଡି କେନ୍ଦ୍ରରୁ ଟ୍ରାନ୍ସଫରମର ସ୍ଥାନାନ୍ତର ନିମନ୍ତେ– ୫.୦୦ କୋଟି ଟଙ୍କା
- ଯାନ୍ତ୍ରିକ ବିଦ୍ୟାଳୟ/ପଲିଟେକନିକ୍‌ର ଭିତ୍ତିଭୂମି ଉନ୍ନୟନ– ୧୫.୦୦ କୋଟି ଟଙ୍କା
- ବୈଷୟିକ ବିଶ୍ୱବିଦ୍ୟାଳୟ/ ଯାନ୍ତ୍ରିକ ମହାବିଦ୍ୟାଳୟର ଭିତ୍ତିଭୂମି ଉନ୍ନୟନ– ୧୫.୦୦ କୋଟି ଟଙ୍କା
- ମତ୍ସ୍ୟଜୀବୀଙ୍କ ପାଇଁ ଗୃହ ନିର୍ମାଣ– ୫.୭୫ କୋଟି ଟଙ୍କା
- ସାଧାରଣ ଜୈବିକ ଚିକିତ୍ସା ବର୍ଜ୍ୟ ବସ୍ତୁ ପରିଚାଳନା ଏବଂ ନିର୍ଗମନ କାର୍ଯ୍ୟକ୍ରମ ନିମନ୍ତେ– ୨.୦୦ କୋଟି ଟଙ୍କା
- ବନ୍ୟ ଜନ୍ତୁ ସଂରକ୍ଷଣ ସମେତ କୃଷ୍ଣସାର ମୃଗ ଏବଂ ମଧୁର ଜଳରେ ବାସ କରୁଥିବା କଇଁଛଙ୍କ ସୁରକ୍ଷା ନିମନ୍ତେ– ୨.୨୫କୋଟି ଟଙ୍କା
- ଖୁଚୁରା ବ୍ୟବସାୟୀଠାରୁ ପାଇକାରୀ ବ୍ୟବସାୟୀ ପର୍ଯ୍ୟନ୍ତ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ସାଧାରଣ ବଣ୍ଟନ ବ୍ୟବସ୍ଥା କାର୍ଯ୍ୟକ୍ରମର କମ୍ପ୍ୟୁଟରୀକରଣ–୧୧.୦୮ କୋଟି ଟଙ୍କା
- ୨୦୦୪ ମସିହାରେ ବିଜ୍ଞାପିତ ହୋଇଥିବା ବେସରକାରୀ ମହାବିଦ୍ୟାଳୟମାନଙ୍କୁ ବକେୟା ଅନୁଦାନ ପ୍ରଦାନ– ୧୮.୩୮ କୋଟି ଟଙ୍କା
- ଜାଇକା ଅଧୀନରେ ଭୁବନେଶ୍ୱର ଏବଂ କଟକ ସହରରେ ସମନ୍ୱିତ ପରିମଳ ଯୋଜନାର କାର୍ଯ୍ୟାନ୍ୱୟନ– ୧୮୧.୪୯ କୋଟି ଟଙ୍କା

- ନକ୍ସଲ ପ୍ରବଣ ଅଞ୍ଚଳରେ ନିର୍ମାଣ ହେବାକୁ ଥିବା ହେଲିପ୍ୟାଡ୍‌ର ସଂଯୋଗୀକରଣ ପାଇଁ ରାସ୍ତା ଓ ସୁରକ୍ଷିତ କ୍ୟାମ୍ପ ନିର୍ମାଣ ପାଇଁ– ୧୬.୩୦ କୋଟି ଟଙ୍କା
- ନକ୍ସଲ ପ୍ରବଣ ଅଞ୍ଚଳରେ ଥାନା ନିର୍ମାଣ ଓ ସଶକ୍ତିକରଣ– ୪୫.୯୪ କୋଟି ଟଙ୍କା
- ବ୍ରହ୍ମପୁର ଓ ରାଉରକେଲାଠାରେ ପ୍ରଯୁକ୍ତି, ବୈଷୟିକ ପାର୍କ ପ୍ରତିଷ୍ଠା– ୩.୯୦ କୋଟି ଟଙ୍କା
- ଇ–ଜିଲ୍ଲା ଯୋଜନା ପ୍ରଣୟନ– ୧.୮୩ କୋଟି ଟଙ୍କା
- ସ୍ୱତନ୍ତ୍ର ସମସ୍ୟା ପାଣ୍ଠି– ୩୫.୦୦ କୋଟି ଟଙ୍କା
- ପଶ୍ଚିମ ଓଡ଼ିଶା ବିକାଶ ପରିଷଦକୁ ଅନୁଦାନ– ୨୦.୦୦ କୋଟି ଟଙ୍କା
- ସାଧାରଣ ଉଦ୍ୟୋଗ ସଂସ୍କାର କାର୍ଯ୍ୟକ୍ରମକୁ ଚାଲୁ ରଖିବା ପାଇଁ ଓଡ଼ିଶା ରାଜ୍ୟ ନବୀକରଣ ପାଣ୍ଠି ସମିତି ନିମନ୍ତେ କର୍ପସ ପାଣ୍ଠି– ୮.୨୮ କୋଟି ଟଙ୍କା
- ତୃପ୍ତି (Targeted Rural Initiative for poverty Termination & Infrastructure TRIPTI- 89.83 କୋଟି ଟଙ୍କା
- ପଛୁଆ ଅଞ୍ଚଳ ଅନୁଦାନ ପାଣ୍ଠି– ୧୦୩.୧୭ କୋଟି ଟଙ୍କା
- ଇନ୍ଦିରା ଆବାସ ଯୋଜନା (କେନ୍ଦ୍ର ପ୍ରବର୍ତ୍ତିତ ଯୋଜନା ପାଇଁ ରାଜ୍ୟ ଅଂଶ) ୨୪୨.୩୪ କୋଟି ଟଙ୍କା
- ରାଜୀବ ଗାନ୍ଧୀ ପଞ୍ଚାୟତ ସଶକ୍ତିକରଣ ଅଭିଯାନ– ୨୫.୦୦ କୋଟି ଟଙ୍କା
- ମୋ' କୁଡିଆ– ୪୫.୩୭ କୋଟି ଟଙ୍କା
- ବିଜୁ ସେତୁ ଯୋଜନା– ୨୫.୦୦ କୋଟି ଟଙ୍କା
- ଜାତୀୟ ଭୂସଂସ୍କାର ପରିଚାଳନା କାର୍ଯ୍ୟକ୍ରମ ପାଇଁ ରାଜ୍ୟ ଅନୁରୂପ ଅଂଶ– ୬୩.୧୭ କୋଟି ଟଙ୍କା
- କଳିଙ୍ଗ ଷ୍ଟାଡିୟମଠାରେ ଦ୍ୱିତୀୟ କୃତ୍ରିମ ହକି ଘାସ ଗାଲିଚା– ୫.୨୧ କୋଟି ଟଙ୍କା
- ରାଜ୍ୟରେ କ୍ରୀଡା ଭିତ୍ତିଭୂମି ଉନ୍ନୟନ– ୨.୪୮ କୋଟି ଟଙ୍କା
- ବିଜୁ ଯୁବ ସଶକ୍ତିକରଣ ଯୋଜନା– ୫.୫୦ କୋଟି ଟଙ୍କା
- ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମ ନିମନ୍ତେ ରୋଷେଇ ଘର ନିର୍ମାଣ– ୧୩୧.୧୬ କୋଟି ଟଙ୍କା
- ବେସରକାରୀ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ, ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ଏବଂ ମଦ୍ରାସାକୁ ଅନୁଦାନ (ବ୍ଲକ ଅନୁଦାନ) – ୮୧.୯୨ କୋଟି ଟଙ୍କା
- ଅନୁସୂଚିତ ଜାତି ଓ ଜନଜାତି ଛାତ୍ରଛାତ୍ରୀମାନଙ୍କୁ ପ୍ରାକ୍ ମାଟ୍ରିକ ବୃତ୍ତି ପ୍ରଦାନ– ୧୮.୧୬ କୋଟି ଟଙ୍କା
- ଅନ୍ୟାନ୍ୟ ପଛୁଆ ବର୍ଗ ଛାତ୍ରଛାତ୍ରୀମାନଙ୍କୁ ପ୍ରାକ୍ ମାଟ୍ରିକ ବୃତ୍ତି ପ୍ରଦାନ (ରାଜ୍ୟ ଅଂଶ)– ୩.୪୩ କୋଟି ଟଙ୍କା
- ଜାତୀୟ ଏବଂ ଆନ୍ତର୍ଜାତୀୟ ସ୍ତରରେ ମେଳା ଓ ମହୋତ୍ସବ ନିମନ୍ତେ ଖବରକାଗଜ ମାନଙ୍କୁ ବିଜ୍ଞାପନ ଓ ରାଜ୍ୟ ଯୁବ ନୀତି ପାଇଁ ଇକୋ ପର୍ଯ୍ୟଟନ ପ୍ରଶିକ୍ଷଣ କେନ୍ଦ୍ର– ୬.୦୦ କୋଟି ଟଙ୍କା
- ଶ୍ରୀଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ନବକଳେବର ପାଇଁ ଭିତ୍ତିଭୂମି ଉନ୍ନୟନ– ୧୦.୦୦ କୋଟି ଟଙ୍କା
- ଓଡ଼ିଶା ରାଜ୍ୟ ସଡକ ପ୍ରକଳ୍ପ (ବହିଃ ସାହାଯ୍ୟ ପ୍ରାପ୍ତ ପ୍ରକଳ୍ପ)– ୮୬.୫୦ କୋଟି ଟଙ୍କା
- ରାଜଧାନୀରେ ରିଙ୍ଗ ରାସ୍ତା ନିର୍ମାଣ– ୨.୦୦ କୋଟି ଟଙ୍କା
- ସରକାରୀ ଘରୋଇ ଭାଗୀଦାରୀ ରାସ୍ତା ପ୍ରକଳ୍ପ (ସମ୍ବଲପୁର–ରାଉରକେଲା ରାସ୍ତା) ୨୦.୨୦ କୋଟି ଟଙ୍କା
- ଜାତୀୟ ରାଜପଥର ସ୍ୱତନ୍ତ୍ର ମରାମତି– ୩୦.୮୨ କୋଟି ଟଙ୍କା
- ପ୍ରାକ୍ ବିଦ୍ୟାଳୟ ଶିକ୍ଷା– ୧୭. ୯୩ କୋଟି ଟଙ୍କା
- ପେନ୍‌ସନ୍ ଭୋଗୀଙ୍କୁ ସାମାଜିକ ନିରାପତ୍ତା ପାଇଁ ଶୀତ ବସ୍ତ୍ର ନିମନ୍ତେ ଆର୍ଥିକ ସହାୟତା– ୪୫.୭୯ କୋଟି ଟଙ୍କା

## ବିଭାଗ ଭିତ୍ତିକ ୨୦୧୩-୨୦୧୪ (ବଜେଟ୍ ଅଟକଳ) ଏବଂ ଅତିରିକ୍ତ ବ୍ୟୟବରାଦ

(କୋଟି ଟଙ୍କା ହିସାବରେ)

| କ୍ରମିକ ନମ୍ବର | ବିଭାଗ | ୨୦୧୩-୧୪ (ବଜେଟ୍ ଅଟକଳ) | ଅତିରିକ୍ତ ବ୍ୟୟ ବରାଦ | ମୋଟ |
|---|---|---|---|---|
| ୧. | ସ୍ୱରାଷ୍ଟ୍ର | ୨୭୧୩.୩୨ | ୨୫୨.୧୩ | ୨୯୬୫.୪୫ |
| ୨. | ସାଧାରଣ ପ୍ରଶାସନ | ୧୮୪.୦୨ | ୨୯.୩୮ | ୨୧୩.୪୦ |
| ୩. | ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା | ୧୩୪୪.୮୪ | ୨୨୭୪.୬୭ | ୩୬୧୯.୫୧ |
| ୪. | ଆଇନ୍ | ୨୦୧.୫୮ | ୨.୦୮ | ୨୦୩.୬୬ |
| ୫. | ଅର୍ଥ | ୧୬୭୭୯.୫୩ | ୭୯୬.୨୫ | ୧୭୫୭୫.୭୮ |
| ୬. | ବାଣିଜ୍ୟ | ୬୨.୯୨ | ୨.୯୮ | ୬୫.୯୦ |
| ୭. | ନିର୍ମାଣ | ୨୫୩୧.୬୮ | ୨୭୩.୫୮ | ୨୮୦୫.୨୬ |
| ୮. | ଓଡ଼ିଶା ବିଧାନସଭା | ୪୬.୧୯ | ୧.୬୩ | ୪୭.୮୨ |
| ୯. | ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ | ୧୩୭୩.୭୮ | ୨୬.୩୪ | ୧୪୦୦.୧୨ |
| ୧୦. | ବିଦ୍ୟାଳୟ ଓ ଗଣଶିକ୍ଷା | ୭୧୪୨.୮୩ | ୭୯.୫୪ | ୭୨୨୨.୩୭ |
| ୧୧. | ଅନୁସୂଚିତ ଜନଜାତି ଓ ଅନୁଚିତ ଜାତି ଏବଂ ସଂଖ୍ୟାଲଘୁ ସମ୍ପ୍ରଦାୟ ଓ ପଛୁଆବର୍ଗ କଲ୍ୟାଣ | ୧୯୬୪.୦୩ | ୧୭୬.୨୮ | ୨୧୪୦.୩୧ |
| ୧୨. | ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ | ୨୧୯୨.୧୮ | ୧୦୯.୧୨ | ୨୩୦୧.୩୦ |
| ୧୩. | ଗୃହ ନିର୍ମାଣ ଓ ପୌର ଉନ୍ନୟନ | ୨୩୮୫.୪୬ | ୨୩୬.୬୬ | ୨୬୨୨.୧୨ |
| ୧୪. | ଶ୍ରମ ଓ ରାଜ୍ୟ କର୍ମଚାରୀ ବୀମା | ୬୯.୭୩ | ୧.୩୧ | ୭୧.୦୪ |
| ୧୫. | କ୍ରୀଡ଼ା ଓ ଯୁବସେବା | ୭୪.୫୪ | ୧୩.୧୯ | ୮୭.୭୩ |
| ୧୬. | ଯୋଜନା ଓ ସମନ୍ୱୟ | ୧୩୭୪.୮୮ | ୦.୧୨ | ୧୩୭୫.୦୦ |
| ୧୭. | ପଞ୍ଚାୟତିରାଜ | ୩୨୧୮.୯୮ | ୫୪୨.୨୨ | ୩୭୬୧.୨୦ |
| ୧୮. | ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ପ୍ରଶାସନ | ୧.୯୯ | ୦.୨୩ | ୨.୨୨ |
| ୧୯. | ଶିଳ୍ପ | ୨୭.୪୮ | ୧.୫୯ | ୨୯.୦୭ |
| ୨୦. | ଜଳ ସମ୍ପଦ | ୪୦୨୪.୫୩ | ୨୭୯.୧୮ | ୪୩୦୩.୭୧ |

(କୋଟି ଟଙ୍କା ହିସାବରେ)

| କ୍ରମିକ ନମ୍ବର | ବିଭାଗ | ୨୦୧୩-୧୪ (ବଜେଟ୍ ଅଟକଳ) | ଅତିରିକ୍ତ ବ୍ୟୟ ବରାଦ | ମୋଟ |
|---|---|---|---|---|
| ୨୧. | ପରିବହନ | ୧୫୭.୮୩ | ୬.୬୨ | ୧୬୪.୪୫ |
| ୨୨. | ଜଙ୍ଗଲ ଓ ପରିବେଶ | ୬୬୫.୧୯ | ୧୦୨.୬୬ | ୭୬୭.୮୫ |
| ୨୩. | କୃଷି | ୧୮୨୩.୭୭ | ୨୦୦.୩୮ | ୨୦୨୪.୧୫ |
| ୨୪. | ଇସ୍ପାତ | ୬୫.୦୮ | ୦.୦୮ | ୬୫.୧୬ |
| ୨୫. | ସୂଚନା ଓ ଲୋକ ସମ୍ପର୍କ | ୬୫.୪୫ | ୨.୨୭ | ୬୭.୭୨ |
| ୨୬. | ଅବକାରୀ | ୫୬.୫୪ | ୨.୫୦ | ୫୯.୦୪ |
| ୨୭. | ବିଜ୍ଞାନ ଓ ବୈଷୟିକ | ୪୯.୪୮ | ୦.୨୩ | ୪୯.୭୧ |
| ୨୮. | ଗ୍ରାମ୍ୟ ଉନ୍ନୟନ | ୨୦୩୨.୫୭ | ୫୯.୩୪ | ୨୦୯୧.୯୧ |
| ୨୯. | ସଂସଦୀୟ ବ୍ୟାପାର | ୨୫.୫୧ | ୦.୬୫ | ୨୬.୧୬ |
| ୩୦. | ଶକ୍ତି | ୭୪୩.୫୬ | ୪୯୧.୧୮ | ୧୨୩୪.୭୪ |
| ୩୧. | ହସ୍ତତନ୍ତ, ବୟନଶିଳ୍ପ ଓ ହସ୍ତଶିଳ୍ପ | ୧୩୦.୮୮ | ୭.୬୦ | ୧୩୮.୪୮ |
| ୩୨. | ପର୍ଯ୍ୟଟନ ଓ ସଂସ୍କୃତି | ୧୪୭.୪୨ | ୨୦.୭୪ | ୧୬୮.୧୬ |
| ୩୩. | ମତ୍ସ୍ୟ ଓ ପଶୁ ସମ୍ପଦ ଉନ୍ନୟନ | ୪୪୭.୦୯ | ୨.୫୫ | ୪୪୯.୬୪ |
| ୩୪. | ସମବାୟ | ୭୧୬.୪୪ | ୧.୫୦ | ୭୧୭.୯୪ |
| ୩୫. | ସରକାରୀ ଉଦ୍ୟୋଗ | ୨.୫୩ | ୮.୩୫ | ୧୦.୮୮ |
| ୩୬. | ମହିଳା ଓ ଶିଶୁ ବିକାଶ | ୩୩୫୮.୨୨ | ୧୦୦୬.୪୩ | ୪୩୬୪.୬୫ |
| ୩୭. | ସୂଚନା ପ୍ରଯୁକ୍ତିବିଦ୍ୟା | ୧୨୫.୪୨ | ୧୪.୧୦ | ୧୩୯.୫୨ |
| ୩୮. | ଉଚ୍ଚଶିକ୍ଷା | ୧୪୪୯.୫୦ | ୭୩.୧୩ | ୧୫୨୨.୬୩ |
| ୩୯. | ନିୟୋଜନ ଏବଂ ବୈଷୟିକ ଶିକ୍ଷା ଓ ପ୍ରଶିକ୍ଷଣ | ୪୫୫.୮୬ | ୪୪.୨୧ | ୫୦୦.୦୭ |
| ୪୦. | ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ | ୭୦.୨୬ | ୧.୫୯ | ୭୧.୮୫ |
| | ସର୍ବମୋଟ | ୬୦୩୦୩.୦୯ | ୭୧୪୪.୫୮ | ୬୭୪୪୭.୬୭ |